# ଝଲକ

## ଜୀବନର - ସୃଜନୀର



## ନନ୍ଦ କିଶୋର ସିଂହ

# ଝଲକ -

ଜୀବନର - ସୃଜନୀର

(ଆତ୍ମଜୀବନୀ)

**ନନ୍ଦକିଶୋର ସିଂହ**

ପ୍ରକାଶକ - କୋରାଇ ମଣ୍ଡଳ ସାହିତ୍ୟ ସଂସଦ
କୋରାଇ, ଯାଜପୁର

ମୁଦ୍ରଣ : ଶାନ୍ତି ପବ୍ଲିକେଶନ
ଧବଳଗିରି, ଯାଜପୁର ରୋଡ଼,
ଯାଜପୁର

ମୂଲ୍ୟ : ଟ ୫୦.୦୦ ଙ୍କା



# JHALAK

Jivanara - Srujaneera.

(Auto Biography)

**Nanda Kishore Singh**

Publisher -
Korai Mandal Sahitya Sansad
Korai , Jajpur

Printed at - Shanti Publication Dhobalgiri
Price -Rs. 50/- ( Fifty ) only





ଆକାଶ ବାଣୀ କଟକ କେନ୍ଦ୍ରର ପ୍ରତିଷ୍ଠା ଦିବସ ୨୮-୧-୦୬ରେ
ଶ୍ରେଷ୍ଠ ଗୀତିକାର ଭାବେ ରାଜ୍ୟପାଳ ରାମେଶ୍ୱର ଠାକୁରଙ୍କ ଠାରୁ
ପ୍ରଶଂସାପତ୍ର ଗ୍ରହଣ ।



କବି ଦମ୍ପତୀ



ପତ୍ନୀ, ପୁତ୍ର, ପୁତ୍ରବଧୂ ଓ ନାତିଙ୍କ
ଗହଣରେ କବି ଶ୍ରୀଯୁକ୍ତ ସିଂହ



କବିଙ୍କ ସଂସାର



କବିଙ୍କ ଭଣଜା ଓ ଭଣଜାବୋହୂ

ଝଲକ ଜୀବନର

## ବଂଶ କୁଞ୍ଜ

ଜନ୍ମ : (ଜାତକ ଅନୁସାରେ)୧୩୪୭ ସାଲ ମେଷ ମାସ ୨୭ଦିନ ବୈଶାଖ ଶୁକ୍ଳ ଦ୍ୱିତୀୟା ବୃହସ୍ପତିବାର
(ସାର୍ଟିଫିକେଟ ଅନୁସାରେ) ୧୫ ମଇ ୧୯୪୨ମସିହା

ବାପା : ରାଜକିଶୋର ସିଂହ, ମାଆ : ରୂପାଦେଇ, ପୋଷ୍ୟପିତା : ନବ କିଶୋର ସିଂହ, ସାବତ ମାଆ : ହାଡିଆଣି ଦେବୀ (ବାପାଙ୍କ ଆଗ ସ୍ତ୍ରୀ), ପୋଷ୍ୟମାତା : ବିଶାଖା ଦେବୀ, ବାପାଙ୍କ ବାପା -(ଗୋସବାପା) କାଳନ୍ଦୀ ପ୍ରସାଦ ସିଂହ, ମାଆଙ୍କ ମାଆ : ଗୋସମା - ଉମା ଦେବୀ, ଗୋସେଇଁ ବାପାଙ୍କ ବାପା ଅର୍ଥାତ୍ କାଳିନ୍ଦୀ ପ୍ରସାଦ ସିଂହଙ୍କ ବାପା ଗଣନାଥ ସିଂହ ।




ଜନ୍ମସ୍ଥାନ: ସାଦକପୁର(ଶଙ୍ଖପାରୀ), ଥାନା/ଡାକ: କୋରେଇ, ଜି:ଯାଜପୁର (ଅବିଭକ୍ତ କଟକ)

**ଚାକିରୀ ଜୀବନ**

**ବେସରକାରୀ ଘରୋଇ ବିଦ୍ୟାଳୟ :**

ରୁଦ୍ର ଚରଣ ହାଇସ୍କୁଲ, ସୁଜନପୁର ବିଜ୍ଞାନ ଶିକ୍ଷକ -୧୯୬୦-୬୪
ବି.ଇଡି. ଟ୍ରେନିଂ ରାଧାନାଥ ଟ୍ରେନିଂ କଲେଜ-୧୯୬୫-୬୬

ବ୍ରାହ୍ମଣଦେବୀ ହାଇସ୍କୁଲ -ପ୍ରଧାନଶିକ୍ଷକ-୧୯୬୬-୬୭

<u>ସରକାରୀ ବିଦ୍ୟାଳୟ :</u>

ବି.ଏନ୍ ବିଦ୍ୟାପୀଠ, ଆଗିଡ- ସହକାରୀ ଶିକ୍ଷକ ୨୭.୧୦.୬୭-୨୯.୫.୬୮

ଆର୍.ଏନ୍ ହାଇସ୍କୁଲ,ରାଜକନିକା-୩୦.୫.୬୮-୨୨.୫.୭୦

ହିଂଗୁଳା ହାଇସ୍କୁଲ, ଶଂଖଚିଲା-୨୩.୫.୭୦-୩.୧୨.୭୧

<u>ସରକାରୀ ସି.ଟି ସ୍କୁଲ :</u>

ସେକେଣ୍ଡାରୀ ଟ୍ରେନିଂ ସ୍କୁଲ, ଡୋଳିପୁର-୪.୧୨.୭୧-୬.୭.୭୨

<u>ପୂର୍ବାଂଚଳ ଭାଷା କେନ୍ଦ୍ର, ଭୁବନେଶ୍ୱର:</u>

ଇ.ଆଇ.ଏଲ୍.ସି, ଭୁବନେଶ୍ୱର-ଅସମୀୟା ଭାଷା ଶିକ୍ଷା ଟ୍ରେନିଂ-
୭.୭.୭୨ -୩୦.୪.୭୩

<u>ସରକାରୀ ସି.ଟି ସ୍କୁଲ :</u>

ସେକେଣ୍ଡାରୀ ଟ୍ରେନିଂ ସ୍କୁଲ, ଡୋଳିପୁର-ସହକାରୀ ଶିକ୍ଷକ-୧.୫.୭୩-୧୨.୫.୯୦

<u>କୋରେଇ ବ୍ଲକ ଜିଲ୍ଲା ଶିକ୍ଷା ଅଧିକାରୀ ଅଫିସ :</u>

କୋରେଇ ପଂଚାୟତ ସମିତି କାର୍ଯ୍ୟାଳୟ- ସବ ଇନିସ୍‌ପେକ୍ଟର ଅଫ୍ ସ୍କୁଲସ-
୧୩.୫.୯୦ -୯.୯.୯୧

<u>ଜିଲ୍ଲା ଶିକ୍ଷାଧିକାରୀ ଅଫିସ :</u>

ଡିଷ୍ଟ୍ରିକ୍ ଇନିସ୍‌ପେକ୍‌ଟର ଅଫ୍ ସ୍କୁଲ,ଯାଜପୁର-୨,
ଡୋଳିପୁର-ଜୁନିଅର କୋଅଡିନେଟର୍-୧୦.୯.୯୧-୬.୪.୯୫

<u>ଜିଲ୍ଲା ଶିକ୍ଷାଧିକାରୀ ଅଫିସ :</u>

ଡିଷ୍ଟ୍ରିକ୍ ଇନିସ୍‌ପେକ୍‌ଟର ଅଫ୍ ସ୍କୁଲ,ଯାଜପୁର-୨,
ଡୋଳିପୁର-ଡେପୁଟି ଇନ୍‌ସପେକ୍ଟର -୭.୪.୯୫-୧୭.୧୦.୯୬

<u>ଡି.ଆଇ.ଇ.ଟି:</u>

ଡି.ଆଇ.ଇ.ଟି., କଟକ-ସିନିଅର ଟିଚର ଏଡୁକେଟର
-୧୮.୧୦.୯୬-୩.୧୨.୯୭

<u>ସରକାରୀ ହାଇସ୍କୁଲ :</u>

ଏନ୍.ସି.ହାଇସ୍କୁଲ, ଯାଜପୁର ରୋଡ-ପ୍ରଧାନଶିକ୍ଷକ
-୩.୧୨.୯୭-୩୧.୫.୨୦୦୦

ଶିକ୍ଷାବିଭାଗୀୟ ୨ୟଶ୍ରେଣୀ ପାହିଆରୁ ୩୧.୫.୨୦୦୦- ଅବସର ।

## ଜନ୍ମ :(ଟିକେ ବିସ୍ତୃତ ଭାବେ)

ଜାତକ ଅନୁସାରେ-୧୩୪୭ ସାଲ ମେଷ ମାସ ୨୭ଦିନ ବୈଶାଖ ଶୁକ୍ଳ ଦ୍ୱିତୀୟା ବୃହସ୍ପତିବାର

ସରକାରୀ କାଗଜ ପତ୍ରରେ-ମଇ ୧୫ତାରିଖ ୧୯୪୨ ମସିହା

**ପରିବାର :**

ବାପା-ରାଜକିଶୋର ସିଂହ, ପୋଷ୍ୟ ବାପା-ନବକିଶୋର ସିଂହ, ମାଆ-ରୂପାଦେବୀ, ସାବତ ମାଆ-ହାଡିଆଣୀଦେବୀ, ପୋଷ୍ୟମାଆ- ବିଶାଖା ଦେବୀ, ପୁତ୍ର-ଅଶୋକ କୁମାର ସିଂହ, ପୁତ୍ରବଧୂ-କୁମୁଦିନୀ ଜୀ, କନ୍ୟା-ପ୍ରଜ୍ଞାମୟୀ ସୁଜାତା ଭଣଜା-କୃଷ୍ଣ ଚନ୍ଦ୍ର ଘୋଷ- ଭଣଜା ବହୂ-ମିନତୀ ଘୋଷ(ମୋର ଭଣଜା ଓ ଭଣଜାବହୂ ବଡ ପୁଅ ବଡ ବୋହୂର ମାନ୍ୟତା ପାଇ ମୋ ଘରେ ଅବସ୍ଥାନ କରୁଛନ୍ତି, କନ୍ୟା ପି.ସୁଜାତା ପିତା ମାତା ଇଚ୍ଛା ବିରୁଦ୍ଧରେ ଯାଇଥିବାରୁ ପରିତ୍ୟକ୍ତା)

**ଜନ୍ମସ୍ଥାନ :**

ଅବିଭକ୍ତ କଟକ ଜିଲ୍ଲାର (ବର୍ତ୍ତମାନ ଯାଜପୁର ଜିଲ୍ଲା) କୋରେଇର ଗ୍ରାମର ଛୋଟ ବସ୍ତି (ଶଂଖପାରୀ), ଥାନା/ବ୍ଲକ/ଡାକଘର-କୋରେଇ

**ମୋଗାଆଁ :**

ଗାଆଁଟି ଅତିବଡ ନହେଲେବି ଛୋଟ ନୁହେଁ । ମୋ ଗାଆଁର ବିଶେଷତ୍ୱ ହେଲା ଉଭୟ ସଂପ୍ରଦାୟ(ହିନ୍ଦୁ,ମୁସଲିମ୍) ମିଳିମିଶି ରହନ୍ତି, ଏକାଠି ପୂଜା ପାର୍ବଣ ହୋଲି ଓ ନମାଜ ପାଳନ୍ତି । ଏଣୁ ଏହା ଏକ ସଂହତିର ଗ୍ରାମ । ଏଠାରେ ମନ୍ଦିର ମସ୍‌ଜିଦ୍ ଅଛି । ସମସ୍ତ ପ୍ରକାର ଶିକ୍ଷାନୁଷ୍ଠାନ ସାଂଗକୁ ରେଳ ଷ୍ଟେସନ, ପୋଷ୍ଟ ଅଫିସ, ବ୍ୟାଙ୍କ୍, ଛୋଟ ପାର୍କ ମଧ୍ୟ ଅଛି । ମୋଟ ଉପରେ ଗାଆଁ ହେଲେବି ସହରର ସମସ୍ତ ସୁବିଧା ଏଠାରେ ଅଛି ।

**ବାଲ୍ୟ ଜୀବନ :**

ମୁଁ ପିଲାଦିନୁ ଦୁର୍ବଳ ସ୍ୱାସ୍ଥ୍ୟର । ବିଶେଷତଃ ପେଟରୋଗ (ଡିସେଣ୍ଟ୍ରି) ମୋର ଚିର ସହଚର । ୮ବର୍ଷ ବେଳୁ ପିତୃହୀନ ହେଲେହେଁ ପୋଷ୍ୟ ପିତା ନବକିଶୋର ସିଂହଙ୍କ ଉପସ୍ଥିତି ଯୋଗୁ ପିତୃକଷ୍ଟ ଅନୁଭବ କରିନାହିଁ । ତେବେ ମାତୃସ୍ନେହ ଯଥେଷ୍ଟ ପାଇଛି । ସାବତ ମାଆ ଚରିତ୍ରର ମଧ୍ୟ କିଛିଟା ପରିଚୟ ପାଇଛି । ବାଲ୍ୟବଂଧୁ ଉଧ, କୃଷ୍ଣ, ବେଂଗ, ଝଟି, ଅସ୍କରି, କାଳ୍ଥ ,

## ଛାତ୍ର ଜୀବନ :

୭ବର୍ଷ ପର୍ଯ୍ୟନ୍ତ ଘରେ ପଢ଼ି, ୮ବର୍ଷରେ ସାଦକପୁର ନି.ପ୍ରା ସ୍କୁଲରେ ପାଠପଢ଼ା, ୧୯୪୬ରୁ ୧୯୪୮, କୋରେଇ ମାଇନର ସ୍କୁଲରେ ୧୯୪୯-୧୯୫୩, ଏନ୍.ସି.ହାଇସ୍କୁଲ, ଯାଜପୁର ରୋଡରେ-୧୯୫୪-୧୯୫୮, ଭଦ୍ରକ କଲେଜରେ୧୯୫୮-୧୯୬୦, ଘରୋଇ ଭାବେ ବି.ଏ-୧୯୬୩, ରାଧାନାଥ ଟ୍ରେନିଂକଲେଜରେ ବି.ଇଡି-୧୯୬୫., ଅସମୀୟା ଶିକ୍ଷା ଇ.ଆର.ଏଲ୍.ସି, ଭୁବନେଶ୍ୱରରେ ୧୯୭୩ । ଛାତ୍ର ଜୀବନକାଳ ମଧ୍ୟରେ ହାଇସ୍କୁଲ ଶେଷ ପର୍ଯ୍ୟନ୍ତ ମୁଁ ଶ୍ରେଣୀରେ ପ୍ରଥମ ହେଉଥିଲି ଏଣୁ ଜଣେ ଉତ୍ତମ ଛାତ୍ର ଭାବେ ମୁଁ ଶିକ୍ଷକ ମାନଙ୍କର ପ୍ରିୟ ଭାଜନ ସଂଗେ ସଂଗେ ଛାତ୍ର ମହଲରେ ସମ୍ମାନାସ୍ପଦ ଥିଲି । ପାଠପଢ଼ା ସାଂଗକୁ ଅଭିନୟ, ତର୍କ ପ୍ରତିଯୋଗୀତା ଶୃଙ୍ଖଳା ରକ୍ଷା, ଲେଖାଲେଖି ବେଳେବେଳେ କ୍ରୀଡାରେ ମଧ୍ୟ ନିଜକୁ ବୁଡାଇ ରଖିଥିଲି । ଶିକ୍ଷକ ମାନଙ୍କ ମଧ୍ୟରେ ପ୍ରାଥମିକ ସ୍ତରରେ କାଳିନ୍ଦୀ ପ୍ରସାଦ ତେୱାରୀ(କାଳିଆ ମାଷ୍ଟ୍ରେ) ମାଇନର ସ୍କୁଲରେ ଶ୍ୟାମସୁନ୍ଦର ପାତ୍ର ଏବଂ ହାଇସ୍କୁଲ ସ୍ତରରେ ପ୍ରଧାନ ଶିକ୍ଷକ ଉପେନ୍ଦ୍ର ପ୍ରସାଦ ଶତପଥି ଙ୍କ ସ୍ନେହ ଓ ଶ୍ରଦ୍ଧା ଏବେବି ମନେପଡେ, ଭୟ ଆସେ, ଭକ୍ତିଆସେ ସ୍ମରଣ ମାତ୍ରେ ।

## କଲେଜ ଜୀବନ:

(ଭଦ୍ରକରେ ଆଇ.ଏସ୍.ସି ପଢ଼ିବା) ମୋର ଆଦୌ ସୁଖକର ନଥିଲା । କାରଣ ମେଟ୍ରିକ ଫଳ ପ୍ରକାଶନ ପରେ ମାତ୍ର ୧୮ ବର୍ଷ ବୟସରେ(ସାର୍ଟିଫିକେଟରେ ୧୬) ମୋର ବିବାହ । ନା ପାଇଲି ଦାମ୍ପତ୍ୟ ଜୀବନର ସୁଖ ନା ପାଇଲି କଲେଜ ଜୀବନର ରୋମାନ୍ସ ।

ତେବେ ରାଧାନାଥ ଟ୍ରେନିଂ କଲେଜରେ ବି.ଇଡି. ପଢ଼ିବା ବେଳେ ଏବଂ ଇ.ଆର.ଏଲ୍.ସି, ଭୁବନେଶ୍ୱରରେ ଅସମୀୟା ଭାଷା ଶିକ୍ଷା ବେଳେ ଛାତ୍ରଜୀବନର କିଛିଟା ଆନନ୍ଦ ପାଇଛି, ରୋମାନ୍ସର, ସ୍ୱାଦବି କିଛି ଚାଖିଛି ।

## ଚାକିରୀ ଜୀବନ :

ଚାକିରୀ ଜୀବନରେ ମୁଁ ସମୟାନୁବର୍ତ୍ତିତା, କର୍ତ୍ତବ୍ୟପରାୟଣତା ଏବଂ ସାଧୁତାକୁ ଜୋର୍ ଦେଇ ଆସିଛି । ଫଳରେ ଶିକ୍ଷାୟାତନରୁ ଛାତ୍ରବତ୍ସଳତାର

ସ୍ୱାଦ ଚାଖିଛି । ବେଳେବେଳେ ସହକର୍ମୀଙ୍କ ଇର୍ଷାର ଶିକାର ହୋଇଛି । ତେବେ ଉପରିସ୍ଥ କର୍ମଚାରୀଙ୍କ ପ୍ରତି ମୋର ସମ୍ମାନବୋଧ ଥିଲେ ବି ଭୟ ଆଦୌ ନଥାଏ । ଏଇ ନିର୍ଭିକତା ହିଁ ମୋର ଚାକିରୀ ଜୀବନର ସଫଳତାର ଚାବିକାଠି । ମୋର ସାଧୁତା ହିଁ ଉପରିସ୍ଥ କର୍ମଚାରୀଙ୍କ ପାଖରେ ମୋତେ ନିର୍ଭିକ କରିବାରେ ସାହାଯ୍ୟ କରିଥାଏ । ଅବଶ୍ୟ ଅନ୍ୟ ଏକ କାରଣ ହେଲା । ମୁଁ କେବଳ ଶିକ୍ଷକ ନଥିଲି ମୁଁ ଥିଲି ଅଭିନେତା, ବକ୍ତା, ଲେଖକ, ଗୀତିକାର,ନାଟ୍ୟକାରଏବଂ ଗ୍ରନ୍ଥକାର ଫଳରେ ଉପରିସ୍ଥ କର୍ମଚାରୀଙ୍କର ମଧ ମୋ ପ୍ରତି ଶ୍ରଦ୍ଧା ଓ ସମ୍ମାନବୋଧ ଥିଲା ।

<u>ଅବସର ଜୀବନ :</u>

ସାରସ୍ୱତ ସାଧନା, ବୋଲେହୁଁଟି ପତ୍ରିକାର ସଂପାଦନା ସାଂଗକୁ ସମାଜର ଦୋଷ ଦୁର୍ବଳତାକୁ ଲୋକଙ୍କ ସାମ୍ନାକୁ ଆଣିବାର ପ୍ରଚେଷ୍ଟା ରେ ମଗ୍ନ ଆତ୍ମଜୀବନୀ "ଯମପୁରୀରେ ଜମନବର୍ଷ "ଲେଖାଚାଲିଛି । କାଳାନ୍ତରରେ ୨୦ଟି ପରିଚ୍ଛେଦ ପ୍ରକାଶ ପାଇସାରିଛି ।

<u>ସାରସ୍ୱତ ଜୀବନଧାରା :</u>

ଷଷ୍ଠ ଶ୍ରେଣୀରେ ପଢୁଥିବା ବେଳୁ ବିଧିବଦ୍ଧ ଭାବେ ଲେଖା ଲେଖି ଆରମ୍ଭ । ସମ୍ବାଦପତ୍ର(ପ୍ରଜାତନ୍ତ୍ର) ବିଭିନ୍ନ ପତ୍ରପତ୍ରିକାରେ ଲେଖା ପ୍ରକାଶ ପାଇ ମୁଁ ସମ୍ମାନିତ ହୋଇଛି । ଓଡିଶାରେ ପ୍ରାୟ ପ୍ରତ୍ୟେକ ସମ୍ବାଦପ୍ରତ୍ର ଓ ସାହିତ୍ୟ ପ୍ରଷ୍ଠ ଏବଂ ପ୍ରାୟ ପ୍ରତ୍ୟେକ ପତ୍ର ପତ୍ରିକାରେ ମୋର ଲେଖା ପ୍ରକାଶ ପାଇଛି ଓ ପାଉଛି । ଅସମୀୟା ଓ ଇଂରେଜୀ ଭାଷାରେ ମଧ କିଛି ଲେଖା ପ୍ରକାଶିତ । ଏଇ ଲେଖା ଗୁଡିକ ଭିତରେ ମୁଖ୍ୟତଃ ଗୀତି କବିତା ଓ ଶିଶୁ ସାହିତ୍ୟ ହେଲେବି ପ୍ରବଂଧ, ଏକାଂକିକା, ରମ୍ୟ ରଚନା ଆଦି ମଧ ପ୍ରକାଶ ପାଏ । ମୀନା ବଜାର ହିଁ ମୋର ପ୍ରଥମ ଲେଖାକୁ ସ୍ଥାନ ଦେଇଛି । ପରବର୍ତ୍ତୀ ପର୍ଯ୍ୟାୟରେ ମୋ ପ୍ରତିଭାର ସ୍ଫୁରଣରେ ସାହାଯ୍ୟ କରିଛି, ଝଂକାର, ସହକାର, ମରୁତୀର୍ଥ, ସୌରଭ, ଶିଶୁ ରାଇଜ,ବାରମଜା, ନନ୍ଦନକାନନ, ସଂସାର ଆଦି ପତ୍ରିକା । ସ୍ମରଣ କରୁଛି ଜହ୍ନୁରୀ ଭାଇ (ରାମ ପ୍ରସାଦ ମହାନ୍ତି)ଙ୍କୁ, ନୀହାର ଅପାଙ୍କୁ, ଡ. ହରେକୃଷ୍ଣ ମହତାବଙ୍କୁ ,ବୀଣା ମହାପାତ୍ର(ସୌରଭ ସଂପାଦିକା)ଙ୍କୁ ଏବଂ ରାମକୃଷ୍ଣ ନନ୍ଦଙ୍କୁ ।

## ଆକାଶବାଣୀ ଓ ମୁଁ

ଆକାଶବାଣୀ ସହ ମୁଁ ୧୯୬୨ରୁ ସଂପୃକ୍ତ । ପ୍ରଥମ ନାଟକ ପ୍ରଚାରିତ ହେବା । ପ୍ରଥମ ନାଟକ ରାମର ସୁମତିରେ ଅଭିନୟ ଠାରୁ ଆରମ୍ଭ କରି ଏଯାବତ୍ ମୁଁ ଆକାଶବାଣୀ ମାୟାରେ ଛନ୍ଦିରହିଛି । ଆକାଶବାଣୀ ହିଁ ମୋତେ ଗୀତିକାର, ନାଟ୍ୟକାର, ନାଟ୍ୟଶିଳ୍ପୀ, ଆଲୋଚକ ଭାବେ ଲୋକଲୋଚନକୁ ଆଣିଛି । ଦୂରଦର୍ଶନ ମଧ ଏଥିରେ ମୋତେ ବେଶ୍ ସାହାଯ୍ୟ କରିଛି । ଆକାଶବାଣୀର ପ୍ରତ୍ୟେକ ବିଭାଗରେ ମୁଁ ସଂପୃକ୍ତ କେତେବେଳେ ଲେଖକ ଭାବରେତ କେତେବେଳେ ଅଭିନେତାଭାବେ ତ କେତେବେଳେ ଆଲୋଚକଭାବେ । ଦୂରଦର୍ଶନ ପାଇଁ ଧାରାବାହିକ ଲେଖିଛି, ଗୀତ ଲେଖିଛି, ଅନ୍ତରାଳରୁ ସ୍ୱର ଦେଇଛି (Off Screen voice) । ସ୍ମରଣ କରୁଛି, ଉପେନ୍ଦ୍ର ଦାସ, ନୟନ କିଶୋର ମହାନ୍ତି, ମନୋରଂଜନ ଦାସ, ଗୋପାଳ ଛୋଟରାୟ, ଝରଣା ଦାସ, ବାଳକୃଷ୍ଣ ଦାଶ, ଭୂବନେଶ୍ୱର ମିଶ୍ର । ଏମାନଙ୍କ ପ୍ରେରଣା, ଶ୍ରଦ୍ଧା, ସ୍ନେହ ଓ ପରାମର୍ଶ ମୋତେ ଏ କ୍ଷେତ୍ରରେ ଯଶସ୍ୱୀ କରିବାରେ ସହାୟକ ହୋଇଛି । ସେହିପରି ମୋତେ ଅବହେଳିତ ଦୃଷ୍ଟିରେ ଦେଖୁଥିବା ହିମାଂଶୁ ବାବୁ, ରମାପଦ ବାବୁ, ଗୋସ୍ୱାମୀ ବାବୁ ଆଦି ପ୍ରତିଭାଧର ମାନେ ମୋତେ ପରୋକ୍ଷରେ ଉତ୍ସାହିତ କରିଛନ୍ତି ସେମାନଙ୍କୁ ମଧ ଧନ୍ୟବାଦ । ମୋ ଗୀତପ୍ରତି ପ୍ରାୟ ପ୍ରତ୍ୟେକ ଗାୟକ ଗାୟିକାଙ୍କ ଶ୍ରଦ୍ଧା ଅତୁଟ ରହିଛି । ସେଥିପାଇଁ ମୁଁ ନିଜକୁ ଭାଗ୍ୟବାନ ମନେକରେ । ଏକ୍ଷେତ୍ରରେ ବାଳକୃଷ୍ଣ ଦାଶ ଅକ୍ଷୟ ମହାନ୍ତି, ଭିକାରୀ ବଳ, ସିକନ୍ଦର ଆଲାମ ତୃପ୍ତି ଦାସ ଙ୍କଠୁ ଆରମ୍ଭ କରି ନୂଆ ପିଢୀର ଶୈଳଭାମା, ନାଜିଆସଇଦ୍, ଗୋପାଳ ସାମନ୍ତରାୟ ସମସ୍ତଙ୍କ ମୋ ରଚନା ପ୍ରତି ଆନ୍ତରିକତା ମୋତେ ଉଦ୍‌ବୁଦ୍ଧ କରିଛି ।

## ଗୀତିକବିତା ଓ ମୁଁ

୧୯୬୩ ମସିହାରୁ ଆକାଶବାଣୀର ଗୀତିକାର ହେବା ପରେ ୧୯୯୭ ଯାଏ ମୁଁ ପ୍ରାୟତଃ ନିୟମିତ ରେଡିଓ ଶୁଣିବାରେ ଅଭ୍ୟାସ ଥିଲା । ଏହି ସମୟ ଭିତରେ ମୁଁ ଶୁଣିଥିବା ମୋ ଗୀତର ପ୍ରଥମ ଧାଡି ପ୍ରଚାର ସମୟ ଏବଂ ଶିଳ୍ପୀଙ୍କ ନାମ ମୁଁ ପ୍ରାୟ ଟିପି ରଖିଥିଲି । ସେଥିରୁ ଜଣାଯାଏ ୧.୩.୬୪ ମସିହାରୁ ୫.୧୨.୯୭ ଯାଏ ମୋଟ ପ୍ରଚାରିତ ସଂଗୀତ ସଂଖ୍ୟା ୧୧୫୨ । ଏହି ସଂଖ୍ୟାରେ ନୂତନ ଭାବେ ପ୍ରଥମ ପ୍ରଚାର ଗୀତ ସାଂଗକୁ ପୁନଃ ପ୍ରଚାର ଗୀତ ମଧ ରହିଛି ।

ଏହି ଗୀତ ଗୁଡିକୁ ଗାଇଥିବା ଶିଳ୍ପୀ ମାନେ ହେଲେ -ସର୍ବଶ୍ରୀ ମନୋରଂଜନ ପୃଷ୍ଟି, ବାଳକୃଷ୍ଣ ଦାଶ, ରାଧାରାଣୀ ମହାପାତ୍ର, ସୁମତି ଦେବୀ, ଅତୀଶ ମଜୁମଦାର,

ସିକନ୍ଦର ଆଲାମ, ତୃପ୍ତି ଘୋଷ, କଲ୍ୟାଣି ଭଟ୍ଟାଚାର୍ଯ୍ୟ, ବିଷ୍ଣୁ ପ୍ରିୟା ଦାସ, ପଦ୍ମାଳୟା ଗରାବଡୁ, ନିରୋଜ ନଳିନୀ କୁଅଁର, ପ୍ରଣବ ପଟ୍ଟନାୟକ, ବସନ୍ତ କୁମାରୀ ଦାସ, ସାୟଦ ମହମ୍ମଦ ଅଲ୍ଲୀ, ମହମ୍ମଦ ହାଲିମ, ଧରଣୀଧର ଚାନ୍ଦ, ଶ୍ରୀନିବାସ ପଟ୍ଟନାୟକ, ନନ୍ଦିତା ଘୋଷ, ଇନ୍ଦିରା ପ୍ରତିହାରୀ, କଲ୍ୟାଣି ମିଶ୍ର, ଅନିମା କର, ଦିପ୍ତୀ ମହାନ୍ତି, ବିଶ୍ୱନାଥ ରାଓ, ଦିବାକର ମହାନ୍ତି, ପ୍ରଭାତ ବେହେରା, ଅଳକା ଚାନ୍ଦ, ଶିଶିର ଦାସ, ଆରତୀ ଗୋସ୍ୱାମୀ, ସ୍ୱୟଂପ୍ରଭା ମିଶ୍ର, ଇନ୍ଦ୍ରାଣୀ ମିଶ୍ର ଉମା ଚକ୍ରବର୍ତ୍ତୀ, ନଇମା ଆଲାମ, ପ୍ରସନ୍ନ ମିଶ୍ର କ୍ରୀଷ୍ଣା ମେହେଟା, ପୁଷ୍ପଲତା ଜେନା, ମୀନାକ୍ଷୀ ନନ୍ଦ(ମୁଖାର୍ଜୀ) ମଂଜୁଲତା ବେହୁରିଆ ରଘୁନାଥ ପାଣିଗ୍ରାହୀ, ଚିତ ରଂଜନ ଜେନା, ରାଧା ଗୋବିନ୍ଦ ପଟ୍ଟନାୟକ, ଭିକାରୀ ଚରଣ ବଳ, କାହ୍ନୁ ଚରଣ ଦାସ, ଶୈଳ ମହାପାତ୍ର, ବିଦ୍ୟୁତଲତା ମହାପାତ୍ର, ରଶ୍ମି ମିଶ୍ର, ବାଗ୍ମି ମିଶ୍ର, ଧନଂଜୟ ଶତପଥି, ଶୁକଦେବ ପତ୍ରୀ, ଶ୍ରୀକାନ୍ତ ଦାସ, ରଘୁନାଥ ନନ୍ଦ, ଗ୍ଲୋରିଆ ମହାନ୍ତି, ମଂଜୁଲତା ବେହୁରିଆ, ସରଳା ଜେନା, ବିପିନି ବିହାରୀ ଦାସ, ସୁରେନ୍ଦ୍ର ମହାନ୍ତି, ମମତା ଦେ, ଆରତୀ ତ୍ରିପାଠୀ, ଅକ୍ଷୟ ମହାନ୍ତି,ସବିତା ବେହୁରିଆ, ସବିତା ଘୋଷ, ଶାନ୍ତିଲତା ରଥ, ଉଷାକୀରଣ ମହାନ୍ତି, ସ୍ୱର୍ଣ୍ଣପ୍ରଭା ତ୍ରିପାଠୀ, ନିରୂପମା ଦାସ, ସତ୍ୟବାଦୀ ମିଶ୍ର, ପ୍ରଭାତ ନଳିନୀ ପଣ୍ଡା, ସୁଧୀର ବେହେରା, ବିଜୟ ଲକ୍ଷ୍ମୀ ମିଶ୍ର(ପଣ୍ଡା), ଭୁବନେଶ୍ୱରୀ ମିଶ୍ର, ସୁଶାନ୍ତ ପ୍ରଧାନ, ନବ କିଶୋର ମିଶ୍ର, ଦିପ୍ତି ରାଓ, ପ୍ରୀତିନନ୍ଦା ମହାପାତ୍ର, ଅର୍ଜ୍ଜୁନ ସାମଲ, ଦିଲୀପ ଦେ, ଲକ୍ଷ୍ମୀକାନ୍ତ ସେନ୍, କାଶୀନାଥ ପାଢୀ, ମିନତୀ ରଥ, ଉଷା ରାୟ, ଅଧରନାଥ ଶର୍ମା, ଅଧୀରଥ ଚକ୍ରବର୍ତ୍ତୀ, ସଂଯୁକ୍ତା ମହାନ୍ତି, ପାପା ମିଶ୍ର, ରେବତୀ ଦାଶ, ମୀନାରାଣୀ ଖୁଣ୍ଟିଆ, ପୂଣ୍ୟପ୍ରଭା ବହିଦାର, ରାଧାରାଣୀ ମିଶ୍ର, କୁନ୍ଦମଣି ଦାସ, ରବିନ୍ଦ୍ର ବାରିକ,କସ୍ତୁରୀ ମହାନ୍ତି, ଅଂଜଳି ରାୟ, ବିଜୟ ଭାସ୍କର ସାମନ୍ତରାୟ, ପ୍ରଭୁରାମ ତ୍ରିପାଠୀ, ନମିତା ମହାନ୍ତି, ପୂର୍ଣ୍ଣିମା ମହାନ୍ତି, ଶେଖର ଘୋଷ, ଗୋପାଳ ଚନ୍ଦ୍ର ପଣ୍ଡା, ପ୍ରଭାତି ମିଶ୍ର, ସଂଗୀତା ମହାପାତ୍ର,ରମା ଚକ୍ରବର୍ତ୍ତୀ, ସୁବୀର କୁମାର ଦାସ, ସ୍ନିଗ୍ଧା ମହାପାତ୍ର, ସୁରେନ୍ଦ୍ର ସାହୁ, ରୀନା ତ୍ରିପାଠୀ, ଶକୁନ୍ତଳା ମହାପାତ୍ର, ଶ୍ୟାମାମଣୀ ଦେବୀ,ଗୀତା ପଟ୍ଟନାୟକ, ସୁଶ୍ରୀ ସଂଗୀତା ମହାପାତ୍ର, ସଂଯୁକ୍ତା ପାଢୀ, ପ୍ରଫୁଲ୍ଲ କୁମାର ସିଂହଦେଓ, ବୀଣା ମହାପାତ୍ର, ଅମୂଲ୍ୟମଣି ସାହୁ, ବୈଜୟନ୍ତୀ ରଥ,ଅଶୋକ ଚରଣ ମିଶ୍ର, ନିରୁପମା ମହାରଣା, ଗୋପାଳ ସାମନ୍ତରାୟ, ଫକୀର ପଟ୍ଟ ନାୟକ, ସ୍ନେହଲତା ପ୍ରହରାଜ, ମମତା ନନ୍ଦ(ମିଶ୍ର), ପ୍ରଫୁଲ୍ଲ କର, ଇନ୍ଦିରା ବେହୁରିଆ, ବିଜୟ ମିଶ୍ର, ଜ୍ୟୋସ୍ନା ମହାପାତ୍ର, ତୃପ୍ତି ଦାସ, ସ୍ୱର୍ଣ୍ଣଲତା ବର୍ମା, ସଂଯୁକ୍ତା ଚୌଧୁରୀ, ଗୀତା ତ୍ରିପାଠୀ, ଇନ୍ଦିରା ନନ୍ଦ, ବନ ବିହାରି ଜେନା, ରାଜ କିଶୋର ଦାସ,

ସସ୍ମିତା ମହାପାତ୍ର କନକ ବଳବନ୍ତରୟ(ମହାପାତ୍ର),କୁନ୍ତଳିକା ଘୋଷ, ଜ୍ୟୋସ୍ନାରାଣୀ ଦାସ,ନନ୍ଦିତା ତ୍ରିପାଠୀ ନରୋତ୍ତମ ସାହୁ, ଉଦୟନାଥ ସାହୁ, ସ୍ୱାକୃତି ତନୟା ସାମନ୍ତରାୟ, ସୁଚିତ୍ରା ମହାପାତ୍ର, ସୁଚିତ୍ରା ପଟ୍ଟନାୟକ, ଉର୍ମିଳା ପ୍ରଧାନ, ପୂର୍ଣ୍ଣିମା ପଣ୍ଡା, ଗଂଗାଧର ବେହେରା, ସୁଚେତା ପଟ୍ଟନାୟକ, ରଂଜିତା ସେନାପତି, ଲୁପିତା ମିଶ୍ର, ସୁଦୀପ୍ତ ମିଶ୍ର, ବିଦ୍ୟୁତଲତା ସାମଲ, ପ୍ରଦୀପ ପାତ୍ର, ପ୍ରଦୀପ ପଣ୍ଡା, (ଯୁବବାଣୀ) ସୁମିତା ଗରାବଡୁ,ପୁଷ୍ପା ମହାନ୍ତି, ସୁଧା ମିଶ୍ର, ଦେବାଶୀଷ ମହାପାତ୍ର, ସୁଜାତା ମହାପାତ୍ର, ନୀଳମାଧବ ଦାସ, ରୀତା ମିଶ୍ର, ଆରତୀ ମିଶ୍ର, ରସ୍ମିତା ବର୍ମା, ଶାନ୍ତିଲତା ବାରିକ(ଛୋଟରାୟ), ପ୍ରମିଳା ମିଶ୍ର, ମନମୋହନ ପ୍ରଧାନ, ସୁଧାଂଶୁ ଦୀପ୍ତି ପଟ୍ଟନାୟକ, ଆଲ୍‌ଫା ଦାସ ପରିଡା,ପାର୍ବତୀ ଜେନା, ମଲ୍ଲିକା ମିଶ୍ର,(ସମସ୍ତଙ୍କୁ ମୋର କୃତଜ୍ଞତା ଜଣାଉଛି)

ବି.ଦ୍ର : (କ)ଉପରୋକ୍ତ ଶିଳ୍ପୀଗଣ ଙ୍କ ମଧ୍ୟରୁ ଅଳ୍ପ କେତେଜଣ ଶିଶୁ ସଂସାର, କିଶୋର ଚକ୍ର, ଯୁବବାଣୀ, ଗାଁଗହଳି ବିଭାଗରେ ମଧ୍ୟ ସ୍ୱରଦାନ କରିଛନ୍ତି

(ଖ) ୧୯୯୭ ପରେ ମୁଁ ଲେଖି ରଖିନଥିବା ଯେଉଁମାନେ ନୂଆ କରି ମୋ ଗୀତ ଗାଇଛନ୍ତି ସେମାନଙ୍କ ମଧ୍ୟରେ ଶୈଳଭାମା ମହାପାତ୍ର, ଲିଲାଶ୍ରୀ ପଟ୍ଟନାୟକ, ଶିବାନି ଦାସ, ନାଜିଆ ସଇଦ, ଅରବିନ୍ଦ ଦତ୍ତ, ସେଲୁ ମହାନ୍ତି, ମମତା ପରିଡା, ରାମ ହରି ଦାସ, କୃତି ବେହେରା, ସେବାରାଣୀ ମହାପାତ୍ର, ଇତିଶ୍ରୀ ଦାସ, ବନ୍ଦିତା ଦାସ, ବିନୋଦ ବିହାରି ପଣ୍ଡା, ବିଭୁଧେନ୍ଦ୍ର ପ୍ରତାପ ଦାସ, ଗାୟତ୍ରୀ ବୋଷ, ଦାମୋଦର ହୋତା ଆଦିଙ୍କ ନାମ ସମ୍ମାନର ସହ ସ୍ମରଣ କରୁଅଛି ।

**ଶିଶୁ ସାହିତ୍ୟ ଓ ମୁଁ :**

ଏଠାରେ କହିରଖେ ମୁଁ ସର୍ବଦା ଛୋଟ ଛୋଟ ପିଲାଙ୍କୁ ଭଲପାଏ । ପିଲାଙ୍କ ମେଳରେ ରହିବାକୁ ଭଲପାଏ । ଏହି କାରଣରୁ ଆଜି ପରିଣତ ବୟସରେ ମୁଁ ଗାଆଁ ଆଡେ ବୁଲିବାକୁ ଗଲେ ପିଲାମାନେ ମୋ ପାଖକୁ ଧାଇଁଆସନ୍ତି । କିଏ କାଖ କରିବାକୁ ଜିଦ୍ କରେତ କିଏ ଚକୋଲେଟ ଆଣିଥିବି ବୋଲି ପକେଟରେ ହାତ ପୂରାନ୍ତି । ଏପରିକି ଅଜଣା ଅଚିହ୍ନା ପିଲାଙ୍କୁ ରାସ୍ତାରେ,ଟ୍ରେନ୍‌ରେ, ବସ୍‌ରେ ମଧ୍ୟ ମୁଁ କଥା କହି ସେମାନଙ୍କ ମୁହଁରେ ହସଫୁଟାଏ । ବୋଧହୁଏ ଏହି କାରଣରୁ ମୁଁ ଶିଶୁମାନଙ୍କ ପାଇଁ ଲେଖିବାକୁ ଭଲପାଏ । ରଂଗ ବେରଂଗ, ସାବାସ ଟୁଟୁ, ମଜା କାହାଣୀ, ଶିଆଳ ଝିଅର ବାହାଘର, ଟୁଟୁର ରାଇଜ ଫେରି, ଏକ ଦୁଇ ତିନି, ମୋ ଗାଆଁ ହାଟ ଆଦି ଅନେକ ଗୁଡିଏ ଶିଶୁ ସାହିତ୍ୟ ମୁଁ ରଚନା କରିଛି ।

ଏତଦ୍ ବ୍ୟତିତ ଯେଉଁ ପତ୍ରପତ୍ରିକାରେ ମୋର ଶିଶୁ ସାହିତ୍ୟ ପ୍ରକାଶ ପାଇଛି ସେଗୁଡିକ ମଧରେ ମୀନା ବଜାର, ମନ ପବନ, ସଂସାର, ନନ୍ଦନକାନନ, ଝୁମୁକା, ବାରମଜା, ଫୁଲଚାଂଗୁଡି, କାଉଁରି ଚାନ୍ଦ, ବାଇଚଢେଇ, ଶିଶୁ ଜଗତ, ମଣି ମୁକୁତା, ବଗବଗୁଲି, ଧୂଳିଘର, ନୀଳପରୀ ଝୁଲୁହାତୀ, ପ୍ରଜାପତି,ଟିକିତାରା, ଶିଶୁ ବାଇଦ, ପକ୍ଷୀରାଜ କଳିକା, ମୋତିମାଣିକ ବାଘ ମାମୁଁ, ବଗଲାବଗୁଲି, ଟିକି ଦୁନିଆ, କୁତୁକୁତୁ, କଳାମାଣିକ, ଫୁଲଚନ୍ଦନ, କାଲିଆସୁନା, ଶିଶୁ ସଭା, ଉନ୍ମେଷ, ଶିଶୁ ବଜାର, କିଶୋର ସ୍ୱାକ୍ଷର, ବିଲୁଆ ନନା, ଶିଶୁ ଲେଖା, ଟୁଉକୁ ମୃଷି, ମଗଜ ଲଡୁ, ଗୁଣ୍ଡୁଚିମୂଷା, ଆସ ସଂଗାତେ,ଶିଶୁରାଇଜ, ଶିଶୁ ନୟନ, ଆମେଶିଶୁ, ମିନର୍ଭା, ଫୁଲ ବଉଳବେଣୀ, ଚଇତି ଚଢେଇ, ଆମେ କୁନା କୁନି, ଗୌରବ , ରୁବି ଇଣ୍ଟରନେସନାଲ, କଣ୍ଢେଇ, ସ୍ନେହସୁଧା, ଇତ୍ୟାଦି ।

ଏତଦ୍ ବ୍ୟତୀତ ବିଭିନ୍ନ ସମ୍ବାଦପତ୍ର ଯଥା ପ୍ରଜାତନ୍ତ୍ର, ଧରିତ୍ରୀ, ପ୍ରଗତିବାଦୀ, ସମୟ, ରାଷ୍ଟ୍ରଦୂତ, ଅନୁପମ ଭାରତ, ଓଡିଶା ଖବର, କାଳାନ୍ତର, ଦୈନିକ ଆଜିକାଲିର ଶିଶୁ ବିଭାଗରେ ମୋର ଶିଶୁ ସାହିତ୍ୟ(ଗପ କବିତା) ପ୍ରକାଶ ପାଇ ଆସୁଛି ।

## ପତ୍ର ପତ୍ରିକା ଓ ମୁଁ

ଓଡିଶାର ପ୍ରାୟ ପ୍ରତ୍ୟେକ ପତ୍ର ପତ୍ରିକା ମୋ ରଚିତ, ଗୀତି କବିତା, କବିତା , ଗଳ୍ପ,ପ୍ରବନ୍ଧ, ରମ୍ୟ ରଚନା(ଲଘୁପାକ) ଆଦି ସ୍ଥାନ ଦେଇଆସିଛନ୍ତି । ସେଗୁଡିକର ସଂପାଦକ ସଂପାଦିକାଙ୍କ ପାଖରେ ମୁଁ କୃତଜ୍ଞ । ଯେଉଁ ଯେଉଁ ବିଭାଗରେ ଯେଉଁ ଯେଉଁ ପତ୍ରିକା ମୋତେ ସ୍ଥାନ ଦେଇଛନ୍ତି ସେମାନଙ୍କୁ ଏଠାରେ ମୁଁ ସ୍ମରଣ କରୁଛି ।

## ରମ୍ୟ ରଚନା ଓ ମୁଁ

ରମ୍ୟ ରଚନା ଭିତରେ ମୁଖ୍ୟତଃ ପ୍ରଜାତନ୍ତ୍ରର ଲଘୁପାକ,କାଳାନ୍ତରର ଲଘୁ ଚିନ୍ତନ ବିଭାଗରେ ମୁଁ ଶତାଧିକ ଲେଖା ସ୍ଥାନିତ କରିଛି । ଏଗୁଡିକରେ ସମାଜରେ ମୂଲ୍ୟବୋଧ ଗୁଡିକର ଅବକ୍ଷୟ ହେବାର ନଜିର ମୁଁ କ୍ଷୋଭ ପ୍ରକାଶ କରିଛିତ କେଉଁଠି ରାଜନୈତିକ ସମାଚାର ଓ ସାମାଜିକ ଅଧୋପତନ ପାଇଁ ଅଂଗୁଳି ନିର୍ଦ୍ଦେଶ କରିଛି । ଏହି ଧରଣର ବ୍ୟଙ୍ଗ ଲେଖା ମୁଁ ଅନ୍ୟାନ୍ୟ ସଂବାଦପତ୍ର "ଖୋଲାଦ୍ୱାର " ଦୈନିକ ଆଜିକାଲିରେ 'ବିତର୍କ' ଶିରୋନାମାରେ ଏବଂ ଧ୍ୱନି ପ୍ରତିଧ୍ୱନିରେ ତୀର୍ଯ୍ୟକ ଶିରୋନାମାରେ ପ୍ରକାଶ କରିଆସିଛି ।

କେତେକ ପତ୍ରିକା ମଧ୍ୟ ମୋର ବ୍ୟଂଗ ରଚନାକୁ ସ୍ଥାନ ଦେଇଛନ୍ତି । ସେଗୁଡିକ ମଧ୍ୟରେ ମୁଖ୍ୟତଃ ସବୁଜ ସ୍ୱପ୍ନ, ମେଘଦୂତ,ଟିକେହସ, ସଂଗ୍ରାମ, ଶ୍ରୀ ହରିବୋଲ ଆଦିର ନାମ ଉଲ୍ଲେଖ କରାଯାଇପାରେ ।

## ପ୍ରବନ୍ଧ ଓ ମୁଁ :

ମୁଁ ସ୍ୱୀକାର କରୁଛି ମୁଁ ପ୍ରାବନ୍ଧିକ ଭାବେ ପ୍ରତିଷ୍ଠା ପାଇ ନାହିଁ । ତଥାପି କେତେବେଳେ ସଂପାଦକଙ୍କ ଅନୁରୋଧରେ ତ କେତେବେଳେ ବିଶେଷ ଆବଶ୍ୟକତା କ୍ଷେତ୍ରରେ କେତୋଟି ପ୍ରବନ୍ଧ ଲେଖିଛି । ସେଗୁଡିକ ପ୍ରକାଶ ପାଇଥିବା ପତ୍ରିକା ଗୁଡିକର ନାମ ଭିତରୁ କେତେଗୋଟିର ସୂଚନା ମୋ ପାଖେ ଅଛି ତାହା ଏଠାରେ ସ୍ଥାନିତ କରୁଛି । ପ୍ରବନ୍ଧ ଗୁଡିକ ମୁଖ୍ୟତଃ, ଶିଶୁ ସାହିତ୍ୟ , ଗୀତି କବିତା,ନାଟକ ଉପରେ ଅଧାରିତ । ପତ୍ରିକା ଟିର ସମର୍ଥ, ବର୍ତ୍ତିକା ସୌରଭ, ସହକାର, କସ୍ତୁରୀ, କୋଣାର୍କ(ଓଡିଶା ସାହିତ୍ୟ ଏକାଡେମୀ ମୁଖପତ୍ର)ଯାଜପୁର ଜିଲ୍ଲା ଲେଖକ ସମ୍ମେଳନର ସ୍ମରଣିକା, ୧୯୯୬, ୨୦୦୦,୨୦୦୫, ଓଡିଆ ଗୀତିକବି ସମାଜ ସ୍ମରଣିକା ୨୦୦୫ ।

## ଦୂରଦର୍ଶନ ଓ ମୁଁ

ଦୂରଦର୍ଶନ ର ବିଶେଷ କାର୍ଯ୍ୟକ୍ରମ ଜୁଆର, ସଂଧ୍ୟା ରାଗ, ସଂଗୀତ ସଂଧ୍ୟାରେ ମୋର ଗୀତ ଗୁଡିକ ପ୍ରଚାରିତ ହୋଇଥିଲେ ହେଁ ସାଧାରଣ ସଂଗୀତ କାର୍ଯ୍ୟକ୍ରମ ରେ ବିଭିନ୍ନ ଶିଳ୍ପୀ ମାନେ ବିଭିନ୍ନ କାର୍ଯ୍ୟକ୍ରମରେ ଆଧୁନିକ ଭଜନ, ସମବେତ କଣ୍ଠରେ ଦେଶ ବନ୍ଦନା ଆଦି ପ୍ରସାରିତ କରିଛନ୍ତି ।

ଏହି ଶିଳ୍ପୀ ମାନେ ହେଲେ ସିକନ୍ଦର ଆଲାମ, ଗୋପାଳ ସାମନ୍ତରାୟ, ଆରତି ମିଶ୍ର, ରଂଜିତା ସେନାପତି, ମିତାଲି ଚିନ୍ନରା, ନନ୍ଦିତା ମହାପାତ୍ର, ନିରୋଜ ନଳିନୀ କୁଅଁର, ମମତା ସାହୁ, କୃତ୍ତି ବେହେରା, ଇତ୍ୟାଦି ।

ମୁଁ ନିଜେ ମଧ୍ୟ ଦୂରଦର୍ଶନରେ ଜଣେ ଅଫସ୍କ୍ରିନ୍ ଭଏସ ଭାବେ ୧୯୭୯ ମସିହାରୁ ଅଂଶ ଗ୍ରହଣ କରିଛି । ଦୂରଦର୍ଶନ ପାଇଁ ଧାରାବାହିକ ଲେଖିଛି ।

ଆକାଶବାଣୀରେ ସାହିତ୍ୟ କୌମୁଦୀ ହେଉଛି ସବୁଠାରୁ ସମ୍ମାନ ଜନକ ସାହିତ୍ୟ କାର୍ଯ୍ୟକ୍ରମ । ସେଥିରେ ମଧ୍ୟ ମୁଁ ଅଂଶଗ୍ରହଣ କରିଛି । ଅଥଚ ଦୂରଦର୍ଶନ ମୋତେ ଏଯାବତ(୨୦୦୫ ସୁଦ୍ଧା) କୌଣସି ସାହିତ୍ୟିକ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିବାର ସୁଯୋଗ ଦେଇନଥିବାରୁ ମୁଁ ଦୁଃଖିତ । ମୁଁ ଏକ ମଫସଲ ଅଂଚଳରେ ରହୁଥିବାରୁ

ଦୂରଦର୍ଶନର ହୁଏତ ଦୃଷ୍ଟି ଆକର୍ଷଣ କରିବାରେ ସମକକ୍ଷ ହୋଇପାରିନି ।

ତେବେ ଦୂରଦର୍ଶନର ବିଶେଷ ସଂଗୀତ କାର୍ଯ୍ୟକ୍ରମରେ ଅକ୍ଷୟ ମହାନ୍ତି, ଗୀତା ପଟ୍ଟନାୟକ, ଅତୀଶ ମଜୁମ୍‌ଦାର୍, ଇନ୍ଦ୍ରାଣି ମିଶ୍ର, ସେବାରାଣୀ ମହାପାତ୍ର ଆଦି ମୋ ରଚିତ ସଂଗୀତ ଗୁଡିକ ଗାଇ ମୋତେ ଦୂରଦର୍ଶନର ଦର୍ଶକ ଙ୍କ ପାଖରେ ପରିଚିତ କରାଇ ଥିବାରୁ ମୁଁ କିଛିଟା ଆତ୍ମ ସନ୍ତୋଷ ମଧ ଲାଭ କରିଛି ।

## ପ୍ରୌଢ ଶିକ୍ଷା ଓ ମୁଁ

ଏହାକୁ ପ୍ରୌଢ ଶିକ୍ଷା କୁହ କି ନବ ସ୍ୱାକ୍ଷର କୁ ହ ଏଥିରେ ମୋର ରୁଚି ନାହିଁ । କାରଣ ମୁଁ ଜାଣେ ଏହି ଯୋଜନାର ସଫଳତା ପାଇଁ ନା ଅଛି ସରକାରଙ୍କ ସହଯୋଗ ନା ଅଛି ସ୍ୱେଚ୍ଛାସେବୀ ସଂସ୍ଥା ମାନଙ୍କର ଆନ୍ତରିକତା ।

ତଥାପି ଏଥିରେ ମୁଁ କିଛିଟା ପରୋକ୍ଷ ଭାବେ ସଂପୃକ୍ତ ହୋଇଛି ଏମାନଙ୍କ ପାଇଁ କେତୋଟି ବହି ଲେଖି ।

ସେଗୁଡିକ ପ୍ରକାଶ କରିଛନ୍ତି ଗ୍ରନ୍ଥ ମନ୍ଦିର ଏବଂ ଗ୍ରନ୍ଥଜୀ ବୁକ୍ ଷ୍ଟଲ କଟକ । ବହିଗୁଡ଼ିକ ମଧରେ ଡଗ ଢମାଳିରେ ନାଷ ବାସ କଥା, ମୋ ମାଆ, ମୋ ଗାଆଁ, ବେଶ୍ ଗ୍ରହଣୀୟ ହୋଇଛି ।

ଏହାଛଡା "ସୁଜାତା ସେବା ସମିତି" ଏବେ "ଯେତେ ଦିଅଁ ସେତେ ପୂଜା" ମଧ ବେଶ ଆଦର ଲାଭ କରିଛି । ଜନ ଶିକ୍ଷା ସାଧନ କେନ୍ଦ୍ର ଦ୍ୱାରା ଆଦୃତ ହୋଇ ମୁଁ କେତୋଟି କ୍ୟାସେଟ୍ ପାଇଁ ଗୀତ ଲେଖିଛି । ପୁସ୍ତକ ମଧ ଲେଖିଛି । ମନେପଡେ ଏଇଠି ମୋ ପୁଅ ଅଶୋକ(ଟୁଟୁ) କୃଷି ବିଜ୍ଞାନ ଛାତ୍ର ଥିବା ବେଳେ ମାଛ ଚାଷ ଉପରେ ଏକ ବହି ମଧ ଲେଖିଥିଲା ତାହା ମଧ ଗ୍ରନ୍ଥ ମନ୍ଦିର ଦ୍ୱାରା ପ୍ରକାଶନ ପାଇ ନବସ୍ୱାକ୍ଷର ଙ୍କ କାମରେ ଲାଗିଛି ।

## ସ୍ତମ୍ଭକାର ଓ ମୁଁ :

ଚାକିରୀ ଥିବା ବେଳେ ମୁଁ ଖବରକାଗଜ ପୃଷ୍ଠାରେ କବିତା,ଗପ ଆଦି ଲେଖିଥିଲି । କିନ୍ତୁ ଅବସର ପରେ କେବେ କେବେ ସମାଜର ଦୋଷ ଦୁର୍ବଳତା, ସରକାରଙ୍କ ଭୁଲ ନିଷ୍ପତି ଏବଂ ଅପାରଗତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଛି । ଏଗୁଡିକ ମୁଖ୍ୟତଃ ପ୍ରଜାତନ୍ତ୍ରର ଲଘୁପାକ, କାଳାନ୍ତରର ଲଘୁ ଚିନ୍ତନ, ଧ୍ୱନି ପ୍ରତିଧ୍ୱନିର ତୀର୍ଯ୍ୟକ ତଥା ଆଜିକାଲିର ବିତର୍କ ଶିରୋନାମାରେ ପ୍ରକାଶିତ ।

## ଚାଷବାସ ଓ ମୁଁ

ଆମର ଆଗରୁ ନିଜେ ହଳ ବଳଦ ମୁଲିଆ ଓ ଚାକିରୀଆ ରଖି ବାପା ଚାଷ କାର୍ଯ୍ୟ ବୁଝା ଶୁଝା କରୁଥିଲେ । ସେ ବୃଦ୍ଧ ହେବା ପରେ ଚାଷ ବାସର ଖବର ମୁଁ ବୁଝିଲି । ଘର ପାଖରେ ଚାକିରୀ କରୁ ଥିବାରୁ ଚାକିରୀ ସଂଗେ ସଂଗେ ଚାଷବାସ ତଦାରଖ କଲି । ତେବେ କୌଣସିପରିସ୍ଥିତିରେ ଚାଷ ପାଇଁ ଚାକିରୀରେ ଅବହେଳା କରୁନଥିଲି ।

ମୁଲିଆ ଚାକିରୀଆ ଥିଲେବି ବେଳେ ବେଳେ ଖତ ବୁଣିବା,ବିହନ ବୁଣିବା, ଖୁବ୍ ଅଳ୍ପ ସମୟ ଧରି ଚାଷ କରିବା ଏପରିକି ସାଇକେଲରେ କଟଡା ବୋହିବା କାମ କରିବାକୁ ପଡୁଥିଲା । ମୁଁ ମଧ୍ୟ ଆନନ୍ଦରେ ଏସବୁ କରୁଥିଲି । ତେବେ ଏବେ ଆଉ ହାତରେ ଚାଷ କରିବା ସମ୍ଭବ ନୁହେଁ । ମୁଲିଆଙ୍କ ମଜୁରୀ ବହୁ ଗୁଣେ ବୃଦ୍ଧିପାଇଥିବା ବେଳେ ଧାନ ଦର ଆନୁପାତିକ ଭାବେ କମ୍ । ଏଣୁ ବିଲ/ଜମି ସବୁ ବଖରା ଦିଆଯାଇଛି କିମ୍ବା ଗୁଣ୍ଡରେ ୪-୫ ଗୌଣି ଧାନ ମିଳିବାର କାଟ ବ୍ୟବସ୍ଥା କରାଯାଇଛି ।

ଗୋଟିଏ ଛୋଟ ଉଦାହରଣ -ଆଗେ ଧାନ ଗୌଣି ୩ ଟଙ୍କା ଥିବା ବେଳେ ମଜୁରୀ ୩ରୁ ୪ଟଙ୍କା ଥିଲା । ଏବେ ଧାନ ଗୌଣୀ ଖୁବ୍ ବେଶୀରେ ୮/୯ ଟଙ୍କା ହୋଇଥିବା ବେଳେ ମଜୁରୀ ୬୦-୭୦ଟଙ୍କାରୁ କମ୍ ନୁହେଁ । ଏଣୁ ଧାନ ଦର ୨/୩ ଗୁଣ ବଢିବା ବେଳେ ମଜୁରୀ ୨୦ ଗୁଣରୁ ଅଧିକ ବୃଦ୍ଧି ପାଇଛି । ଅଥଚ ଚାଷୀ ଏହି ପରିସ୍ଥିତିରେ ନିଜେ ନଖଟି ପର ଉପରେ ନିର୍ଭର କରି ଚାଷ କଲେ କ୍ଷତି ହିଁ କ୍ଷତି ।

ତେଣୁ ଅବସର ପରେ ମଧ୍ୟ ଚାଷ ପ୍ରତି ବିମୁଖ ହୋଇ ବିଲବାଡି ବଖରା ବା କାଟ ଦେଇଛି ।

## କିଞ୍ଚିତ ସମାଜସେବା

ମୋର ପ୍ରଥମ ଚାକିରୀ ଆରଂଭ ରୁଦ୍ର ଚରଣ ହାଇସ୍କୁଲରେ । ଏହି ସ୍କୁଲରୁ ପ୍ରତିବର୍ଷ ପ୍ରଥମ ଶ୍ରେଣୀରେ ସର୍ବୋଚ୍ଚ ନମ୍ବର ରଖି ଉତ୍ତୀର୍ଣ୍ଣ ହେଉଥିବା ଛାତ୍ର ବା ଛାତ୍ରୀଙ୍କୁ ବାର୍ଷିକ ପୁରସ୍କାର ଦେବାପାଇଁ ସ୍ଥାୟୀ ପାଣ୍ଠି ପାଇଁ ଅର୍ଥ ଦାନ କରାଯାଇଛି ।

କୋରେଇ ମାଇନର ସ୍କୁଲ(ବର୍ତ୍ତମାନ ୟୁ.ପି)ରେ ଜନ୍ମଦିନରେ ଅପ୍ରେଲ ପହିଲା ଏହିଦିନ ଶ୍ରେଣୀ ସଭାରେ ୧ମ ୨ୟ ସ୍ଥାନ ଅଧିକାର କରିବାର ଶ୍ରେଣୀରୁ ପୁରସ୍କାର ଦେବା ପାଇଁ ବ୍ୟବସ୍ଥା ଅଛି ।

ଏଣୁ ମୋ ପ୍ରଦତ୍ତ ଅର୍ଥରେ ଏକ ସ୍ଥାୟୀ ପାଣ୍ଠି ଗଠନ କରାଯାଇଛି । ତାର ଅର୍ଜିତ ବାର୍ଷିକ ସୁଧରୁ ଅର୍ଦ୍ଧେକ ଏହି ଶ୍ରେଣୀ ସଜ୍ଜା ପୁରସ୍କାର ଏବଂ ଅର୍ଦ୍ଧେକ ୭ମ ଶ୍ରେଣୀରୁ ସର୍ବୋଚ୍ଚ ନମ୍ବର ରଖି ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରଛାତ୍ରୀଙ୍କୁ ପ୍ରଦାନ କରିବାର

ବ୍ୟବସ୍ଥା ଅଛି ।

ଶଂଖଚିଲା ଗ୍ରାମରେ ମାଆ ହିଂଗୁଳାଙ୍କ ମନ୍ଦିର । ସେହି ହିଂଗୁଳାଙ୍କ ନାମରେ ଗଠିତ କଲ୍ୟାଣ ପାଣ୍ଠିକୁ ଅର୍ଥ ପ୍ରଦାନ କରାଯାଇଛି । ଏହି ପାଣ୍ଠିକୁ ମୁଁ ଓ ମୋ ସ୍ତ୍ରୀ ସୁରବାଳା ସିଂହ ଦାନ କରିଛୁ । ଏହାର ଅର୍ଜିତ ସୁଧରୁ ପ୍ରତିବର୍ଷ ଜଣେ ପିତୃମାତୃହୀନା କନ୍ୟାର ବିବାହ ପାଇଁ ଅର୍ଥ ସାହାଯ୍ୟ କରାହେବାର ବନ୍ଦୋବସ୍ତ ହିଂଗୁଳା କମିଟି ଦ୍ୱାରା କରାଯାଉଛି ।

କୋରାଇସ୍କୁଲର ପିଲାମାନଙ୍କ ପାଇଁ ପାନୀୟ ଜଳର ବ୍ୟବସ୍ଥାପାଇଁ ଟାଙ୍କି ଏବଂ ପାଇପ୍ ବ୍ୟବସ୍ଥା ପାଇଁ ଅର୍ଥ ପ୍ରଦାନ କରାଯାଇଛି ।

ପ୍ରାକୃତିକ ଦୁର୍ବିପାକ ସମୟରେ ମୋର ଛାତ୍ରାବସ୍ଥାରୁ ବୃତ୍ତି ଟଙ୍କା, ଆକାଶବାଣୀର ସଂଗୀତ ବିଭାଗରୁ ପ୍ରାପ୍ତ ପ୍ରାପ୍ୟରୁ କେବଳ ଦରମାରୁ କିମ୍ବା ପେନ୍‌ସନରୁ ମଧ ପ୍ରଧାନମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିକୁ ମୋର ଶକ୍ତି ଓ ସାମର୍ଥ୍ୟକୁ ଚାହିଁ ଅର୍ଥଦାନ କରିଥାଏ ।

ଗ୍ରାମର ଉନ୍ନତିମୂଳକ ଲୋକହିତକର କାର୍ଯ୍ୟ ତଥା ଦରିଦ୍ର ବ୍ୟକ୍ତିଙ୍କ ରୋଗ ଉପଶମ ପାଇଁ ମୋର ସାମର୍ଥ୍ୟ ଅନୁସାରେ ଆର୍ଥିକ ସାହାଯ୍ୟ ପ୍ରଦାନ କରିଥାଏ ।

## ଏକାନ୍ତ ଗୋପନୀୟ

ମୋର ଭଣଜା କୃଷ୍ଣ ଚନ୍ଦ୍ର ଘୋଷ ପିତା ସ୍ୱର୍ଗତଃ ମଣିଘୋଷ ମାତା ସ୍ୱର୍ଗତାଃ ସାବିତ୍ରୀ ଦେବୀ ପ୍ରାୟ ୫/୬ବର୍ଷ ବେଳୁ ମୋ ପାଖରେ ଅଛି । ଏଠାରେ ଜ୍ୟେଷ୍ଠପୁତ୍ର ଭାବେ ପାଳିତ କହିଲେ ଭୁଲ ହେବନାହିଁ । ମୋର ପୁତ୍ର ଅଶୋକ କୁମାର ସିଂହ ଏକମାତ୍ର କଳ୍ପିତ ପୁତ୍ର । କନ୍ୟା ପ୍ରଜ୍ଞାମୟୀ ସୁଜାତା ବିପଥଗାମୀ ହୋଇ ମୋଠାରୁ ସମସ୍ତ ପାରିବାରିକ, ସାମାଜିକ ସଂପର୍କ ତୁଟାଇ ତା ନିଜ ବାଟ ନିଜେ ମୋ ଇଚ୍ଛା ବିରୁଦ୍ଧରେ ବାଛିନେଇଛି । ଏଣୁ ମୁଁ ଏକ ଇଚ୍ଛାପତ୍ର କରିଅଛି । ଏହା ଏକାନ୍ତ ଗୋପନୀୟ । ମୋ ଅନ୍ତେ ମୋ ଇଚ୍ଛା ପତ୍ର ଅନୁସାରେ ସମସ୍ତ ସ୍ଥାବର ଓ ଅସ୍ଥାବର ସଂପତ୍ତିର ବଣ୍ଟନ ଅଛି । ଏହି ଉଇଲରେ ରହିଛି । ସେଇ ଅନୁସାରେ ତାହା କାର୍ଯ୍ୟକାରୀ ହେବ ।

ଏଠାରେ ମୁଁ କହିବାକୁ ଚାହେଁ ମୋର ଭଣଜା ଓ ତାର ପରିବାର ମୋ ଅନ୍ତେ ଯେପରି ସୁଖ ସୁବିଧାରେ ମୋର ଏହି ପୈତୃକ ଗୃହରେ ରହି ସୁଖରେ କାଳ କାଟିବେ ତାହା ଦେଖିବା ମୋ ସ୍ତ୍ରୀ ଓ ମୋ ପୁଅର ମଧ ଏକ ନୈତିକ କର୍ତ୍ତବ୍ୟ । ଇଚ୍ଛାପତ୍ରରେ ସାକ୍ଷ୍ୟ ଦେଇଥିବା ବିଶ୍ୱନାଥ ମହାପାତ୍ର ଓ ଅଶୋକ ନନ୍ଦୀଙ୍କ ର ମଧ ନୈତିକ ଓ ଆଇନଗତ ଦାୟୀତ୍ୱ ଏ ଦିଗରେ ଅବଶ୍ୟ ରହିଛି ।

ସ୍ୱା : ନନ୍ଦକିଶୋର ସିଂହ

## ସୃଜନୀ

### ସୃଜନର ପହିଲି ପୁଲକ-ପ୍ରଜାତନ୍ତ୍ର-୨୧।୧।୨୦୦୫

ସୃଜନର ପହିଲି ପୁଲକ ଆଉ ପହିଲି ସୃଜନର ପୁଲକ ଏଇ ଦୁଇଟା କଣ ଏକାକଥା । ନା -ମୁଁ ଭାବୁଛି ଏକାନୁହେଁ, ପହିଲି ସୃଜନର ପୁଲକଟି ପ୍ରଥମଥର ପାଇଁ ପୁଣି ଶେଷଥର ପାଇଁ ଆସେ । କିନ୍ତୁ ସୃଜନର ପହିଲି ପୁଲକ ଆସେ ବାରମ୍ବାର । ଅତୀତ ବର୍ତ୍ତମାନ ଭବିତଷ୍ୟତକୁ ନେଇ ଏପୁଲକର ଜୟଯାତ୍ରା ଅବ୍ୟାହତ ରହିଥାଏ । ଏଣୁ ଜୀବନର ଅନେକ ପୁଲକ ଭିତରୁ ଗୋଟେ ଗୋଟେ ନିଆରା ସ୍ମୃତିର ପୁଲକ ସଦାବେଳେ ମନ ଭିତରେ ଖୁଜୁବୁଜୁ ହେଉଥାଏ । ମୁଁ ଭାବୁଛି ସେଇ ଖୁଜୁବୁଜିଆ ଦୁଷ୍ଟ ପିଲା ଗୁଡିକୁ ଦଉଡେଇ ଦେବି ପ୍ରଜାତନ୍ତ୍ରର ସପ୍ତାହାନ୍ତ ବାଲିଦାଣ୍ଡରେ ।

ତେବେ ଏଇଟି ଗୋଟେ କଥା କହିରଖେ ଏଇ ପୁଲକଗୁଡ଼ା କ୍ରମାନ୍ୱୟରେ କେବେ ହେଲେ ମନକୁ ଆସିବନି । ଏଣୁ କେଉଁଟା ଆଗ କେଉଁଟା ପଛ ସେକଥା ଉପରେ ଗୁରୁତ୍ୱ ନଦେଇ ବେପରୁଆ ଭାବେ ଯିଏ ମନକୁ ଯେତେବେଳେ ଆସୁଛି ଲେଖିପକାଉଛି ।

ତେବେ ପ୍ରଜାତନ୍ତ୍ର ହିଁ ମୋର ପ୍ରଥମ ମୁଦ୍ରିତ ଲେଖାର ଷଠିକାର । ଏଣୁ ମୀନାବଜାରରେ ଯେତେବେଳେ "ନେଉଳ ଭାଇର ରାଇଜ ଫେରି " ଗପଟି ପ୍ରକାଶ ପାଇଲା ସେଦିନର ଆନନ୍ଦହିଁ ମୋର ସାର୍ଥକ ସୃଜନର ପହିଲି ପୁଲକ । ଦିନ ତାରିଖ କଥା ମନେପକାଇ ନିଜକୁ ବୋର କରିବାକୁ ଚାହୁଁନି କିମ୍ବା ପାଠକକୁ ବିରକ୍ତ କରିବାକୁ ଚାହୁଁନି । ତେବେ ବାରଟା ନିଶ୍ଚୟ ଗୁରବାର, କାରଣ ସେ ସମୟ ଅର୍ଥାତ ୧୯୫୪ ବେଳକୁ ମୀନାବଜାର କ୍ରୋଡପତ୍ର ରୂପେ ପ୍ରତି ଗୁରବାର ପ୍ରଜାତନ୍ତ୍ରରେ ସ୍ଥାନିତ ହେଉଥିଲା । ଠିକ୍ ସେମିତି ଯେମିତି ଝଙ୍କାରର ୧୯୭୨ ଡିସେମ୍ବର ସଂଖ୍ୟାରେ ମୋର ଗୀତିକବିତାଟି (ଗୀତି ରୂପକଜର) ପ୍ରକାଶ ପାଇଲା ସେଦିନର ଆନନ୍ଦ କହିଲେ ନସରେ । ଏଇଠି କହିରଖେ ବହୁଦିନରୁ ମୋର ସ୍ୱପ୍ନଥିଲା ଝଙ୍କାର ପୃଷ୍ଠାରେ କେମିତି ମୋଲେଖା ମଣ୍ଡିତ ହେବ । ତାହା ସଫଳ ହେଲା ମୀନା ବଜାରରେ ପ୍ରକାଶ ପାଇବାର ଦୀର୍ଘ ୧୮ ବର୍ଷ ପରେ ।

ସ୍ୱପ୍ନବି ଥିଲା ଆକାଶବାଣୀରେ ଜଣେ ଗୀତିକାର ଆଉ ନାଟ୍ୟକାର ହେବା ପାଇଁ । ସେ ସ୍ୱପ୍ନ ବି ସତ ହେଲା । ଖରାଦିନେ ଘରେ ଖାଇବସିଥାଏ ହଠାତ ହଇଦିଆ

କାଗଜର ଲଫାଫା ଚିଠିଟି ପାଇଲି ଅଲ ଇଣ୍ଡିଆ ରେଡିଓ କଟକର । ଖାଉ ଖାଉ ଚିଠିଟି ଖୋଲି ପଢ଼ିଲି ଯେ ମୁଁ ଜଣେ ସୌଖୀନ ନାଟ୍ୟଶିଳ୍ପୀ ଭାବେ ସ୍ୱୀକୃତି ପାଇଛି । ଏହା ବୋଧେ ୧୯୬୨ ମଇ ମାସର କଥା । ବାସ୍ ଏତକ ପଢ଼ିବା ପରେ ଭୋକ ମରିଗଲା । ମୁଁ ଆନନ୍ଦରେ ଆତ୍ମହରା ହୋଇପଡିଲି । କାରଣ ଏକାଥରରେ ଅଡିଶନ୍‌ରେ ପାଶ୍ । ହଁ ଏଇଠି ମନେପଡ଼ିଲା ଠିକ୍ ମାସେ ଦି'ମାସ ପୂର୍ବରୁ ମୋ ନାଟକ "ଉଲୁପି" ନାରିମହଲରେ ପ୍ରଚାରିତ ହୋଇସାରିଥାଏ । ଏଣୁ ମୁଁ ପ୍ରଥମେ ଆକାଶବାଣୀର ନାଟ୍ୟକାର ପରେ ନାଟ୍ୟ ଶିଳ୍ପୀ । ଠିକ୍ ଆକାଶବାଣୀ ମୋତେ ସେମିତି ପୁଲକ ଦେଇଥିଲା ଯେତେବେଳେ ମୋର ପ୍ରଥମ ଗୀତ ବାଜିଥିଲା ଡ. ମନୋରଂଜନ ପୃଷ୍ଟିଙ୍କ କଣ୍ଠରେ ୧୯୬୪ ଏପ୍ରିଲ୍ ମାସରେ । ଗୀତଟି ଥିଲା ଜୀବନ ପଥ ମୋର ବେଳକୁ ବେଳ ପ୍ରଭୁ ହୋଇଗଲା କଣ୍ଟକିତ । ସେତେବେଳେ ମୋ ଘରେ କି ମୋ ଗାଆଁରେ ରେଡିଓ ନଥିଲା । ଏଣୁ ମୁଁ ଧାଇଁଯାଇଥିଲି ମୋ ଗୀତ ଶୁଣିବା ପାଇଁ ମୋର କର୍ମସ୍ଥଳୀ ସୁଦୂର ସୁଜନପୁରକୁ । ଗୋଟେ ଦଦରା ପୁରୁଣା ସାଇକେଲ ଚଢି । ୩୦ କିଲୋମିଟର ବାଟ ଅତିକ୍ରମ କରିବାକୁ ମୋତେ ୨ ଘଣ୍ଟାରୁ କମ୍ ସମୟ ଲାଗିନଥିଲା ବୋଧେ । ଅବଶ୍ୟ ସେତେବେଳେ ମୁଁ ଥିଲି ୨୦/୨୨ ବର୍ଷର ଯୁବକ ।

ଏହିପରି ଭାବେ ମୋର ପ୍ରଥମ ବେତାର ନାଟ୍ୟ ଅଭିନୟ କଥା କୁହେ । ବେତାର ନାଟକଟି ଥିଲା ରାମର ସୁମତି । କଳାକାର ଥିଲେ ଧୀର ବିଶ୍ୱାଳ ଆଉ ପ୍ରଶାନ୍ତ ନନ୍ଦ । ସେତେବେଳେ ପ୍ରଶାନ୍ତ ନନ୍ଦ ସ୍କୁଲରେ ପଢୁଥିବା ଛୋଟ ପିଲାଟିଏ । ମୁଁ ଅଭିନୟ କରୁଥାଏ ଗୋଟେ ରୋଗୀ ଭୂମିକାରେ । ସ୍ୱର୍ଗତଃ ଧୀର ବିଶ୍ୱାଳ ମୋତେ ସାହାଯ୍ୟ କରିଥିଲେ କିପରି ଅଭିନୟ କଲେ ବେର୍ତାରରେ ଜଣେ ରୋଗୀ ଭାବେ ଶ୍ରୋତାଙ୍କ ପାଖେ ପରିଚିତ ହେବି । ସେ ତ ସ୍ୱର୍ଗରେ । ହେଲେ ତାଙ୍କର ସେ ଉପଦେଶ ମୋର ଏବେବି ମନେପଡେ । ସେ ମଧ୍ୟ ପ୍ରଥମେ ମୋତେ ସ୍ୱାଦ ଚଖାଇଥିଲେ ଚଳଚିତ୍ରର ଗୀତିକାର ହେବାରେ । ସେ ତାଙ୍କର ପ୍ରଯୋଜିତ ଫିଲ୍ମ "ଧରିତ୍ରୀ"ରେ ମୋତେ ଗୀତ ଲେଖାଇବାର ସୁଯୋଗ ଦେଇଥିଲେ । ଫିଲ୍ମର ନିର୍ଦ୍ଦେଶକ ନିତାଇ ପାଲିତ ମୋତେ ଉତ୍ସାହିତ କରିଥିଲେ । ତାଙ୍କ ଘରେ ଭୀମ ସିଂ ମୁଁ ଏବଂ ଧୀରବାବୁ ଏକାଠି ଖେଚୁଡି ଓ ଡାଲମା ଖାଇବାର ସ୍ମୃତି ଏବେ ମୋ ହୃଦୟରେ ଜଡି ରହିଛି ଆଉ ପୁଲକିତ କରୁଛି ।

କମ୍ ପୁଲକ ପାଇନଥିଲି ଯେଉଁଦିନ ମୋ ରଚିତ ମଂଚ ନାଟକ ଲହୁ-ଲୁହ ମଂଚସ୍ଥ ହୋଇଥିଲା କୋରେଇ ବ୍ଲକ ପାଖ ପଡିଆରେ । କୋରେଇ ଯୁବଜ୍ୟୋତି କ୍ଲବ ଦ୍ୱାରା ଆୟୋଜିତ ସେ ନାଟକଟି ପାଇଁ ବହୁ ଟଙ୍କାର ଟିକଟ ମଧ୍ୟ ବିକ୍ରି ହୋଇଥିଲା । ମୋ ଲିଖିତ ଦୁଇଟି ନାଟକ ଲହୁ-ଲୁହ ଆଉ ଚାଣକ୍ୟ ମଫସଲ ଅଞ୍ଚଳରେ ଟିକେଟ

ବିକ୍ରିର ଏକ ଅପୂର୍ବ ସଫଳତା ପାଇଥିଲା ନିର୍ଦ୍ଦେଶନା ଦେଇଥିଲେ ମୋର ବଂଧୁ ପୋଲିସ୍ ସବ୍‌ଇନିସ୍‌ପେକ୍ଟର ବଂକିମ୍ ମହାନ୍ତି ।

ଏଇ ପୁଲକ ଗୁଡିକ ଏବେଯାଏ ମୋ ମନ ଭିତରେ ଛନ୍ଦା ଛନ୍ଦି ହୋଇ ବସା ବାନ୍ଧିଛି । ଟିକେ ସୁବିଧା ପାଇଲେ ପଦାକୁ ଚାଲିଆସୁଛନ୍ତି । ଏଣୁ ସୃଜନୀର ପହିଲି ପୁଲକ ବା ପହିଲି ସୃଜନୀର ପୁଲକ ହିଁ ମୋ ବଂଚିବାର ଆଧାର । ମୋର ଜୀବନର ରାହା ।

ସତ କହିବାକୁ ଗଲେ ମୋ ବିବାହର ମଧୁରାତିର ପୁଲକ ବା ମୋ ମାଂସର ଫୁଲ (ପ୍ରଥମ ସନ୍ତାନ) ଜନ୍ମ ହେବାର ପୁଲକ ଠାରୁ ମୋ ସାରସ୍ୱତ ଜୀବନର ସୃଜନୀ ପୁଲକ ମୋତେ ଅଧିକ ପୁଲକିତ କରି ଆସିଛି ।

ଆଜିବି ସେ ଧାରା ବିସ୍ତାରିତ ହୋଇ ଚାଲିଛି । କେବେ ଦୂରଦର୍ଶନରେ ଧାରାବାହିକ ଲେଖକ ଭାବେ କେବେ ସମ୍ବାଦପତ୍ରର ମୁକ୍ତ ସ୍ତମ୍ଭକାର ଭାବେ ପୁଣି କେବେ ତ ସ୍ୱସଂପାଦିତ ପଲ୍ଲୀଜୀବନ ଧର୍ମୀ ପତ୍ରିକା ବୋଲେ ହୁଁଟି ଭିତରେ ମୁଁ ଦେଖୁଛି ନୂଆ ସ୍ୱପ୍ନ, ପାଇଛି ନୂଆ ପୁଲକ । ଏ ପୁଲକ ପ୍ରାପ୍ତିରେ ମୁଁ ଖୁବ୍ ଭାଗ୍ୟବାନ ।

## ତାଙ୍କୁ, ତାଙ୍କଠୁ, ତାଙ୍କ ବିଷୟରେ

୧୯୫୪ ମସିହା ମୋତେ ସେତେବେଳେ ବାର ତେର ବର୍ଷ ବୟସ । ମୁଁ ଏନ.ସି.ହାଇସ୍କୁଲ, ଯାଜପୁର ରୋଡର ଅଷ୍ଟମ ଶ୍ରେଣୀର ଛାତ୍ର । ସେତେବେଳେ ମୋ ଲେଖାଲେଖି ଜୀବନର ଖଡିଛୁଆଁ କହିଲେ ଠିକ୍ ହେବ । ସେ ସମୟରେ ପ୍ରଜାତନ୍ତ୍ରରେ ଗୁରୁବାରଦିନ ସପ୍ତାହକୁ ଥରେ ଛୋଟ ଛୋଟ ପିଲାଙ୍କ ପାଇଁ ବାହାରୁଥାଏ କ୍ରୋଡପତ୍ର ଭାବେ ସାପ୍ତାହିକ ମୀନାବଜାର । ପ୍ରତି ଗୁରବାର ସେତେବେଳେ ଥାଏ ମୋ ପାଇଁ ଗୋଟେ ପ୍ରତୀକ୍ଷାର ଦିନ । କାରଣ ମୀନାବଜାର ବାହାରିବ । ହାଲେ ମୀନାବଜାରରେ ମୋର ଲେଖା ବାହାରିବ । ଏମିତି କିଛିଦିନ କଟିଗଲା । ହଠାତ ଦିନେ ମୀନାବଜାର ଛପାହୋଇଥିବା ପୋଷ୍ଟକାର୍ଡଟିଏ ମୋ ପାଖରେ ଆସି ପହଂଚିଲା । ସେଥିରେ ଲେଖାଥାଏ ମୋର ଗପଟିଏ ବାହାରିବ । ନାଆଁ ତାର ନେଉଳ ଭାଇର ରାଇଜ ଫେରି । ଚିଠି ଦେଇଥାନ୍ତି ଜହ୍ନୁରୀ ଭାଇ । ସେତେବେଳେ ଜହ୍ନୁରୀ ଭାଇ ଯେ ଆଜିର ରାମ ପ୍ରସାଦ ମହାନ୍ତି ଏକଥା ମୋତେ ଜଣାନଥାଏ । ଭାବୁଥାଏ ଏଇ ବୋଧେ କକା ମହତାବ୍ । ଏଣୁ ଚିଠିଟି ପାଇ ଆନନ୍ଦରେ ଡେଇଁଲି । ଘରସାରା କଂପେଇ ଦେଲି କହି କହି "ଜହ୍ନୁରୀ ଭାଇ ଚିଠିଦେଇଛନ୍ତି ।" କକା ମହତାବ ଚିଠିଦେଇଛନ୍ତି । ସେ ଦିନର ସେ ଆନନ୍ଦ

ମୁହୂର୍ତ୍ତ ବୋଧହୁଏ ଜୀବନରେ ଆଉ ମିଳିବ ନାହିଁ । ଧିରେ ଧିରେ ବଡ ହେଲି । ମନ ଚାହୁଁଥାଏ କକା ମହତାବ୍ଙ୍କୁ ଥରେ ଦେଖନ୍ତି କି ? ହେଲେ କଟକ କାହିଁ କେତେ ଦୂରରେ । କେମିତି ଯିବି ଏଇ ଏନ.ସି.ହାଇସ୍କୁଲ ଯାଜପୁରରୋଡ଼ରେ ଗଢା ହେଲା ମୀନାମଣ୍ଡଳିଟିଏ, ନାଁ ବି, ତିନୋଟି ବାଛି ପଠାଇଥିଲି । ସେ ନାଆଁ ଗୁଡ଼ିକ ଭିତରୁ ଥିଲା "ବ୍ୟାସସରୋବର" "ବିରଜା", ଏମିତି ବି ତିନୋଟି । ହେଲେ ଜହୁରୀ ଭାଇ ଚିଠିଦେଲେ ଲେଖିଥିଲେ ନନ୍ଦକିଶୋର ତୁମ ମୀନାମଣ୍ଡଳୀ ନାଆଁ ରହିଲା "ଉନ୍ମେଷ" ମୀନାମଣ୍ଡଳୀ । ମୁଁ ମଧ୍ୟ ହୋଇଗଲି ଜଣେ ଆଜୀବନ ମୀନା । ମାନେ ମୀନା ବଜାରର ଆଜୀବନ ସଭ୍ୟ । ସଭ୍ୟ ହେବାର ପ୍ରମାଣପତ୍ର ଏବେବି ମୁଁ ସାଇତି ରଖିଛି । ଏଇ ମୀନାମଣ୍ଡଳୀ ଜରିଆରେ ମୋର ତ ଲେଖା ବାହାରିଲା । ଏହା ଛଡା ଏଇ ସ୍କୁଲର ଅନ୍ୟ କେତେଜଣ ଛାତ୍ରଛାତ୍ରୀଙ୍କ ଲେଖା ମଧ୍ୟ ପ୍ରକାଶ ପାଇଥିଲା । ସେଥିମଧ୍ୟରୁ କଲ୍ୟାଣୀ ସାହୁଙ୍କ ଟୁନାର ସ୍ୱପ୍ନ ଲିଲିବାଇ ଦାସଙ୍କର ମଜାଗପ ମଧ୍ୟ ଅନ୍ୟତମ । ଲେଖାତ ପ୍ରକାଶ ପାଇଲା । ହେଲେ ମୋ ଆଶା କେମିତି ପୂରଣ ହେବ । କାାକା ମହତାବଙ୍କୁ ଦେଖିବି କିପରି । ଏମିତି କିଛିବର୍ଷ ବିତିଗଲା । ପ୍ରଜାତନ୍ତ୍ରର ମୀନାବଜାର ସହ ମୋର ବନ୍ଧୁତା ମଧ୍ୟ ବଢ଼ିଚାଲିଥାଏ । ଏହା ଭିତରେ ଆଉ ଗୋଟିଏ ଚିଠିପାଇଲି । ସେହି ପ୍ରଜାତନ୍ତ୍ରରୁ ଜହୁରୀ ଭାଇ ଲେଖିଥାନ୍ତି । ଚିଠିରେ ଲେଖାଥାଏ "ଶ୍ରଦ୍ଧେୟ ନନ୍ଦକିଶୋର ତୁମେ 'ସାହସୀ ଶିକାରୀ'ବୋଲି ଗପଟିଏ ସାପ୍ତାହିକ ମୀନାବଜାରରେ ପ୍ରକାଶ ପାଇଁ ପଠାଇଥିଲ । କିନ୍ତୁ ସେ ଗପଟି ମାସିକ ମୀନାବଜାରରେ ପ୍ରକାଶ ପାଇଁ ମନୋନୀତ ହୋଇଛି ଆସନ୍ତା ମାସରେ ପ୍ରକାଶ ପାଇବ । ଉକ୍ତ ମାସଟି ସମ୍ଭବତଃ ୧୯୫୪ ମସିହାର ଅଗଷ୍ଟ ମାସ । "

ଚିଠିଟା ପାଇବା ପରେ ମନରେ ଆନନ୍ଦ କହିଲେ ନସରେ । କେଉଁଦିନ ମାସିକ ମୀନାବଜାର ଆସିବ ଆଉ ମୋ ଲେଖା ବାହାରିଛି କି ନା ଦେଖିବି । ସେତେବେଳେ ଆମ ଗାଆଁର ଘନଶ୍ୟାମ ସାହୁ ଖବର କାଗଜ ପତ୍ରପତ୍ରିକା ଆଣି ଆମକୁ ଦେଉଥାନ୍ତି । ତାଙ୍କୁ ଅନୁରୋଧ କରିଥିଲି ସେ ମଧ୍ୟ ଆଣି ମୋତେ ଯଥା ସମୟରେ ମାସିକ ମୀନାବଜାର ଦେଇଥିଲେ । ଲେଖାଟି ଦେଖିକି ମନ ଖୁସି । ବାରମ୍ବାର ଲେଖାଟି ପଢୁଥାଏ । ଯେତେ ପଢୁଥାଏ ସେତେ ଖୁସି ହେଉଥାଏ । ଛପା ଅକ୍ଷରରେ କୌଣସି ଏକ ମାସିକ ପତ୍ରିକାରେ ପ୍ରଥମ ଲେଖା ପ୍ରକାଶ ପାଇବାର ଆନନ୍ଦ ଅନୁଭବୀହିଁ ଜାଣିପାରେ ।

ଏଇ ଏନ.ସି.ହାଇସ୍କୁଲ ପ୍ରାଙ୍ଗଣରେ କୌଣସି ଏକ କାରଣ ନେଇ (ମନେପଡୁନି କାରଣ)ଡଃ ମହତାବ୍ ଆସିଲେ । ସମ୍ଭବତଃ ସେହି ଉତ୍ସବ ପାଇଁ ମୁଁ ଅଭିନୟ କରୁଥିଲି କୌଣସି ଏକ ହିନ୍ଦି ଏକାଂକିକାରେ ଶିବାଜୀ ଭୂମିକାରେ ଏବଂ ଇଂରେଜୀ ନାଟକରେ (First Gentleman) ଭୂମିକାରେ । ନିର୍ଦ୍ଦେଶକ ଥାଆନ୍ତି ସ୍ୱନାମଧନ୍ୟ ଗାଳ୍ପିକ ତଥା ଆମ ସ୍କୁଲର ସହକାରୀ ଶିକ୍ଷକ ଅଚ୍ୟୁତାନନ୍ଦ ପତି । ସେଦିନ

ଖାଲି ଶୁଣିଥିଲି ମୁଖ୍ୟ ଅତିଥି ଡଃ ମହତାବ ଆସିଥିଲେ । କିନ୍ତୁ ମୁଁ ଥିଲି ଗ୍ରୀନ୍‌ରୁମ୍‌ରେ,ପରେ ରଂଗମଂଚରେ । ଏଣୁ ଦେଖି ପାରିନଥିଲି । ମନରେ ଅବଶୋଷ ରହିଗଲା ।

ବୋଧେ ନବମ ବା ଦଶମ ଶ୍ରେଣୀ ହବ । କଟକ ଗଲି ବିଷୁବ ମିଳନକୁ । ସେଇଠି ଦେଖିଲି ମୋର ଇପ୍‌ସିତ ବ୍ୟକ୍ତିତ୍ୱ ମହତାବ ଜକାଙ୍କୁ । ଦୀର୍ଘକାୟ ସୁଷ୍ଠ ସବଳ ଗୌର ବପୁ । ନୟନ ସାର୍ଥକ ହେଲା । ବେଶୀ ଭଲ ଲାଗିଲା ଦେଖିବାକୁ ମଝିରେ ବସିଥାନ୍ତି ଏବଂ ତାଙ୍କ ଚାରିପାଖରେ ଛୋଟ ଛୋଟ ପିଲାଏ ଅଳିକରୁ ଥାନ୍ତି । ମୋ ମନ ହେଉଥାଏ ମୁଁ ବି ଯିବି ତାଙ୍କ ପାଖକୁ ହେଲେ ସାହସ ହେଲାନି । ସେଥର କେବଳ ଦୂରରୁ ଦେଖି ଫେରିଆସିଥିଲି । ମନ କହୁଥାଏ ସୁଯୋଗ ନିଶ୍ଚୟ ଆସିବ ତାଙ୍କୁ ପାଖରୁ ଦେଖିବି । ସୁଯୋଗ ଆସିଲା ବି । ୧୯୮୧ ମସିହାରେ ପ୍ରଜାତନ୍ତ୍ର ବିଷୁବ ମିଳନକୁ ଯାଇଥାଏ । ଏଥର ସୁଯୋଗ ପାଇଲି । ବିଷୁବ ମଂଡପକୁ ଯାଇ ତାଙ୍କର ଖୁବ୍ ପାଖରୁ ମୀନାବଜାର ପୁରସ୍କାର ଗ୍ରହଣ କଲି । ଏହାଥିଲା ବୋଧହୁଏ ଦ୍ୱତ୍ରିଂଶ ବିଷୁବ ମିଳନ । ଏହାପରେ ମୁଁ ଆହୁରି ଅଧିକ ଉତ୍ସାହିତ ହୋଇଛି । ପ୍ରଜାତନ୍ତ୍ର ପରିବାରର ଜଣେ ସଦସ୍ୟ ଭାବେ ମିନାବଜାର, ପ୍ରତିଭା, ସାପ୍ତାହିକୀ, ଝଙ୍କାର ଆଦିକୁ ଲେଖା ପଠାଇ ଚାଲିଛି ଏବଂ ପ୍ରତ୍ୟେକ ପତ୍ରିକାରେ ଲେଖା ପ୍ରକାଶ ପାଇ ଆସୁଛି । ହଁ ଏଇଠି ଗୋଟେ କଥା ମନକୁ ଆସୁଛି । ଏହା ଭିତରେ ମାନେ ୧୯୬୪ ରୁ ମୁଁ ଆକାଶବାଣୀର ଗୀତିକାର ହୋଇ ସାରିଥାଏ । ଏଣୁ ଭାବିଲି ଗୀତଲେଖା କେବଳ କଣ ରେଡିଓରେ ବୋଲା ହେବା ପାଇଁ, ଇଥର୍‌ର ଭାସିଯିବା ପାଇଁ । ଏଣୁ ବିଭିନ୍ନ ପତ୍ରପତ୍ରିକାକୁ ଗୀତିକବିତା ପଠାଇଲି ଏବଂ ସଂପାଦକ ମାନଙ୍କୁ ଯୁକ୍ତି ଦର୍ଶାଇଲି ଗୀତିକବିତା ମଧ୍ୟ ସାହିତ୍ୟର ଅନ୍ୟ ଏକ ବିଭାଗ । ଏହାର ମଧ୍ୟ ସାହିତ୍ୟିକ ମୂଲ୍ୟବୋଧ ଅଛି । ବହୁ ପତ୍ରପତ୍ରିକାରେ କ୍ରମଶଃ ଗୀତିକବିତା ପ୍ରକାଶ ପାଇଲା । ଏ କ୍ଷେତ୍ରରେ ସୌରଭର ସଂପାଦିକା ବୀଣା ମହାପାତ୍ର ଅଧିକ ଆଗ୍ରହ ପ୍ରକାଶ କରିଛନ୍ତି ।

ଉତ୍ସାହିତ ହୋଇ ଝଙ୍କାରକୁ ମଧ୍ୟ ଗୀତିକବିତା ପଠାଇଲି । ତିନିଚାରିଥର ପଠାଇବା ପରେ ଲେଖା ପ୍ରକାଶ ପାଇଲା ନାହିଁ । ଏଣୁ ଡଃ ମହତାବଙ୍କ ପାଖକୁ ମଧ୍ୟ ଚିଠି ଲେଖିଲି । ଗୀତିକବିତା କାହିଁକି ଝଙ୍କାରରେ ପ୍ରକାଶ ପାଉନି କାରଣ ଜାଣିବାକୁ ଚାହିଁଲି ର ଉତ୍ତରତ ପାଇଲି ନାହିଁ ଜକା ମହତାବଙ୍କ ଠାରୁ । ହେଲେ ଚିଠି ଲେଖାର ଫଳ ପାଇଲି । ହଠାତ୍ ଦିନେ ଟ୍ରେନରେ ଦେଖାହେଲେ ଝଙ୍କାର ପରିଚାଳନା ସଂପାଦକ ସରୋଜବାବୁ । ତାଙ୍କଠୁ ସାମାନ୍ୟ ସୂଚନା ପାଇଲି ଝଙ୍କାରରେ ଗୀତିକବିତା ପ୍ରକାଶ ପାଇବା ନେଇ ।

ମନେ ମନେ ଭାବିଲି ଡଃ ମହତାବ ଚିଠିର ଉତ୍ତର ସିନା ଦେଲେନି । ହେଲେ ମୋ ଯୁକ୍ତିକୁ ବୋଧେ ଗ୍ରହଣ କରିଛନ୍ତି । ଯା ହେଉ ୧୯୭୨ ମସିହାରେ ଗୀତି କବିତାଟିଏ ପ୍ରକାଶ ପାଇଲା ଝଙ୍କାରରେ । ମନେ ମନେ ସେଇ ସାରସ୍ୱତ ପ୍ରେମୀ ଯୁଗ ପୁରୁଷ ମହତାବ୍‌ଙ୍କୁ ଦୂରରୁ ପ୍ରଣାମ ଜଣାଇଲି ।

ଅବଶ୍ୟ ପରେ ପୁଣିଥରେ ୧୯୯୩ ମସିହାରେ ମୀନାବଜାର ପୁରସ୍କାର

ପାଇଲି ଶିଶୁ ସାହିତ୍ୟ ଏବଂ ଗୀତିକବିତା ପାଇଁ । କିନ୍ତୁ ଏଥର ମୋର ଦୁର୍ଭାଗ୍ୟ ଆଉ ତାଙ୍କୁ ବିଷୁବ ମଣ୍ଡପରେ ଦେଖିବାକୁ ପାଇଲି ନାହିଁ । ଏକା ମୁଁ କାହିଁକି କୌଣସି ସାରସ୍ୱତ ବନ୍ଧୁ ଆଉ ତାଙ୍କର ସେ ହସ ହସ ମୁହଁ ଦେଖିବାକୁ ପାଇଲେନି । ମଣ୍ଡପରେ ଶୋଭା ପାଉଥାଏ କେବଳ ଫଟୋଟି । ଲୋତକପ୍ଳୁତ ଆଖିନେଇ ପୁରସ୍କାର ଗ୍ରହଣ କରି ଫେରି ଆସିଲି ମୋର ବସିବା ସ୍ଥାନକୁ ।

ଆଉ ଥରର କଥା ମୁଁ A.D.W.O. post ପାଇଁ ଇଣ୍ଟରଭିଉ ଦେବାକୁ ଯାଇଥାଏ । ଦୁଇତିନିଜଣ ବିଶିଷ୍ଟ ବ୍ୟକ୍ତି ଇଣ୍ଟରଭିଉ କରୁଥାନ୍ତି ଘରୋଇ ଓ ଲୋକ ସଂପର୍କ ବିଭାଗ ତରଫରୁ । ଜଣେ ମୋତେ ମହତାବଙ୍କ ଉପରେ ପ୍ରଶ୍ନଟିଏ ପଚାରିଲେ ମୁଁ କହିଥିଲି ସେ ଜଣେ ଏମ୍.ପି. । ପ୍ରଶ୍ନକର୍ତ୍ତା ହସିଦେଇ କହିଲେ ସେକଣ କେବଳ ଜଣେ ଏମ୍.ପି. ମୁଁ ଭୟ ପାଇଗଲି । ପରେ ଅନୁଭବ କଲି ରାଜନୈତିକ ପରିଚୟ ଅପେକ୍ଷା ତାଙ୍କର ସାହିତ୍ୟିକ ପରିଚୟ ଐତିହାସିକ ଭାବ ପରିଚୟ ବୋଧେ ଅଧିକ ଗୁରୁତ୍ୱପୂର୍ଣ୍ଣ । ଓଡିଶାର ଗଡଜାତ ମିଶ୍ରଣ ଠୁ ଆରମ୍ଭ କରି ବମ୍ବେର ଗଭର୍ଣ୍ଣର ବା ଓଡିଶାର ପ୍ରଧାନମନ୍ତ୍ରୀ ଭାବେ ତାଙ୍କର ରାଜନୈତିକ ଜୀବନ ଯେତିକି ଦୀର୍ଘ । ତାଠାରୁ ଦୀର୍ଘତର ହେଉଛି ତାଙ୍କର ସାରସ୍ୱତ ସାଧନା ଆଉ ଓଡିଶାର କଳା ସଂସ୍କୃତି, କ୍ରୀଡା ଇତିହାସ ସୃଜନୀ । ବାରବାଟି ଷ୍ଟାଡିୟମ କ୍ଲବ୍, କଳିଙ୍ଗ ଷ୍ଟୁଡିଓ କ୍ଲବ କିମ୍ବା ଓଡିଶା ଇତିହାସ କ୍ଲବ ସବୁଥିରେ ତାଙ୍କର କାଉଁରି ସ୍ପର୍ଶ ରହିଛି ।

ଏମିତି ଏକ ଯଶସ୍ୱୀ ଜୀବନର ଅବସାନ ହେଲା । ସେ ଚାଲିଗଲେ ଆରପାରିକି । ଆମକୁ ଶୋକ ସାଗରରେ ଭସାଇଦେଇଗଲେ । ଡ଼ ମହତାବ ଜନ୍ମସ୍ଥାନ ଆଗରପଡା ସହ ଆମ କୋରେଇର ପାରିବାରିକ ସଂପର୍କ ରହିଛି । ଏଣୁ ଆମ ପରିବାର ଭିତରୁ ଜଣେ ଚାଲିଗଲେ । ସେ ଅଭାବ ପୂରଣ ହେବାର ନୁହେଁ । ସେତ କେବଳ ଆମ ପରିବାରର ନୁହଁ । ସାରା ଓଡିଶାର ଏପରିକି ସାରା ଭାରତର । ତାଙ୍କର 'ପ୍ରତିଭା', 'ଟାଉଟର', ଆଉ 'ଗାଆଁ ମଜଲିସ୍' ସବୁଦିନେ ସବୁବେଳେ ତାଙ୍କୁ ମନେ ପକାଇ ଦେଉଥିବ ।

ଗୁରୁ ଦ୍ରୋଣଙ୍କ ଠାରୁ ଏକଲବ୍ୟ ସିଧାସଳଖ ଅସ୍ତ୍ର ବିଦ୍ୟା ଶିକ୍ଷାଲାଭ କରିନଥିଲେ । ଶବର ସନ୍ତାନ ଏକଲବ୍ୟ ମାଟି ପିତୁଳା ଭାବେ ଦ୍ରୋଣଙ୍କୁ ପୂଜା କରି ବିଶ୍ୱ ପ୍ରସିଦ୍ଧ ଯୋଦ୍ଧା ଭାବେ ଅର୍ଜୁନଙ୍କୁ ମଧ ପରାସ୍ତ କରିଥିଲେ । ସେହିପରି ଅସଂଖ୍ୟ ମୀନା ମୀନି ରୂପକ ଏକଲବ୍ୟ ଗଣ ସେଇ ଦ୍ରୋଣ ସ୍ୱରୂପ କକା ମହତାବଙ୍କ ଠାରୁ ସାରସ୍ୱତ ମନ୍ତ୍ର ଶିକ୍ଷା ବଳରେ ବଳୀୟାନ ।

ସେ ଯେଉଁଠି ଥାଆନ୍ତୁ । ସ୍ୱର୍ଗରେ କମଳାପତିଙ୍କ ପାଖରେ ଅବା ମର୍ତ୍ତ୍ୟରେ ଜଗତ ନାଥ ଜଗନ୍ନାଥ ପାଖରେ ତାଙ୍କର ସତର୍କ ଦୃଷ୍ଟି ରହିଥିବ ଆମ ଲେଖନୀ ଉପରେ । ତାଙ୍କର ଦୂତ ପ୍ରଜାତନ୍ତ୍ର, ପ୍ରତିଭା, ଝଙ୍କାର ମୀନାବଜାର ଆମ ଗହଣରେ ରହି ଆମକୁ ବାଟ କଢେଇ ନେଉଥିବେ । ତାଙ୍କ ଗାଆଁ ମଜଲିସ୍‌ର ମନ୍ତ୍ର ଏବେବି ଝଙ୍କୃତ ହେଉଛି ଆମ କର୍ଣ୍ଣ ଗହ୍ୱରରେ । ହେ ଯୁଗ ପୁରୁଷ ! ତୁମକୁ ବାରବାର ପ୍ରଣାମ ।

ପ୍ରସ୍ତୁତି-ପ୍ରଜାତନ୍ତ୍ର-୧୪-୩-୧୯୯୭

# ମୁଁ ଆତ୍ମଜୀବନୀ/ଆତ୍ମକାହାଣୀ
# ଲେଖିବି କାହିଁକି

ମୁଁ ଅବିଭକ୍ତ କଟକ ଜିଲ୍ଲାର (ବର୍ତ୍ତମାନ ଯାଜପୁର ଜିଲ୍ଲା) ଏକ ଅଖ୍ୟାତ ଗାଆଁ ଶଂଖପାରୀ (କୋରେଇ ଥାନା)ରେ ଜନ୍ମଗ୍ରହଣ କରିଛି । ଗତ ୩୧।୫।୨୦୦୦ ରୁ ଗୋଲାମଗିରିରୁ ଅବ୍ୟାହତି ପାଇ ସ୍ୱାଧୀନ ଭାବରେ ଟିକେ ବୁଲିପାରୁଛି, ଶୋଇପାରୁଛି । ସକାଳୁ ପ୍ରାତଃଭ୍ରମଣ କରୁଛି ତ, ସନ୍ଧ୍ୟା ଆସର ଟି.ଭି. ସମ୍ମୁଖରେ ବା ରେଡିଓକୁ କାନପାଖରେ ଥୋଇ କଟେଇ ପାରୁଛି ।

ଏବେ ମୋର ବଂଧୁ କହୁଛନ୍ତି, ଚିଠି ଲେଖୁଛନ୍ତି-"ନନ୍ଦ ବାବୁ ଏବେତ ଚାକିରୀରୁ ଅବସର ନେଲ, ନିଜର ଆତ୍ମଜୀବନୀ ଲେଖ । ଆତ୍ମଜୀବନୀ ବା ଆତ୍ମକାହାଣୀ ଲେଖିବାକୁ ଏଇଟା ଉପଯୁକ୍ତ ସମୟ ।" ସମୟଟା ଉପଯୁକ୍ତ ହୋଇପାରେ ହେଲେ ପ୍ରଶ୍ନ ଉଠୁଛି ଲେଖିବା କାହିଁକି ? ମୋ ଆତ୍ମଜୀବନୀକୁ ପଢିବ କିଏ ? ପଢିବ ବା କାହିଁକି ?

ମୁଁ ତ ଜଣେ ଶିକ୍ଷକ ଭାବେ ଦୀର୍ଘ ୪୦/୪୨ବର୍ଷ କାଳ କାଟିଦେଲି । କେତେଜଣ ବରପୁତ୍ରଙ୍କ ଜୀବନୀ ମୁଁ ପଢିଛି । ପରୀକ୍ଷାରେ ପାଶ୍ କରିବା ପାଇଁ ଯେଉଁ କେତେଜଣ ଐତିହାସିକ ବ୍ୟକ୍ତି ବାବର, ଆକବର ବା ରାଜନୀତିକ ବ୍ୟକ୍ତି ମହାତ୍ମାଗାନ୍ଧୀ, ଜବାହରଲାଲ ନେହେରୁ କିମ୍ବା ମହାପୁରୁଷ ଭାବେ ମାନୁଥିବା ବୁଦ୍ଧ, ଯୀଶୁ ମହମ୍ମଦଙ୍କ ବିଷୟରେ ଦି'ଚାରିପଦ ଲେଖା ମନେରଖି ପରୀକ୍ଷାରେ ଲେଖିଦେଇ ଆସିଲେ କଥା ସରିଲା । ଏହା ଭିତରେ ବିଭିନ୍ନ ପ୍ରତିଷ୍ଠାନ ଓଡିଶାର ବା ଭାରତର ବହୁ ବଡ ବଡ ବ୍ୟକ୍ତିଙ୍କ ସମ୍ବନ୍ଧରେ ପୁସ୍ତକ ବାହାର କଲେଣି । ଓଡିଶା ରାଜ୍ୟ ଶିକ୍ଷାସାଧନ କେନ୍ଦ୍ର ତ ଅନେକ ଗୁଡିଏ ଜୀବନୀ ବାହାର କଲେଣି, ମୁଁ ତ କାହିଁ ଖଣ୍ଡିଏ ପଢୁନାହିଁ କିମ୍ବା ମୋ ଛୁଆଙ୍କ ପାଇଁ ଖଣ୍ଡିଏ ମଧ ଆଣୁ ନାହିଁ । ଏଣୁ ମୁଁ କେଉଁ ମଣିଷରେ ଗୋଟେ ଲେଖା ଯେ ମୋ ଆତ୍ମଜୀବନୀ ଲେଖିବି ?

ମୁଁ ପ୍ରଥମେ ଶିକ୍ଷକ ଭାବେ ମୋର କାର୍ଯ୍ୟ ଆରମ୍ଭ କଲି । ସେଇ ଶିକ୍ଷା ବିଭାଗରେ ଥାଇ ସହକାରୀ ଶିକ୍ଷକ, ସବ୍ ଇନ୍ସପେକ୍ଟର ଅଫ୍ ସ୍କୁଲ୍ସ, ଅଣ ଆନୁଷ୍ଠାନିକ ଶିକ୍ଷାର କନିଷ୍ଠ ସଂଯୋଜକ, ଡେପୁଟି ଇନ୍ସପେକ୍ଟର, ସିନିଅର ଟିଚ୍ର ଏଜୁକେଟର, ପ୍ରଧାନ ଶିକ୍ଷକ ଏବଂ ଭାରପ୍ରାପ୍ତ ଡି.ଆଇ. ଅଫ୍ ସ୍କୁଲ୍ସ ଭାବେ କାମ କରି ଅବସର ନେଲି । ଏହି ସମୟରେ ଯେଉଁ ଅଭିଜ୍ଞତା ଗୁଡିକୁ ଅର୍ଜିଛି ତାହାର ସାରାଂଶ ହେଲା କିଛି ଖଟା କିଛି ମିଠା । ଏଥିରେ ଆଜିକାଲିକା "ଧିରେ ଧିରେ ଚାଲ ଗୋରି ଧିରେ ଧିରେ ଚାଲ"ର ମସଲା ନାହିଁ କିମ୍ବା ଟିଉସନ ମାଷ୍ଟର ପଢଉ ପଢଉ ଛାତ୍ରୀକୁ ଉଡେଇ

ନେଇଯିବାର ଚମତ୍କାରିତା ନାହିଁ । ଏଣୁ ମୋର ନିଛକ ଶୃଙ୍ଖଳା ଚରିତ୍ର ଗଠନ ସଂବନ୍ଧୀୟ କେତେଟା ପୁସ୍ତକର ପ୍ରବନ୍ଧ ବା ଆଲୋଚନା ପରି ମୋ ଶିକ୍ଷକ ଜୀବନର ଅଭିଜ୍ଞତାକୁ କିଏ କାହିଁକି ପଢ଼ିବ । ଏହାଛଡ଼ା ଦୁର୍ନୀତି ଗ୍ରସ୍ତ ହୋଇ ସସ୍‌ପେଣ୍ଡ ହେବା ପୁଣି ସରକାର ସଂଗେ ଲଢ଼ି ଜିତାପଟ ନେଇ ସମସ୍ତ ପ୍ରାପ୍ୟ କାନମୋଡ଼ି ଆଦାୟ କରିବାର ଉଦାହରଣ ମଧ୍ୟ ନାହିଁ । ଏଣୁ ପାଠକୀୟ ଉତ୍କଣ୍ଠା ଆସିବ କାହିଁକି ? ଆହୁରି ଟିକେ ରସରସିଆ ଢଙ୍ଗରେ କହିଲେ ହିଟଲରଙ୍କ ପରି ସମଲିଙ୍ଗୀ ପ୍ରବଣତା କିମ୍ବା ରାଷ୍ଟ୍ରପତି କ୍ଲିଣ୍ଟନଙ୍କ ପ୍ରେମ ଆଖ୍ୟାନ ପରି କିଛି ମଜେଦାର ଘଟଣା ପ୍ରବାହ ଥିଲେ ସିନା ଆତ୍ମଜୀବନୀଟା ଲୋକେ ମନ ଦେଇ ପଢ଼ିବେ । ଆଉ ତୁଚ୍ଛା ଛେଳି ଦୁଧପିଆ ମହାତ୍ମାଗାନ୍ଧୀ ଙ୍କ ମୋ ଜୀବନରେ ସତ୍ୟର ପରୀକ୍ଷା ହେଉ ଅବା ଭେଣ୍ଡି ସିଝା ଖାଇ ପ୍ରବଳ ଶୀତରେ ତାସକେଣ୍ଟରେ ମରିଥିବା ଲାଲବାହାଦୁର ଶାସ୍ତ୍ରୀଙ୍କ ଜୀବନୀ ଭଳି ଶୃଙ୍ଖଳା କଥାକୁ କିଏ କାହିଁକି ପଢ଼ିବ କହିଲେ ?

ହଁ ମୋ ଜୀବନର ଆଉ ଗୋଟିଏ ଦିଗ ହେଲା- ମୁଁ ଜଣେ ଆକାଶବାଣୀର ଗୀତିକାର, ନାଟ୍ୟକାର ବା ନାଟ୍ୟଶିଳ୍ପୀ ! ଇଯେ ଗୋଟେ କଣ ବଡକଥା ଯେ ! ଆକାଶବାଣୀ, ଦୂରଦର୍ଶନ, ଚଳଚିତ୍ରରେ ଗଣ୍ଡା ଗଣ୍ଡା ଗୀତିକାର ନାଟ୍ୟକାର ଅଛନ୍ତି । କିଏ ସେମାନଙ୍କୁ ପଚାରୁଛି ଯେ । ଯେଉଁ କେତେଜଣ ଟିକେ ପ୍ରସିଦ୍ଧିଲାଭ କରୁଛନ୍ତି ସେମାନଙ୍କ ପ୍ରସିଦ୍ଧି ପଛରେ ହୁଏତ ଥିବ କିଛି ରାଜନୈତିକ ପୃଷ୍ଠପୋଷକତା କିମ୍ବା କିଛି ବ୍ୟକ୍ତିଗତ ଲଜ୍ଜାହୀନ ତୋଷାମୋଦକାରୀତା । ବିଭିନ୍ନ ମାଧ୍ୟମରେ ଆତ୍ମ ପ୍ରଚାର ପାଇଁ ଅତୀବ ବ୍ୟାକୁଳତା କିମ୍ବା ଆତ୍ମ ବିଜ୍ଞପ୍ତିର ବାଚାଳତା(ଅବଶ୍ୟ ପ୍ରତିଭାକୁ ସଂପୂର୍ଣ୍ଣ ଆଡେଇ ହବନି) ।

ମୁଁ ଯେତେବେଳେ ଗୀତ ଲେଖା ଆରମ୍ଭ କଲି, ମୋତେ କେହି ଉତ୍ସାହିତ କଲେ ନାହିଁ ବରଂ ହତୋତ୍ସାହ କଲେ । ଯେତେବେଳେ ସ୍ୱୀକୃତି ପ୍ରାପ୍ତ ଗୀତିକାର ହେଲି ସେତେବେଳେ ବନ୍ଧୁଏ କହିଲେ ଗୁଆଘିଅ ଉତ୍କୋଚ ଦେଇ କିମ୍ବା ଭଲ ଚାଉଳ ଯୋଗେଇ ଦେଇ ଗୀତିକାର ହେଲି ବା ନାଟ୍ୟକାର ହେଲି । କହିଲେ ସେହି ବଂଧୁ ମାନଂକୁ ମୋ ଆତ୍ମଜୀବନୀ ଭିତରେ ଚିହ୍ନାଇ ଦେଇ ମୁଁ କି ଲାଭ ପାଇବି ? ସେହିଭଳି ମୋ ପୋଖରୁ ଯେଉଁମାନେ ଗୀତ ଲେଖା ବା ନାଟକ ଲେଖା ଶିଖିଲେ ସେଇମାନେ ପରବର୍ତ୍ତୀ ପର୍ଯ୍ୟାୟରେ ନିଜର ପ୍ରତିଷ୍ଠା ପାଇଁ ମୋ ବିରୁଦ୍ଧରେ କୁତ୍ସା ରଚନା କଲେ କିମ୍ବା କୁର୍ସି ନ୍ୟାୟରେ ମୋତେ ପାହାଚ କରି ଉପରକୁ ଉଠିଲେ । ଏଭଳି ଘଟଣା ତ ଜୀବନରେ ଅନେକ ଘଟିଛି । ମୋ ପାଇଁ କେଉଁ ନୂଆ କଥା ଯେ । ଏଗୁଡ଼ାକୁ କଣ ଆତ୍ମଜୀବନୀରେ ଲେଖିବି ?

କିଛି ବଂଧୁ କହନ୍ତି-" ଆତ୍ମଜୀବନୀ ଲେଖିଲେ ତୋ ପରିବାର ବିଷୟରେ ଲୋକେତ ଜାଣିପାରିବେ ।" କିହୋ ମୋ କଥାତ ଲୋକେ ଜାଣିବାକୁ ଆଗ୍ରହ ନାହିଁ ।

ମୋ ପରିବାର ପାଇଁ ଏତେ ବ୍ୟଗ୍ରତା ଦେଖାଇବେ କାହିଁକି ? କେତେଜଣ ଗୌତମ ବୁଦ୍ଧଙ୍କ ପରିବାର ବା କପିଳଦେବଙ୍କ ପରିବାର ବା ମାର୍ଟିନା ହିଙ୍ଗିସ୍‌ଙ୍କ ପରିବାର ବା ଅମିତାଭ ବଚନଙ୍କ ପରିବାର କଥା ଜାଣିବାକୁ ବ୍ୟସ୍ତ ହୋଇଛନ୍ତି ।

ଫକୀରମୋହନଙ୍କ ସ୍ତ୍ରୀଙ୍କ ନାଁ କେତେଜଣ ଜାଣନ୍ତି ? ଗୋପିନାଥ ମହାନ୍ତି ଙ୍କ ପୁଅ ଝିଅ କେତୋଟି କିଏ କହିପାରିବ ? ଏଣୁ ତୁମ ପରିବାର ଭିତରେ କେହି ଜଣେ ଗାନ୍ଧୀ ବା ଗଡ୍‌ସେ ହେଲେ ବା କରିସ୍ମା କାପୁର କିମ୍ବା ହ୍ରିତିକ୍ ରୋଷନ ହେଲେ ଲୋକେତ ଆପେ ଆପେ ଜାଣିବେ ।

ହେଲା, ଏବେ ମୋ ପରିବାର ଭିତରେ ସ୍ତ୍ରୀର ଓ ମୋ ଭିତରେ କିଛିଟା ମନୋମାଳିନ୍ୟ ହୋଇଥିବ । ହୁଏତ ମୋ ପୁଅ ଝିଅ ଭିତରୁ କିଏ ନିଜ ଇଚ୍ଛାରେ ସାମାଜିକ ସ୍ୱୀକୃତି ଥାଉ ବା ନଥାଉ ନିଜ ନିଜ ବାଟ ବାଛିନେଇଥିବେ । ସେ କଥାଗୁଡା ପ୍ରତି ବାହାର ଲୋକେ ଜାଣିବା ପାଇଁ ଆଗ୍ରହ ପ୍ରକାଶ କରିବେ କାହିଁକି ?

ଫକୀରମୋହନ ତାଙ୍କ ପାରିବାରିକ ଘଟଣାକୁ ନେଇ ପେଟେଣ୍ଟ ମେଡିସିନ ଭଳି ଗଳ୍ପ ହୁଏତ ଲେଖିଯାଇଛନ୍ତି । କିନ୍ତୁ ସେସବୁ ଘଟଣା ପାଇଁ କେତେଜଣ ଆଗ୍ରହୀ । ଆଗ୍ରହୀ ସେଇମାନେ ଯେଉଁମାନେ ପି.ଏଚ୍.ଡି ପାଇବେକି ଡି.ଲିଟ୍ ପାଇବେ । ସେଇମାନେ ହିଁ ଆତ୍ମଜୀବନୀ ପଢନ୍ତି, ଗବେଷଣା କରନ୍ତି । ହେଲେ ସାଧାରଣ ଲୋକଙ୍କର କି ସ୍ୱାର୍ଥ ସାଧନ ହେବ !! ଏକଥା ବି କେତେକ ଯୁକ୍ତି ଛଳରେ କହିଥାନ୍ତି । ଫକୀର ମୋହନ କୁହ, କି ଭଞ୍ଜ କୁହ ଅବା ବୈଷ୍ଣବ ପାଣି କୁହ, ଏମାନଙ୍କୁ ଆମେ ଯେତେ ନଜାଣୁ, ଏମାନଙ୍କୁ ଜଣାଇବା ପାଇଁ ଆୟୋଜନ କରୁଥିବା ବ୍ୟକ୍ତି ବା ଅନୁଷ୍ଠାନକୁ ଜାଣିବାର ଆଗ୍ରହ ବୃଦ୍ଧିପାଏ । ଏହାଛଡା ସେ ବଡ ବଡ ବ୍ୟକ୍ତି ଙ୍କ ର ଦାୟାଦ ଭାବେ ଯଦି ବଡ ବଡ ପଦପଦବୀରେ ଥାଆନ୍ତି ତେବେ ଅନୁଷ୍ଠାନ ମାନେ ଜୟନ୍ତୀ ପାଳନ ବା ଶ୍ରାଦ୍ଧ ପାଳନ ମୂର୍ତ୍ତି ସ୍ଥାପନ ବା ରାସ୍ତା ଘାଟର ନାମକରଣ ପାଇଁ ଉଦ୍ୟମ ମାନ ଜାରି ରଖନ୍ତି ।

ତେବେ ଗୋଟେ ଖବର କାଗଜରୁ ପଢିବାକୁ ପାଇଲି - ଶାନ୍ତି କାନନରେ ଫକୀର ମୋହନଙ୍କ ସ୍ମୃତି ରକ୍ଷା ପାଇଁ ବିଶେଷ କାହାର ଆଗ୍ରହ ନାହିଁ । ଏପରିକି ସେମାନଙ୍କର ସୁଯୋଗ୍ୟ ଦାୟାଦ ମାନଙ୍କର ମଧ୍ୟ ଏଥିପ୍ରତି ନଜର ନାହିଁ ।

ଏଣୁ ମୋ ମନଟା ପାଣିଚିଆ ମାରିଗଲା । ଭାବିଥିଲି ଅମିତାଭ ବଚନଙ୍କ ମହମ ମୂର୍ତ୍ତି ତିଆରି ହେଲା ଭଳି କିମ୍ବା ଅମିତାଭଜୀଙ୍କୁ ପୂଜା କରିବା ଭଳି ମନ୍ଦିର ଟିଏ ହାତରୁ ପଇସା ଖର୍ଚ୍ଚ କରି ଅନ୍ୟ ଦ୍ୱାରା ଗଢେଇ ନେବିକି ? ଫେର୍ ଭାବିଲି ମୋ ମୂର୍ତ୍ତିକୁ କିଏ କାହିଁକି ଅନେଇବ ଯେ । ମୁଁତ ଦେଖୁଛି ଗୋପବଂଧୁ, ମହାତ୍ମାଗାନ୍ଧୀ ଙ୍କ ମୂର୍ତ୍ତି ଉପରେ କେଉଁଠି କେଉଁଠି କୁଆ ମଳତ୍ୟାଗ କରୁଛି । ରବି ଠାକୁରଙ୍କ ପ୍ରତିମୂର୍ତ୍ତିରୁ ନିଶ ଦାଢୀ ଉପୁଡା ହୋଇଛି ତ କେଉଁଠି ମନ୍ଦିର ଭିତରୁ ବଡ ବଡ ମୂର୍ତ୍ତିକୁ ଚୋରି କରି

ନିଆଯାଉଛି । ଏଣୁ ଅଯଥା ପଇସା ଖର୍ଚ୍ଚ କରି ମନ୍ଦିର ବା ମୂର୍ତ୍ତି ତିଆରି କରାଇ ନିଜର ନାଆଁଟାକୁ ସ୍ମରଣ କରାଇବାର ଅପଚେଷ୍ଟା ଆଦୌ ସ୍ପୃହଣୀୟ ନୁହେଁ । ବରଂ ସେଇ ପଇସାରେ ଯାବତ୍ ଜୀବନ ସୁଖୀ ଭବେତ୍ ପନ୍ଥାରେ ଚାଲିବା ଦରକାର ।

ଧରାଯାଉ ମୁଁ ଆତ୍ମଜୀବନୀଟା ଛାପି ଦେବି, କେତେକ ବି ଛାପୁଛନ୍ତି । କିଏ ନିଜ ପାଖରେ ଥିବା କଳା ଟଙ୍କାକୁ ଧଳା କରିବା ପାଇଁ ତ କେତେକ ଜି.ପି.ଏଫ୍ ରୁ ଟଙ୍କା ଉଠାଇ ଗୋଟେ ଝୁଙ୍କରେ ଛାପୁଛନ୍ତି । ଛାପିବା ପାଇଁ ପ୍ରକାଶକ ଟିଏ ଯୋଗାଡ କରିବାକୁ ନାକେଦମ ହୋଇଛନ୍ତି । ପ୍ରକାଶ ପାଇସାରିଲେ ରାଜା ରାମମୋହନ ଫାଉଣ୍ଡେସନ ଯୋଜନାରେ କିଭଳି ୩ଶହ କପି ବିକ୍ରି ହେବ ସେଥିପାଇଁ ଲବି କରୁଛନ୍ତି । ହେଲେ ବହିଗୁଡିକ ସିନା ସୁନ୍ଦର ଭାବେ ଆଲମାରୀ ଥାକରେ ଅବା ଡ୍ରଇଂ ରୁମରେ ସଜା ହୋଇ ରଖା ଯାଇଛି । ପଢୁଛି କିଏ ? ଏଣୁ କାହିଁକି ଆତ୍ମଜୀବନୀ ଲେଖିବା ଯେ !

ଟ୍ରେନରେ ଯାଉ ଯାଉ ସମୟ କାଟିବା ପାଇଁ ଖବର କାଗଜ ଖଣ୍ଡେକି ମାଗେଜିନ ଖଣ୍ଡେ କିଣି ଆଖି ପକାଉ ପକାଉ ଜଣେ କିଏ ହାତରୁ ଛଡେଇ ନେବାର ଅଭିଜ୍ଞତା ମୋର ଅଛି । ଆମ ଅଭିଭାବକେ ପିଲାଙ୍କ ପାଇଁ ବରା, ପକୁଡି ଠାରୁ ଆରମ୍ଭ କରି ଚକୋଲେଟ୍ ପ୍ୟାକେଟ କିଣିପାରିବେ । ଜନ୍ମଦିନରେ ଫାଣ୍ଟାମ କମିକ ଶହେଟଙ୍କା ଦାମ ଦେଇ କିଣିପାରିବେ, କିନ୍ତୁ ଆମ ଜାତିର ବରପୁତ୍ର ମାନଙ୍କ ଜୀବନ ସମ୍ବଳିତ ପୁସ୍ତକ ଖଣ୍ଡେ ନେବେ ନାହିଁ । ତେଣୁ ଆମେ ଛାର ଛିକର ଲେଖକ ଜଣେ ବା ଶିକ୍ଷକ ଜଣେ ଆତ୍ମଜୀବନୀ ଲେଖି ଉପହାସିତ ହେବା କାହିଁକି ? ଏହା ଛଡା ଆମ ଆଗରେ ଅଧ୍ୟାପକ ପଦ ନାହିଁ ପଛରେ ଓ.ଏସ୍. ଆଇ.ଏସ୍ ଅଥବା ପି.ଏଚ୍.ଡି କି ଡି.ଲିଟ୍ ନାହିଁ । ସେସବୁ ଅଳଙ୍କାର ନଥିଲେ ଆତ୍ମଜୀବନୀ ଯୋଶାଟି କ'ଣ ସୁନ୍ଦରୀ ସୁନ୍ଦରୀ' ଲାଗିବ ! ବରଂ ଜନେ ହସିବେ ଏହି ତହୁଁ ଫଳ ପରି ହେବ ।

ବଡ ବଡ ଅଧ୍ୟାପକଙ୍କ ଛାତ୍ରଛାତ୍ରୀ ବି ବଡ ବଡ । ବଡ ବଡ ନେତା ଆଉ ମନ୍ତ୍ରୀଙ୍କର ଚଷି ଚାମଣ୍ଡୀ ଚାମଚା ମାନେବି ବଡ ବଡ । ସେମାନେ ଆତ୍ମଜୀବନୀ ଛପା ହେଲେ ତାର ପ୍ରଚାର ଓ ପ୍ରସାରରେ ବି ସାହାଯ୍ୟ କରିପାରିବେ । କିଛି ନହେଲେ ମୃତ୍ୟୁପରେ କେଉଁ ସାହିତ୍ୟ ଅନୁଷ୍ଠାନର କାନ୍ଥରେ ତୈଳଚିତ୍ରଟିଏ ଟଙ୍ଗାଇବାର ବ୍ୟବସ୍ଥା କରିପାରିବେ କିମ୍ବା ଅନୁଷ୍ଠାନ ଦ୍ୱାରା ଜୟନ୍ତୀ ବା ଶ୍ରାଦ୍ଧ ଦିବସ ପାଳନ ର ବ୍ୟବସ୍ଥା କରିପାରିବେ । ହେଲେ ମୋର ଛାତ୍ର ଛାତ୍ରୀ ଭିତରୁ ଅନେକ ଗୁରୁ ଛାତ୍ରୀ । ଅଥବା ଶିକ୍ଷକ ଶିକ୍ଷୟିତ୍ରୀ । ଏମାନେ ତ ସର୍ବଦା ନିଜର ସମସ୍ୟା ସମାଧାନ ନେଇ ଟ୍ରେଡ ୟୁନିୟନ ମନୋଭାବରେ କାମ କରନ୍ତି । ସେଭଳି ଅଧମ ଗୁରୁଙ୍କ ପାଇଁ କିଛି କରିବାର ଅବକାଶ ନାହିଁ ?

ଏଣୁ ସବୁ ଦିଗରୁ ନିରାଶ କେଇ ହୁଏନି । ଏବେ କେତେକ ମୋ ସଂଗେ

କଥା ନକହି ଆଡେଇ ଚାଲିଯାଉଛନ୍ତି । କାଳେ ମୁଁ ତାଙ୍କୁ ଏହି ପତ୍ରିକାର ଗ୍ରାହକ ହେବାକୁ କହିବି ।

ତେଣୁ ଅନେକ ଅକୁହା କଥା ଆତ୍ମଜୀବନୀରେ କହି ଅନ୍ୟମାନଙ୍କୁ ଦୁଃଖ ଦେବାର ଅଭିପ୍ରାୟ ନାହିଁ । ଆରେ ଭୁଲିଗଲି ! ସେ ଲୋକେ ଜାଣିବେ କିପରି ? ମୋ ଆତ୍ମଜୀବନୀ ଓ ମୋ ସଂପାଦିତ ପତ୍ରିକାକୁ ମଧ୍ୟ ଘରଲୋକେ ତ ସମୟ ଦେଇପାରିବେନି, ଅନ୍ୟଙ୍କ କଥା ଛାଡ । ଏଣୁ ମନକଥା ମନରେ ନେଇ ଯମପୁରୀ ଆଡେ ବୁଲିଆସିବା ଭଲ । ନା' କଣ କହୁଛନ୍ତି - ଚିତ୍ରଗୁପ୍ତ ତ' ସବୁକାଳେ ଗୋଟି ଗୋଟି ଟିପି ରଖନ୍ତି । ଆମେ ଅଧିକା କ'ଣ ଗୋଟେ ଲେଖିବା ଯେ !!

ହଁ ଚିତ୍ରଗୁପ୍ତ ସବୁ ଟିପୁଥିବା କଥା କହିବାରୁ ଆଉ କିଛି କଥା ମନେପଡିଗଲା । କେତେଟା ସାହିତ୍ୟ ଓ ସାଂସ୍କୃତିକ ସଂଗଠନ ସହ ମୋର ଅବଶ୍ୟ ଯୋଗଦାନ ରହିଛି । କିନ୍ତୁ ସେ ସଂଗଠନରେ ମୋର କିଛି ସାଂଗଠନିକ ଭୂମିକା ଥିବା ପରି ମନେତ ହୁଏନା । କେବଳ "ତୁ ମତେ ଟେକିଲେ ମୁଁ ତତେ ଟେକିବି "ଏଇ କଥାଟା ପ୍ରାୟ ପ୍ରତ୍ୟେକ ଅନୁଷ୍ଠାନ ଆଉ ସଂଗଠନରେ ଦେଖିବାକୁ ମିଳୁଛି । ଆଉ ମୁଁ ଯେ ସେ ଟେକାଟେକି କଥାଟାକୁ ନାକ ଟେକି ଆସିଛି । ଏହି ନାକଟେକା କଥା ଗୁଡାକ ଆତ୍ମଜୀବନୀରେ ସ୍ଥାନ ଦେଲେ ଅନ୍ୟମାନେ ବି ନାକଟେକିବେ ।

ଶେଷରେ ପୁରସ୍କାର ଆଉ ସମ୍ମାନ ପ୍ରାପ୍ତି ବିଷୟରେ ଦି'ପଦ କହିଲେ ଭଲ ହେବ । ପୁରସ୍କାର କୁହ କି ସମ୍ମାନ ପ୍ରାପ୍ତି କୁହ, ଏଥିରେ ପୁଣି ଛୋଟ ବଡ ଅଛି । ଛୋଟକାଟିଆ ପୁରସ୍କାର ଆଉ ସମ୍ମାନ ପାଇବାକୁ ବଡ ବଡ ପୁରସ୍କାର ଆଉ ସମ୍ମାନ ପାଇବାର ଲୋକେ କେମିତି ଗୋଟେ ନିହାତି ହାଲକା ଭାବେ ନେଇଥାନ୍ତି । ଅଥଚ ସେଇ ବଡ ବଡିଆ ସମ୍ମାନ ବି କାଳେ ଖୁବ୍ ବଡ ବଡ ଲବି ଜରିଆରେ ମିଳିଥାଏ । ସେ କଥା ଗୁଡାକୁ ଫେଣେଇ ଫେଣେଇ ଆତ୍ମକାହାଣୀରେ ଲେଖିଲେ ସମସ୍ତଙ୍କର ଚକ୍ଷୁଶୀଳ ସିନା ହେବା । ପୁଣି ବେସରକାରୀ ପୁରସ୍କାର ଆଉ ସମ୍ମାନ ପ୍ରାପ୍ତି ଅପେକ୍ଷା ସରକାରୀ ସ୍ତରୀୟ ସମ୍ମାନ ବା ପୁରସ୍କାରର ମର୍ଯ୍ୟାଦା କାଳେ ବେଶୀ । ଏଥିପାଇଁ ଅବଶ୍ୟ ରାଜନୈତିକ ଆଶୀର୍ବାଦଟା ନିହାତି ରହିବା କଥା ବୋଲି ଅନେକ କହିଛନ୍ତି ।

ଏଣୁ ମୁଁ ଯଦି କହିବି ରାଜନୀତିବାଲା ଙ୍କୁ ତୋଷାମୋଦ କରି କିଛି ପୁରସ୍କାର ଆପଣେଇ ନେବାଟା ଖରାପ, ତାହାହେଲେ ଯେଉଁମାନେ ଆତ୍ମକାହାଣୀକୁ ସମୀକ୍ଷା କରି କିଛି ଗୋଟେ ନିର୍ଯ୍ୟାସ ବାହାର କରିବାକୁ ଚାହାଁନ୍ତି ସେମାନେ ତିଳକୁ ତାଳ କରିବେ ସିନା । କାରଣ ସାହିତ୍ୟ ଜଗତର ବଡପଣ୍ଡା ମାନେ ବଡ ରାଜନୀତି ଭକ୍ତ ।

ସାହିତ୍ୟଠୁଁ ରାଜନୀତି ଅଲଗା ରଖିବାକୁ ଯେତେ ଚିଲେଇଲେ ବି ଫଳ କିଛି ମିଳିବନି । କାରଣ ଯୁଗେ ଯୁଗେ ସାହିତ୍ୟ କାଳେ ରାଜକୀୟ ପୃଷ୍ଠପୋଷକତା ପାଇ ଆସିଛି । ଆଗେ ଥିଲା ଦରବାରୀ ସାହିତ୍ୟ, ସାହିତ୍ୟିକ ଙ୍କୁ ରାଜାମାନେ ଦରବାରରେ

ସମ୍ମାନ ଦେଉଥିଲେ । ଏବଂ ମନ୍ତ୍ରୀମାନେ ସାହିତ୍ୟ ଅନୁଷ୍ଠାନକୁ କରାୟତ କରି ସାହିତ୍ୟିକଙ୍କୁ ଛେଳିପରି ସେମାନଙ୍କ ହୁଇମରେ ଯୂପକାଠରେ ବଳିପକାଇବା ଦୃଶ୍ୟ ମୁଁ ଦେଖୁଛି । ଆଉ ସେ କଥାଗୁଡା ଆତ୍ମକାହାଣୀରେ ଲେଖିଲେ କଣ ଭଲ ହେବ ।

ଏଣୁ ଚୁପ୍‌ଚାପ୍ ଏହି ସାହିତ୍ୟ ରାଜଦାଣ୍ଡରେ ଚାଲି ଚାଲି ଜୀବନର ବଡଦାଣ୍ଡେ ଟଳି ପଡିବା ଭଲ-ନା-କଣ କହୁଛନ୍ତି ।

ବଡ ଦାଣ୍ଡରେ ଟଳିପଡିଲେ କେହି ନଦେଖନ୍ତୁ, କାଳିଆ ତ' ସବୁ ଦେଖୁଛି !!

(ପ୍ରସ୍ତୁତି-କସ୍ତୁରୀ କୋରାଇ ମଣ୍ଡଳ ସାହିତ୍ୟ ସଂସଦ)

## ମୁଁ ଶିଶୁ ସାହିତ୍ୟ କାହିଁକି ଲେଖେ ?

ମୁଁ ଶିଶୁ ସାହିତ୍ୟ କାହିଁକି ଲେଖେ ? ପ୍ରକୃତରେ ଏ ପ୍ରଶ୍ନ ମନକୁ ମନ ପଚାରିବାର ଅବକାଶ ମୁଁ ପାଇନି । ଲେଖି ଚାଲିଛି ତ ଲେଖିଚାଲିଛି । ବୋଧହୁଏ ଶିଶୁ ମାନଙ୍କୁ ମୁଁ ଖୁବ୍ ଭଲପାଏ । ତେଣୁ ଅବଚେତନ ମନର ନିର୍ଦ୍ଦେଶ କ୍ରମେ ମୁଁ ଶିଶୁ ମାନଙ୍କ ପାଇଁ ଲେଖି ଚାଲେ ।

ଶିଶୁମାନଙ୍କ ପାଇଁ ଲେଖିବା ଖୁବ୍ ସହଜ ବୋଲି ଅନେକ ଭାବନ୍ତି । କେତେକ ମଧ ମତ ଦେଇଥାନ୍ତି ଶିଶୁ ମାନଙ୍କ ପାଇଁ ଲେଖିବା ଖୁବ୍ କଷ୍ଟ । ତେବେ ମୁଁ ଲେଖିବା ବେଳେ ଏସବୁ କିଛି ଅନୁଭବ କରିପାରେନା । ମୁଁ ଗଳ୍ପ ଲେଖେ, ଗୀତ ବି ଲେଖେ, ନାଟକ ବି ଲେଖେ । ବେଳେ ବେଳେ ପ୍ରବନ୍ଧ ବି ଲେଖେ, ଏଇ ଯେମିତି ପ୍ରବନ୍ଧ ଲେଖୁଛି । ତେବେ ଏ ସବୁ ଲେଖିବା ସଂଗେ ସଂଗେ ଶିଶୁ ସାହିତ୍ୟ ବି ଲେଖେ । ଶିଶୁ ମାନଙ୍କ ପାଇଁ ଲେଖାଟିଏ ଲେଖିବା ପରେ ମନରେ ଖୁବ୍ ଗୋଟେ ଖୁସି ଭାବ ଅନେକ ବେଳ ଯାଏ ଲାଗିରହେ । ବୋଧହୁଏ ଏହି କାରଣରୁ ମନଟା ବେଶୀ ସମୟ ଶିଶୁ ମାନଙ୍କ ପାଇଁ ଧାଇଁଯାଏ ।

କେତେକ କହନ୍ତି ଶିଶୁ ମାନଙ୍କ ପାଇଁ ଲେଖିବାକୁ ହେଲେ ଉପଯୁକ୍ତ ବିଷୟ ବସ୍ତୁ ନିର୍ବାଚନ, ସରଳ ଭାଷା ଚୟନ ଆଦିର ଆବଶ୍ୟକତା ପଡିଥାଏ । ମୁଁ କିନ୍ତୁ ଏମିତି ଏଥିରେ ରାଜି ହୋଇପାରେନା । କାରଣ ମୁଁ ଲେଖିବାବେଳେ କେବେ ଗୋଟେ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ବାଛି ନଥାଏ । ଭାଷା ସରଳ ହେଉ ଏକଥା ମଧ ଭାବି ନଥାଏ । ନିଜକୁ ଶିଶୁ ମାନଙ୍କ ଭିତରକୁ ନେଇଗଲେ ମାନସ ରାଜ୍ୟରେ ଶିଶୁ ମାନଙ୍କ ମନକୁ ଛୁଇଁଲା ଭଳି ଉପଯୁକ୍ତ ବିଷୟ ବସ୍ତୁ ଏବଂ ଭାଷା ଓ ଭାବ ଛାଆଁକୁ ଛାଆଁ ଚାଲିଆସେ । ଗୋଟେ ଉଦାହରଣ ଦେଲେ କଥାଟା ସହଜ ହେବ । ମହାଭାରତର ଗଦାପର୍ବକୁ ନେଇ ନାଟକ ଲେଖାଯାଇପାରେ, କବିତା ଲେଖାଯାଇପାରେ, ପ୍ରବନ୍ଧ ଲେଖାଯାଇପାରେ । ସେହିପରି

ଏଇ ଭୀମ ଦୁର୍ଯ୍ୟୋଧନ ଗଦା ଯୁଦ୍ଧକୁ ନେଇ ଶିଶୁ ମାନଙ୍କ ପାଇଁ ଗପଗୁଡ଼ିଏ ବି ଲେଖାଯାଇପାରେ । ଅଥଚ ପ୍ରତି କ୍ଷେତ୍ରରେ ଭାଷା ଆପଣାଛାଏଁ ତା'ର ରୂପ ବଦଳାଇଥାଏ ।

କେତେକ କହନ୍ତି ଶିଶୁ ସାହିତ୍ୟିକଙ୍କୁ ଉପଯୁକ୍ତ ମର୍ଯ୍ୟାଦା ମିଳୁନି । ଏ କ୍ଷେତ୍ରରେ ମୋର ଗୋଟିଏ ଉତ୍ତର ମୁଁ ଲେଖୁଛି -ଲେଖିଚାଲିବି, ମର୍ଯ୍ୟାଦା ପାଇଁ ମାନ ସମ୍ମାନ ପାଇଁ, ପ୍ରତିଷ୍ଠା ପାଇଁ ଲେଖୁନି । ଏଣୁ ଲେଖୁ ଲେଖୁ ଯଦି କିଛି ମାନ ସମ୍ମାନ ମର୍ଯ୍ୟାଦା ମିଳିଲା, କିଛିଟା ପ୍ରତିଷ୍ଠା ମିଳିଲା ଭଲ କଥା । ନମିଳିଲେ ଦୁଃଖ କରିବାର କଣ ଅଛି ।

କେତେକ ମତଦିଅନ୍ତି ସାହିତ୍ୟ ସଭାରେ ଆଗଧାଡ଼ିରେ ଶିଶୁ ସାହିତ୍ୟିକ ମାନଙ୍କୁ ଦେଖିବାକୁ ମିଳେନା । ହଁ ଏକଥାଟା ମୁଁ ବି ବେଳେ ବେଳେ ଅନେକ ସାହିତ୍ୟ ସଭାରେ ଲକ୍ଷ୍ୟ କରିଛି । ତେବେ ସବୁଠି ଯେତେବେଳେ ବାଛ ବିଚାର ଅଛି ସାହିତ୍ୟ ସଭାରେ ନରହିବ କିପରି ? ଆମେ ସମସ୍ତେ ସମାନ । ଆଲୋଚନା ଚକ୍ରରେ ମଧ୍ୟ ସଭାପତିଙ୍କ ଆସନ ଟି ଅନ୍ୟ ମାନଙ୍କ ଆସନଠୁ ବାରି ହୋଇପଡୁଥାଏ । ମନ୍ତ୍ରୀ ବା ଉଚ୍ଚ ପଦାଧିକାରୀବ୍ୟକ୍ତି ଜଣେ ସାହିତ୍ୟ ଚାଷ କରୁଥିଲେ ସେ ଜଣେ ଉପଯୁକ୍ତ ସାହତ୍ୟିକ ଭାବେ ଶୀଘ୍ର ମର୍ଯ୍ୟାଦା ପାଇଥାଏ । ସେହିପରି ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିବା ବ୍ୟକ୍ତି ଟି ଯଦି କହୁ କହୁ କହିଦିଏ, ଶିଶୁ ସାହିତ୍ୟ ହେଉଛି ସବୁଠୁ ଶ୍ରେଷ୍ଠ ସାହିତ୍ୟ, ତାହେଲେ ସେ ସଭାର ପ୍ରତ୍ୟେକ ବକ୍ତା ନିଜ ଭାଷଣରେ ଶିଶୁ ସାହିତ୍ୟର ପ୍ରଶଂସା ନିଶ୍ଚୟ କରିବେ । ଇଚ୍ଛା ଥାଉ ବା ନଥାଉ । ପୁଣି ମୁଖ୍ୟ ଅତିଥି ଯଦି ରାଜନୀତିକୁ ପେଶା କରିଥାନ୍ତି ତେବେ ପ୍ରଶଂସା ସାଙ୍ଗକୁ କରତାଳି ମଧ୍ୟ ଭାଷଣରେ ଖୁବ୍ ମିଳିବ । ଏସବୁ ଉଲ୍ଲେଖ କରିବା ଅର୍ଥ ହେଲା, ଆଜିକାଲି ଯୁଗଧର୍ମ ହେଉଛି ରାଜନୀତି କଲାବାଲାଙ୍କୁ ତେଲେଇ ତାଲେଇ କିଛି ସାହତ୍ୟିକ (ଅସାହିତ୍ୟିକ ବି ହୋଇ ପାରନ୍ତି)ସାହିତ୍ୟ ସଂଗଠନକରି ପଦ ପଦବୀ ଧରି ସାହିତ୍ୟ କ୍ଷେତ୍ରରେ ମର୍ଯ୍ୟାଦା ହାସଲ ପାଇଁ ଚେଷ୍ଟା ଚଳାଇଛନ୍ତି । ଏଣୁ ଶିଶୁ ସାହିତ୍ୟିକ ମାନଙ୍କ କ୍ଷେତ୍ରରେ ମଧ୍ୟ ଏହା ପ୍ରଯୁଜ୍ୟ । କିନ୍ତୁ ପ୍ରକୃତ ସାହିତ୍ୟିକ ଯିଏ ସେ ଶିଶୁ ସାହିତ୍ୟକୁ ଅଲଗା ଦୃଷ୍ଟିରେ ଦେଖିନ୍ନି ପାରେ।ଶିଶୁ ସାହିତ୍ୟିକ ଜଣକ ସାହିତ୍ୟ କ୍ଷେତ୍ରରେ ଏକ ଭିନ୍ନ ଜୀବ ନୁହେଁ । ଏକଥା ସୁନିଶ୍ଚିତ ।

କେତେକ ମତ ଦିଅନ୍ତି ଶିଶୁ ସାହିତ୍ୟ ଯୁଗଧର୍ମୀ ହେବା ଦରକାର । ଶିଶୁ ମାନଙ୍କ ମନରେ ବିଜ୍ଞାନ ତଥ୍ୟ ଆଉ ନୂତନ ନୂତନ ଚିନ୍ତାଧାରା ଆଣିବା ପାଇଁ ବିଭିନ୍ନ ଲେଖା ଲେଖିବା ଦରକାର । ଏଠି ମୋର ମତ ହେଲା ଆମେ ସ୍ନୋ ପାଉଡର ଲଗାଇ ପାରନ୍ତି କିନ୍ତୁ ତେଲ ହଳଦୀ ଛାଡ଼ିବା ଉଚିତ ନୁହେଁ । ଶିଶୁର ମନ ଆଦିମ ଯୁଗରେ ଯେପରି ଥିଲା ବିଜ୍ଞାନ ଯୁଗରେ ସେପରି ମଧ୍ୟ । ତେବେ ପରିବେଶ ବଦଳିଲେ ତାର ମାନସିକ ଚିନ୍ତାଧାରା ବଦଳିଥାଏ । ତଥାପି ଶିଶୁ ମନର ମୌଳିକତାକୁ ଏଡ଼ିଦେଇ

ହେବନି । ସେ ମୌଳିକତା ନିଷ୍କପଟ ସରଳତା ଛଡ଼ା ଆଉ କିଛି ନୁହେଁ । ଏଣୁ ମୁଁ ଯେତେବେଳେ ଲେଖୁଛି, ଏକଥା ଭାବି ଲେଖୁଛି । ମୁଁ ମଧ୍ୟ ସେ ଲେଖା ପଢ଼ିଲେ ଶିଶୁର ସେ ଧାରଣା ହେବ । ଲେଖୁ ଲେଖୁ ଯାହା ଲେଖି ହୋଇଗଲା ତାହାହିଁ ମୋ ପାଇଁ ଅମୂଲ୍ୟ ସଂପଦ । କିନ୍ତୁ ଗୋଟିଏ କଥା ଯେତେବେଳେ ମୁଁ ଲେଖେ ସେତେବେଳେ ମୁଁ ସରଳ ଶିଶୁଟିଏ ହୋଇଯାଇଲେଖେ । ମନକୁ ଶିଶୁ କରିଦିଏ । ଅନ୍ୟଜଣର ତୂଳୀରେ ଛବି ଆଙ୍କିଯାଏ । ବାଣ୍ ଆଉ ସେତକ ଉତୁରିଲା ତାହା ନିଶ୍ଚୟ ଶିଶୁ ମନକୁ ଛୁଇଁବ - ଏବିଶ୍ୱାସ ଆସିଥାଏ । କେହି ବ୍ୟାକରଣ ସୂତ୍ର ଘୋଷି ଶୁଦ୍ଧ ବାକ୍ୟ ଲେଖେନା ବ୍ୟବହାର ବଳରେ ବାକ୍ୟ ଶୁଦ୍ଧ ହୋଇଥାଏ । ସେହିପରି ଶିଶୁମାନଙ୍କ ପାଇଁ ଲେଖିବାର ଅଭ୍ୟାସ ହୋଇଗଲେ ଆପଣା ଛାଏଁ ଭାବ ଭାଷା ସେଇ ଶିଶୁ ମାନଙ୍କ ପାଇଁ ଉପଯୁକ୍ତ ହୋଇଯାଏ ।

ଶେଷରେ ଗୋଟିଏ କଥା -ମୋତେ କେବେ କିଏ ଯଦି ସାକ୍ଷାତକାରରେ ପଚାରିଥାଏ, ଆପଣ ଶିଶୁ ସାହିତ୍ୟ ବିଭାଗ ପ୍ରତି ଆଗ୍ରହୀ ହେଲେ କାହିଁକି ? ମୋର ଉତ୍ତର ହେଉଛି-ମୁଁ ଅନେକ ବିଭାଗରେ ଲେଖନୀ ଚାଲୁ କରୁଥିଲେ ବି ଆପଣ ମୋତେ ଶିଶୁ ସାହିତ୍ୟିକ ଭାବେ ସାକ୍ଷାତକାର ନେବା ପାଇଁ କାହିଁକି ଆଗ୍ରହ ଦେଖାଇଲେ ?

ଅନ୍ୟ କଥାରେ କହିବାକୁ ଗଲେ ଯାହାର ମନ ଯେତେବେଳେ ଯେଉଁ ବାଟକୁ ଯିବାକୁ ଚାହେଁ-ସେ ଆପଣା ଛାଏଁ ଯିବ, କେହି ବାନ୍ଧି ରଖିପାରିବେନି । ପରିସ୍ଥିତିରେ ପଡି ରତ୍ନାକର ବାଲ୍ମିକୀ ହୋଇ 'ରାମାୟଣ' ଲେଖିଲେ । ବ୍ୟାସ 'ମହାଭାରତ' ଲେଖିଲେ । କାହ୍ନୁ ମହାନ୍ତି 'ହା ଅନ୍ନ' ଲେଖିଲେ । ଏଣୁ ଯୁଗ ବଦଳିଲେ ବି ସାହିତ୍ୟ ରଚନା ପାଇଁ ଯେଉଁ ପରିବେଶ ପରିସ୍ଥିତିର ଆବଶ୍ୟକ ମଧ୍ୟ ଅପରିବର୍ତ୍ତନୀୟ ।

ଇଚ୍ଛା କରି କେହି ବଡ ହୁଏନି । ଥିଏଟର ଗେଟ୍ ଜଗୁଥିବା ବ୍ୟକ୍ତିତ ପୁଣି ନାଟ୍ୟକାର ହେଲେ । ଗାଈ ଜଗୁଆଳ କପିଳା ତ ପୁଣି କପିଳେନ୍ଦ୍ର ହେଲେ । ଲେଖୁ ଲେଖୁ ଆମର ଲେଖନୀ ଯେଉଁ ଦିଗକୁ ଟାଣିନେଉଛି ଧରି ନେବାକୁ ହେବ ତାର ଅନୁରାଗ ସେ ଦିଗରେ ବେଶୀ । ସେଇ ଅନୁରାଗ ହିଁ ଅଧ୍ୟବସାୟ ପାଇଁ ପ୍ରେରଣା ଦେଉଛି । ଆଉ ପ୍ରେରଣା ଆଣି ଦେଉଛି ମୋ ପାଇଁ ପ୍ରତିଷ୍ଠା ।

ପ୍ରସ୍ତୁତି- ନିରଂଜନ ତୁରୁକ୍

■

## କିଛି ସ୍ମୃତି କିଛି ଅନୁଭୂତି

# ମୁଁ ବି ଦିନେ ମୀନା ଥିଲି : ମୀନାବଜାର-ଫେବୃୟାରୀ ୨୦୦୦

ମୁଁ ବି ଦିନେ ମୀନା ଥିଲି - ଏକଥା କହିଲା ବେଳକୁ ମୋ ତଣ୍ଟିକୁ କିଏ ଚିପି ଦେଲାଭଳି ଲାଗୁଛି । କାରଣ ମୁଁ ଏବେବି ଜଣେ ମୀନା । ସବୁଦିନେ ମୀନା । ଯେତେ ବଡ ହେଲେବି -ଯେତେ ବଡ ବଡ ପତ୍ର ପତ୍ରିକା ପାଇଁ ଲେଖାଲେଖି କଲେବି ମୁଁ ପ୍ରଥମେ ମୀନାବଜାରର ମୀନା । ଏଇ ମୀନା ବଜାର ମୋ ଆଖି ଖୋଲିଛି, ମୋ ହାତରେ କଲମ ଧରେଇଛି । ନଚେଇଛି, ହସେଇଛି, ଖେଳେଇଛି । ଆଉ ମୋ ଭଳି ଓଡିଶାର ଅସଂଖ୍ୟ ମୀନା ମୀନିଙ୍କୁ ହସାଇଥିବା ବ୍ୟକ୍ତିଜଣକ ଆମ ସଭିଙ୍କର କକା ମହତାବ୍ । ସେ କେବଳ ଆମ ମୀନା ମୀନିଙ୍କର ପ୍ରେରଣାଦାତା ନୁହନ୍ତି, ସାରା ଓଡିଶାର କଳା ସଂସ୍କୃତିର ପ୍ରେରଣାର ଉତ୍ସ । ତାଙ୍କରି ପ୍ରେରଣାର ପ୍ରତୀକ ତ ଆଜିର ଏଇ ପ୍ରଜାତନ୍ତ୍ର ବିଷୁବ ମିଳନ । .

ହଁ ମୋର ଆଜି ମନେପଡୁଛି ୧୯୫୪ ମସିହା କଥା । ସେତେବେଳେ ମୀନା ବଜାର ବାହାରୁଥାଏ ଗୁରୁବାର ମାତ୍ର ଦୁଇପୃଷ୍ଠାର କ୍ରୋଡପତ୍ର ଭାବେ । ସେଇ ଦୁଇ ପୃଷ୍ଠାର ମୀନାବଜାର ଖଣ୍ଡିକ ପାଇଁ ଚାତକପରି ଚାହିଁଥାଏ ମୁଁ ।

୧୯୫୪ରୁ ୫୮ ଯାଏ ମୁଁ ଥାଏ ଏନ୍.ସି.ହାଇସ୍କୁଲ ର ଛାତ୍ର । ଯୋଗ ଦେଖ ; ଏଇ ଲେଖାଟି ଲେଖିଲା ବେଳକୁ ସେଇ ହାଇସ୍କୁଲ ର ମୁଁ ଆଜି ପ୍ରଧାନ ଶିକ୍ଷକ । ଆଉ କେଇ ମାସ ପରେ ଅବସର ନେବାକୁ ହେବ । ଆଉ ଅବସର ଜୀବନରେ ଭାବିବାକୁ ହେବ ଏଇ ସ୍କୁଲ କଥା । ଏହାର ଦୁରାବସ୍ଥା କଥା । ହଁ ଛାଡ ସେକଥା । ଏବେ ଫେରିଯାଉଛି ପଛ ୧୯୫୪ ମସିହାକୁ । ଏଇ ବିଦ୍ୟାଳୟରେ ମୋ ନେତୃତ୍ୱରେ ଗଢା ହୋଇଥାଏ ମୀନାମଣ୍ଡଳୀଟିଏ । ମୁଁ ଥିଲି ତ ସେ ବିଦ୍ୟାଳୟର ମାଗାଜିନ ସେକ୍ରେଟାରୀ । ଏଣୁ ପ୍ରଧାନଶିକ୍ଷକ ସ୍ୱର୍ଗତଃ ଉପେନ୍ଦ୍ର ଶତପଥିଙ୍କ ପ୍ରେରଣା ସଦାବେଳେ ଥାଏ ମୋ ପ୍ରତି । ମୀନା ମଣ୍ଡଳୀରେ ଅନେକ ସଭ୍ୟ ସଭ୍ୟା ଥାଆନ୍ତି । ପ୍ରସ୍ତାବ ହେଲା ମୀନାମଣ୍ଡଳିର ନାମ ହେବ ବ୍ୟାସ ସରୋବର ମୀନାମଣ୍ଡଳି । ହେଲେ ଜହ୍ନରୀ ଭାଇ (ସିଏ ଆଜିବି ଜହ୍ନରୀ ଭାଇ ଅଛନ୍ତି ଆମ ସୌଭାଗ୍ୟକୁ )ଚିଠି ଦେଲେ ସେ ନାଁରେ ଗୋଟିଏ ମୀନାମଣ୍ଡଳି ଅଛି । ଏଣୁ ଆମ ମୀନା ମଣ୍ଡଳିର ନାଆଁ ତାଙ୍କ ପ୍ରସ୍ତାବ ଅନୁସାରେ ରହିଲା ଉନ୍ମେଷ ମୀନାମଣ୍ଡଳି । ଏଇ ମୀନାମଣ୍ଡଳିର ସଭ୍ୟ ସଭ୍ୟା ଭିତରୁ କଲ୍ୟାଣୀ ସାହୁଙ୍କର ଚୁନାର ସ୍ୱପ୍ନ, ଲିଲିବାଇ ଦାସ କବିତା (ନାଁ ମନେପଡୁନି) । ମୀନା ବଜାରର ପୃଷ୍ଠା ମଣ୍ଡନ କରୁଥିଲା । ଏଇ ଉନ୍ମେଷ ମୀନାମଣ୍ଡଳିର ସଭ୍ୟ କୈଳାସ ପଟ୍ଟନାୟକ ଙ୍କ ଅକ୍ଷର ଖୁବ୍ ଗୋଲ ଗୋଲ । ସେ ମଧ୍ୟ ଗପ ପ୍ରତିଯୋଗୀତାରେ ପ୍ରଥମ ହୋଇ ମୀନାବଜାର ଦ୍ୱାରା

ପୁରସ୍କୃତ ହୋଇଥିଲେ । ଅବଶ୍ୟ କୈଳାସ ପଟ୍ଟନାୟକଙ୍କ ନାଆଁଥିଲା ସେତେବେଳେ ପ୍ରଣୟ କୁମାର ପଟ୍ଟନାୟକ ।

ଆଉ ମୋର ପ୍ରଥମ ଲେଖା ମୀନା ବଜାରରେ ଥିଲା ନେଉଳ ଭାଇର ରାଇଜ ଫେରି, ଏଇ ଗପଟି ବିଷୟରେ ଜହ୍ନୁରୀ ଭାଇ ଚିଠି ଲେଖିଥିଲେ-ଶ୍ରଦ୍ଧେୟ ନନ୍ଦକିଶୋର ତୁମର ଏଇ ଗପଟିର ସାରାଂଶ ଆଗରୁ ଏକ ପ୍ରକାଶିତ ଗପପରି । ମୁଁ ଚିଠିର ଉତ୍ତର ଦେଇନଥିଲି । କିନ୍ତୁ ମୋର ସୌଭାଗ୍ୟକୁ ଗପଟି ଅବିକଳ ମୋ ଲେଖା ପରିବର୍ତ୍ତନ ନହୋଇ ମୀନା ବଜାରରେ ପ୍ରକାଶ ପାଇଥିଲା । ପରେ ବଡ ହେବାରୁ ଜାଣିଲି ସେଇ ଧରଣର ଲେଖାଟି ର ଲେଖକ ନିଜେ ଜହ୍ନୁରୀ ଭାଇ ଆଜିବି ତାଙ୍କରି ସଂପାଦନାରେ 'ମୋ ଦେଶ'ରେ ପ୍ରକାଶ ପାଇଥିଲା । ହୁଏତ ମୋ ଦେଶର ଗପଟିରୁ ମୁଁ ଅନୁପ୍ରେରିତ ହୋଇ ଲେଖିଦେଇଥିଲି ସେତେବେଳେ ।

ଆଉ ଗୋଟିଏ କଥା ମନେପଡୁଛି ସେତେବେଳେ ମୀନାବଜାରରେ ପତ୍ରବନ୍ଧୁ ବିଭାଗ ଥାଏ । କିନ୍ତୁ ନିର୍ଦ୍ଦେଶ ଥାଏ ଭାଇମାନେ ଭାଇମାନଙ୍କ ସାଙ୍ଗରେ, ଭଉଣୀମାନେ ଭଉଣୀଙ୍କ ସହ ପତ୍ରବନ୍ଧୁ କରିପାରିବେ , ମୁଁ ଟିକେ ବିଦ୍ରୋହୀ ହୋଇ ଜହ୍ନୁରୀଭାଇଙ୍କ ପାଖକୁ ଚିଠିଲେଖିଥିଲି, "ଜହ୍ନୁରୀ ଭାଇ , ଭାଇମାନେ ଭଉଣୀମାନଙ୍କ ସହ ପତ୍ରବନ୍ଧୁ କରିବାରେ ବାଧା କେଉଁଠି "?

ଉତ୍ତର ଆସିଲା- ଶ୍ରଦ୍ଧେୟ ନନ୍ଦକିଶୋର ତୁମର ଦୁଃଖ ମୁଁ ବୁଝୁଛି । ତୁମର ସ୍ପଷ୍ଟବାଦୀତାକୁ ପ୍ରଶଂସା କରୁଛି । କିନ୍ତୁ ଅନେକ ଅପ୍ରୀତିକର ଘଟଣା ଘଟିବା ପରେ ଏପରି ଏକ ନିଷ୍ପତ୍ତି ନିଆଯାଇଛି । ତୁମେ ବଡ ହେଲେ ଜାଣିବ । ଏବେ ପିଲାଲୋକ, କିଶୋର ଅବସ୍ଥା ତୁମର ।

ଆଜି ବୁଝୁଛି ସେ ଦିନରୁ ବୋଧହୁଏ ଆମ ସମାଜରେ ନୈତିକ ସ୍ଖଳନ ଆଉ ମୂଲ୍ୟବୋଧର ଅବକ୍ଷୟ ଆରମ୍ଭ ହୋଇଯାଇଥିଲା ।

ଆଉ ଗୋଟେ କଥା । ସେତେବେଳେ ନୀହାର ଅପା ପ୍ରଜାତନ୍ତ୍ରରେ ଚାକିରି କରିଥାଆନ୍ତି । ମୁଁ ମେଟ୍ରିକ ରେ ଏନ୍.ସି.ହାଇସ୍କୁଲରୁ ପ୍ରଥମ ଶ୍ରେଣୀରେ ପାଶ କରିଥାଏ ।

୧୯୫୮ ମସିହାରେ ଆମେ ସାରା ଓଡିଶାରୁ ମାତ୍ର ୨୮୭ଜଣ ମେଟ୍ରିକ ପାଶ କରିଥିଲୁ ପ୍ରଥମ ଶ୍ରେଣୀରେ । ଆମ ସ୍କୁଲରୁ ଆମେ ତିନିଜଣ । ତିନିଜଣଙ୍କ ଠାରୁ ମୋର ନମ୍ବର ଥିଲା ବେଶି । ଆଉ ଓଡିଶାରେ ମୁଁ ପ୍ରଥମ ଦଶଜଣଙ୍କ ଭିତରେ ନଥିଲେ ବି ପ୍ରଥମ ୨୦ଜଣ ଭିତରେ ଥିଲି । ହଁ ନୀହାର ଅପା ମୋ ପାଖକୁ ଚିଠି ଦେଇଥିଲେ ଖବରକାଗଜ ରୁ ମୋ ପରୀକ୍ଷାଫଳ ଦେଖି । ବଧେଇ ଜଣେଇଥିଲେ । ମୁଁ ଚିଠିର ପ୍ରତ୍ୟୁତ୍ତର ଦେଇଥିଲି । ଅପା ମୁଁ ଖାଲି ବଧେଇରେ ମୁଁ ସନ୍ତୁଷ୍ଟ ନୁହେଁ । ମୋ

ପାଇଁ ମିଠେଇ ପଠେଇବ । ସେ ପୁଣି ଲେଖିଲେ ନନ୍ଦ ତୁମେ କଟକ ଆସ ପେଟେ ରସଗୋଲା ଖାଇବ, ସେ ସମୟରେ କଟକ ଯିବା ସମ୍ଭବ ନଥିଲା । ହେଲେ ପରବର୍ତ୍ତୀ କାଳରେ ନୀହାର ଅପା ସଂଗେ ଦେଖାଶୁଣା ହେଲା ଆକାଶବାଣୀ କଟକରେ । ସେତେବେଳେ ସେ ଆକାଶବାଣୀର କର୍ମଚାରୀ, ଆଉ ମୁଁ ଆକାଶବାଣୀର ଜଣେ ଗୀତିକାର, ନାଟ୍ୟକାର ଆଉ ବିଭିନ୍ନ କାର୍ଯ୍ୟର ଅଂଶଗ୍ରହଣକାରୀ । ଏଠିବି ମୀନାବଜାର କଥା ମନେପଡି ଖୁବ୍ ହସ ଖୁସି ହେଲା ।

ଏଇ ନୀହାର ଅପା ହେଉଛନ୍ତି ବିଶିଷ୍ଟ ନାଟ୍ୟକାର ଶାରଦା ପ୍ରସନ୍ନ ନାୟକଙ୍କ ପତ୍ନୀ ନୀହାରବାଳା ନାୟକ । ମୋର ଆଦରର ନୀହାର ଅପା ସେ ଆଜିବି, ଆଉ ଆଜିବି ସେଇ ରସଗୋଲା ଖୋଇବାକୁ ଦେବାକଥା ତାଙ୍କୁ କହି ମୁଁ ଆନନ୍ଦ ପାଇଥାଏ । ଶେଷରେ ଆଉ ଗୋଟିଏ କଥା ନକହି ରହିପାରୁନି । ଏହା ଭିତରେ ମାସିକ ମୀନାବଜାର ପ୍ରକାଶ ପାଇସାରିଥାଏ । ମନ ମୋର ହାଇଁପାଇଁ ହେଉଥାଏ ଏଥିରେ ଲେଖାଟିଏ ପ୍ରକାଶ ପାଆନ୍ତାକି । କିନ୍ତୁ ଆଶା ନଥାଏ କାରଣ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ, ଉଦୟନାଥ ଷଡଙ୍ଗୀ, ବିଦ୍ୟୁତପ୍ରଭା ଦେବୀଙ୍କ ଲେଖା ପ୍ରକାଶପାଇଥାଏ ।

ହେଲେ ଦିନେ ସପନ ସତ ହେଲା ଚିଠିଟିଏ ଜହୁରୀ ଭାଇଙ୍କ ଠାରୁ ପାଇଲି- ଶ୍ରଦ୍ଧେୟ ନନ୍ଦକିଶୋର -ତୁମେ 'ସାହସୀ ଶିକାରୀ' ଗପଟି ସାପ୍ତାହିକ ମୀନାବଜାର ପାଇଁ ପଠାଇଥିଲ । ହେଲେ ତାହା ମାସିକ ମୀନାବଜାର ପାଇଁ ଉପଯୁକ୍ତ ହେଲା । ଏଣୁ ଆଗାମୀ ଅଗଷ୍ଟ ସଂଖ୍ୟା (୧୯୫୯ ମସିହା) ରେ ଏହା ପ୍ରକାଶ ପାଇବ । ଏଇ ଚିଠିଟିକୁ ଧରି ମୁଁ ଆନନ୍ଦରେ ଘରସାରା ନାଚିବାକୁ ଲାଗିଲି । ଗ୍ରୀକ୍ ଦେଶର ଇଂରାଜୀ ଗପ Bold Hunter ର ଓଡିଆ ଅନୁବାଦ ସାହସୀ ଶିକାରୀ ହିଁ ମୋର ସର୍ବପ୍ରଥମ ମାସିକ ପତ୍ରିକାରେ ପ୍ରକାଶ ପାଇଥିବା ପ୍ରଥମ ଲେଖା ।

ସେଇଦିନଠୁ ଆଜିଯାଏ ମୁଁ ଆଉ ପଛକୁ ଫେରି ଚାହିଁନି । ଆଗେଇ ଚାଲିଛି ଆଉ ଚାଲିଥିବି । ଆଜି ଶେଷରେ କୁନା କୁନି ମୀନା ମୀନିଙ୍କ ପାଇଁ ଏଇ କୁନି କବିତାଟି ଲେଖିଦେଉଛି-

ଉଡ଼ୋ କେମିତି ଚଢେଇଟାଏ
ଆକାଶରେ ଉଡେ
ଧଳା ଧୂଆଁ ଛାଡେ
ଆକାଶରୁ ଓହ୍ଲେଇ ଆସି
ମାଟିପରେ ଗଡେ
କୁନା ମୁନା ବୁନାଙ୍କୁ
ଖୁସି କରି ଛାଡେ

ହଉ ଏଇଟି ରହୁଛି ।

# ଆଗକୁ ଆସୁଛି ଅଗି ପୁନେଇଁ

"ବଡ ଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ" ଭକ୍ତି ଭିଜା ଗଳାରୁ ବେଳେ ବେଳେ ଛୁଟିଆସେ ବେତାର କେନ୍ଦ୍ରରୁ ନରମ ସକାଳଟାକୁ ଅଧିକ ମନମତାଣିଆ କରି । ଏହିପରି ଅନେକ ଭଜନ, ଆଧୁନିକ, ପଲ୍ଲୀ ଓ ଦ୍ୱୈତ ସଂଗୀତ ର ରଚୟିତା ସଂଗୀତ ପ୍ରାଣ ଶ୍ରୀଯୁକ୍ତ ନନ୍ଦ କିଶୋର ସିଂହ । ବାଟରୁ ଆରମ୍ଭ କରି ବାଣୀଚିତ୍ର ପର୍ଯ୍ୟନ୍ତ ତାଙ୍କର ଗୀତର ଲଳିତ ଲହର ସ୍ରବି ଯାଇଛି । କିଆ ଫୁଲ ଫୁଟା କୋରେଇ ଗାଆଁରେ କବିଙ୍କର ଜନ୍ମ । କାଳି କଲମର ମାୟା ଏବେ ଜାବୁଡି ଧରିଛି ଶ୍ରୀଯୁକ୍ତ ସିଂହଙ୍କୁ । ନାଟକ ଓ ଶିଶୁ ସାହିତ୍ୟରୁ ସେ ପାଆନ୍ତି ଅଜସ୍ର ଆନନ୍ଦ । ମଜି ଯାଆନ୍ତି, ହଜି ଯାଆନ୍ତି ତାରି ମଧରେ । ଶିକ୍ଷକତାକୁ ପେଷା ରୂପେ ଗ୍ରହଣ କରିଥିଲେ ମଧ ପୋଷୀ ହୋଇଯାଇଛନ୍ତି ସାଙ୍ଗିତିକତା ଭିତରେ । ସେଇ ପଲ୍ଲୀ ବିଭୋର ନନ୍ଦକିଶୋରଙ୍କ ର ଅରମା ବଣରେ ବାଲ୍ୟ ଚପଳ ଅନୁଭୂତିରୁ ଶାମୁକାଏ ବାଛୁଛୁ । ସାଥୀ-ସରିସା ମେଳରେ ଗାଆଁ ଗୋହିରି କିଆଝାଟି ଭିତରେ ଅଗି ପୁନେଇଁ ପାଳୁ ପାଳୁ ସେ କହନ୍ତି-

ଆଜି କାଲି ଗାଆଁରେ ଆମେ କିଆବୁଦା ଘୋଟେ ଦେଖିବା ସପନ । ଆଜକୁ ୪୦ ବର୍ଷ ତଳେ ଆମେ ଯେତେବେଳେ ଛୋଟ ଛୋଟ ପିଲା, କିଆ କେତକୀ ବଣ ପୁରିଥାଏ । କିଆବୁଦା ତଳେ କୋକିଶିଆଳ ଛୁଆ ପଲ୍ଲେ ପଲ୍ଲେ ଡେଉଁଥିବାର ଦୃଶ୍ୟ ଆଜି ଆଉ ନାହିଁ ।

ସେହି ପିଲାଦିନର କଥା । ଅଗି ପୁନେଇଁ ସେଦିନ । ଆମେ ଗାଆଁର ସାଙ୍ଗ-ସାଥୀ ଏକାଠି ବାହାରିଲୁ ଅଗି ନିଆଁ ବଡେଇ ବୁଲେଇବାକୁ । ତା ସଂଗରେ ଦୁଦିଭାଇ ଘର ଆମ୍ବ ମୂଳେ ଥିବା କିଆ ବୁଦାକୁ ପୋଡିବାକୁ । ସାଙ୍ଗରେ ଥିଲେ-ଉଧ, କୃଷ୍ଣ, ବେଙ୍ଗ ଆଉ ଗେଡା ।

ଆମର କିଆବୁଦା ପୋଡିବାର ଯୋଜନା ସମ୍ବନ୍ଧରେ ସୂରାକ ପାଇଗଲା ଦୁଦି ଭାଇ । ସେ ଗୋଟାଏ ମସ୍ତବଡ ଠେଙ୍ଗା ଧରି ଚାଲିଲା ଆମ୍ବ ମୂଳ କିଆବୁଦା ଜଗିବାକୁ । ଆମେ ବି ଆମ ଯୋଜନା କିମିତି ସଫଳ ହେବ ଲାଗିପଡିଲୁ । ଆମ ଭିତରୁ ଅଧେ ରାସ୍ତାରେ ଠିଆ ହୋଇ, ଦୁଦି ଭାଇଙ୍କୁ ଶୁଣେଇଲା ଭଳି ଫୁସୁର ଫାସ କଥାବାର୍ତ୍ତା ହେଉଥାଆନ୍ତି । ତେଣେ ମୁଁ ଆଉ ବେଙ୍ଗ ଛାପି ଛପି, ଆଣ୍ଠେଇ ଆଣ୍ଠେଇ, ଦିଆସିଲି ଧରି କିଆବୁଦା ମୂଳେ ପହଞ୍ଚିଲୁ । ଦୁଦିଭାଇ ଆମ ସାଙ୍ଗ ମାନଙ୍କ କଥାକୁ କାନେଇ କାନେଇ ଛପି କରି ବସିଥାନ୍ତି । ପୂନେଇ ଜହ୍ନ ଆଲୁଅରେ ଆମେ ଦୁଦି ଭାଇର ଢଙ୍ଗ

ତାଙ୍କ ଦେଖୁଥାଉ । ଏଣେ କିଆ ବୁଦାରେ ଶିଆଳ ଛୁଆ ଗୁଡା କେଁ କେଁ ହେଉଥାଆନ୍ତି ।

ବେଙ୍ଗ କିଆବୁଦାର ଶୁଖିଲା ପତ୍ରରେ କରୋସିନି ଢାଳିଦେଲା । ମୁଁ ଦିଆସିଲି ମାରି ନିଆଁ ଲଗାଇଦେଲି । କିଆବୁଦା ଜଳିଉଠିଲା । ଦୁଦି ଭାଇ ବାଡି ଧରି ଛୁଟିଆସିଲା । ମୁଁ ଆଉ ବେଙ୍ଗ କୌଣସି ମତେ ଖସି ପଳେଇ ଆସିଲୁ । ଦୁଦି ଭାଇ ହୁଁ-ହାଁ କରି ପିଟିଚାଲିଥାଏ ଅନ୍ଧାରିଆ ବାଡିବୁଲେଇ କିଆବୁଦାକୁ । ଆମେତ ଖସିଆସିଲୁ କୋକିଶିଆଳ ଛୁଆ ଗୁଡାକ ବି ଲାଙ୍ଗୁଡ ଟାକି ପଳାଇଲେ । ହେଲେ ମୁଁ ଧାଁ ଧପଡ କରି ଆସୁ ଆସୁ ମୋ ଡାହାଣ ଗୋଡ ବୁଢା ଆଙ୍ଗୁଳି ମକଚି ହୋଇଗଲା । ପ୍ରାୟ ଆଠଦିନ ଯାଏ ସେ ଜଖମ ଗଲାନାହିଁ । ସେତେବେଳେ ଆମ ଗାଆଁରେ ଜଖମ ପାଇଁ ଏକମାତ୍ର ଔଷଧ ଥିଲା ରନ୍ଧା ଜଡାତେଲ । ସେଇ ଜଡାତେଲ କନା ବାନ୍ଧି ବଥା ଖାଇଲା ମୋ ଜଖମର ।

ଆଜି ଦୁଦି ଭାଇର ସେ ଆମ୍ବ ଗଛ ନାହିଁ, କି କିଆବୁଦା ବି ନାହିଁ । ଆଗକୁ ଆସୁଛି ଅଗି ପୁନେଇଁ । ପିଲାଦିନର ସେ କଥା ମନେପଡିଯାଉଛି । ଜୀବନର କଅଁଳ ବେଳର କଥା । ସବୁ ଜଳ ଜଳ ହୋଇ ଆଖି ଆଗରେ ନାଚୁଛି ।

ପ୍ରଗତିବାଦୀ- ୧୪.୨.୮୯

## ମୋ ଜୀବନର ଅଭୁଲା ଘଟଣା

ଘଟଣା-କୁହନ୍ତୁ କି ଦୁର୍ଘଟଣା- ସବୁଗୁଡିକ ସବୁଦିନେ ମନେ ରଖିପାରୁଥିଲେ ମଣିଷ ନୂଆ ନୂଆ ଘଟଣାର ସମ୍ମୁଖୀନ ହୁଅନ୍ତା ନାହିଁ । ସବୁ ଗୁଡିକ ପୁରୁଣା ପୁରୁଣା ଲାଗନ୍ତା । ତଥାପି ମଣିଷର ଜନ୍ମଠୁଁ ମରଣ ଯାଏଁ ପ୍ରାୟତଃ ଗୋଟିଏ ପରେ ଗୋଟିଏ ଘଟଣା ଘଟି ଚାଲିଥାଏ । ମୁଁ ବା ସେଥିରୁ ବାଦ୍ ଯିବି କିପରି । ତେବେ ମୋ ଜୀବନକୁ ମୁଁ ବାଲ୍ୟ ଜୀବନ, ବୈବାହିକ ଜୀବନ ଭାବରେ ଶ୍ରେଣୀ ବିଭାଗ କରିପାରେ । ପ୍ରତ୍ୟେକ ସ୍ତରରେ କିଛିନା କିଛି ରୋମାଞ୍ଚକର ଘଟଣାର ଅନୁଭୂତି ରହିଛି । ରହିଛି ମଧ୍ୟ କିଛି ଦୁଃଖଦଃ ଘଟଣା । ସେଇ ଘଟଣାରୁ ଗୋଟିଏ ଏଠାରେ ଉଲ୍ଲେଖ କରୁଛି । ଘଟଣାଟି ହେଲା ମୋର ଆଠବର୍ଷ ବୟସରେ ବାପାଙ୍କର ମୃତ୍ୟୁ । ଆଉ ଏଇ ମୃତ୍ୟୁ ପଛରେ ମୋର ପିଲା ଦିନର ଏକ ସ୍ମୃତି । ମୁଁ ବାଟରେ ଯାଉ ଯାଉ ପେଚା ଛୁଆଟିଏ ପାଇ ତାକୁ ଘରକୁ ନେଇ ଆସିଥିଲି । ମାଆ ମୋ ହାତରେ ପେଚାଛୁଆଟିଏ ଦେଖି ମୋତେ ଗାଳିଦେଇ କହିଲେ "ଆରେ ତୁ କାଇଁ ପେଚାଟାକୁ ଘରକୁ ଆଣିଲୁ ? ଘରେ ନିଶ୍ଚେ କିଛି ଅଘଟଣା ଘଟିବ ।" ପ୍ରକୃତରେ ଏଇ ଘଟଣାର ଆଠଦିନ ଭିତରେ ବାପାଙ୍କର କାଳ

ହୋଇଗଲା । ତେଣୁ ଆଜି ପର୍ଯ୍ୟନ୍ତ ମୁଁ ଭାବୁଛି ସତେକଣ ମୋ ବାପାଙ୍କ ଅକାଳ ମୃତ୍ୟୁ ହେଲା ମୋର ଏଇ ପେଚା ଛୁଆଟି ଘରକୁ ଆଣିବା ଯୋଗୁଁ ? ଏବେ ବି ନିଜକୁ ଦୋଷୀ ଦୋଷୀ ଲାଗୁଛି ।

ଠିକ୍ ସେହିପରି ମାଆଙ୍କ ମୃତ୍ୟୁ ଶଯ୍ୟାରେ ବାରଣ ସତ୍ତ୍ୱେ ମୁଁ ତାଙ୍କୁ ଛାଡି ମୋର ଚାକିରୀକୁ ଚାଲିଯିବା ଏବଂ ଫେରୁ ଫେରୁ କେଇ ମିନିଟ୍ ପୂର୍ବରୁ ମୋହାତରୁ ପାଣି ଟୋପେ ନପାଇ ସେ ମରିଯିବା ମୋ ଅନ୍ତରକୁ ଏବେବି ଛଟପଟ କରୁ ଛି । ଏଇ ଅବସ୍ଥାର ପୁନରାବୃତ୍ତି ଘଟିଥିଲା ମୋର ପୋଷ୍ୟ ପିତା ସ୍ୱର୍ଗତଃ ନବକିଶୋର ସିଂହଙ୍କ କ୍ଷେତ୍ରରେ ।

## ହୋଲି ଆସୁଛି ହୋଲି

### ଉପସ୍ଥାପନା-ବିନୟ କୁମାର ଦାସ

(ହୋଲି ଆସୁଛି । ରଂଘ ଅବିରର ଖେଳ -ଚମକ ମାନସପଟରେ ଉଙ୍କି ମାରିଲାଣି । ଆମ୍ବ ବଉଳର ବାସ୍ନାରେ ମହକି ଉଠିଲାଣି ଗାଁ ଦାଣ୍ଡ ଆମ୍ବତୋଟା । ମେଲଣ ଯାତ ପାଇଁ ମାନସିକ ପ୍ରସ୍ତୁତି ଆରମ୍ଭ ହୋଇଗଲାଣି । ଆନନ୍ଦମୁଖର ଉତ୍ସବଟିଏ ଏଇ ହୋଲି । କାହାରିକୁ ଦୁଃଖ ଦିଏ ନାହିଁ । ବରଂ ବର୍ଷ ଯାକର ଦୁଃଖକୁ ହରଣ କରିନେବାର ଶକ୍ତି ରହିଛି । ତା ପାଖରେ ସମସ୍ତେ ପୁଲକିତ ହୁଅନ୍ତି । ମଉଜ ମଜଲିସରେ ମାତି ଉଠନ୍ତି । ରଂଗମୟ ହୋଇଉଠେ ତନୁ ମନ । ଫଗୁଣର ଫଗୁ ଆବାଳବୃଦ୍ଧବନିତାଙ୍କୁ ଅଜଣା ଆନନ୍ଦରେ ମଜଗୁଲ୍ କରିଦିଏ । ଆଉ ସବୁଠାରୁ ବୋଧହୁଏ ବେଶୀ ଖୁସି ହୁଅନ୍ତି ପିଲାମାନେ- ସେମାନଙ୍କୁ ଆହୁରି ଖୁସି ଯୋଗାଇ ଦିଅନ୍ତି ତାଙ୍କ ପାଇଁ ଲେଖୁଥିବା ଶିଶୁ ସାହିତ୍ୟିକ ମାନେ । ହୋଲି ଉପରେ ଲେଖନ୍ତି କେତେ ଢଙ୍ଗରେ ମନଛୁଆଁ କବିତା ଆସନ୍ତୁ ସେହିପରି ଏଇ ବରିଷ୍ଠ ଶିଶୁ ସାହିତ୍ୟିକଙ୍କ ବାଲ୍ୟ ଜୀବନର ହୋଲି ସ୍ମୃତି ତାଙ୍କ ଲେଖନୀରୁ ପଢିବା । )

ସକାଳୁ ସକାଳୁ ସବୁଦିନେ କୁଆ କା-କା କରେ । କିନ୍ତୁ ଦିନେ ଦିନେ ସକାଳ ହେବା ଆଗରୁ କିମ୍ବା ରାତି ହେବା ପୂର୍ବରୁ କୋଇଲିର କୁ-କୁ ଶୁଭେ । ବିଛଣାରେ ଗଡପଡ ହେଉଥାଏ । ନିଦ ଆଖିରୁ ଛାଡି ଛାଡି ଆସୁଥାଏ । ଏଇ କୁ-କୁ ଶବ୍ଦଟା ମନକୁ ଚହଲାଇ ଦିଏ । ଜାନଟାଣି ହୋଇଯାଏ ।

ଯୋଗକୁ ଦେଖ ମୁଁ ଏଇକଥା ଏବେ ମନେପକାଇ ଲେଖିଲା ବେଳକୁ ସତକୁ ସତ କୋଇଲିର କୁ-କୁ ଶବ୍ଦ ଶୁଣୁଛି । ଅବଶ୍ୟ ଏହାର ଶବ୍ଦଟା ଖୁବ୍ ଦୂରରୁ ଆସୁଥିବା

ଜଣାପଡୁଛି । ସେଥିରୁ ଜଣାପଡୁଛି ବସନ୍ତ ଆସିଗଲା । ବସନ୍ତ ଆସିବା ପୂର୍ବରୁ ଚୋରା ବସନ୍ତ ଆସେ । ଏହାର ଆସିବା ବେଳ ଠିକ୍ ଅଗିରା ପୁନେଇର ଆଗେ ଆଗେ ବା ପଛେ ପଛେ ।

ମୁଁ ଯେତେବେଳେ ଅବସର ନେଇନଥିଲି ଯାଜପୁର ରୋଡ ଏନ୍.ସି. ହାଇସ୍କୁଲକୁ ଯିବା ବାଟରେ ବସନ୍ତକୁ ଭଲ ଭାବରେ ବାଟରେ ଭେଟୁଥିଲି । କାରଣ ମୋ ଯିବା ବାଟ ରେଳ ଲାଇନ୍ କଡେ କଡେ ପ୍ରାୟ ଏକ କିଲୋମିଟର ବ୍ୟାପୀ ପଳାସ ଗଛର ଧାଡି । ବସନ୍ତ ଆସିବା ମାତ୍ରେ ସେଥିରେ ଫୁଲ ଆଉ ଢଳି ଲଦି ହୋଇଯାଏ । ରାସ୍ତାରେ ପଳାସ ଫୁଲ ପାଖୁଡା ବିଛେଇ ହୋଇ ଗୋଟିଏ ସୁନ୍ଦର ଗାଲିଚା ପଡିଲା ପରି ଜଣାଯାଏ ।

ଏବେ ଅବଶ୍ୟ ମୋ ବାଡିରେ ଆମ୍ବ ଗଛ ନାହିଁ । ମରିଗଲାଣି । ଗାଁରୁ ତୋଟାମାନବି ଲୋପ ହେଲାଣି । ଏଣୁ ଆମ୍ବ ବଉଳର ବାସ୍ନା କିମ୍ବା ଆମ୍ବ ଡାଳ କଅଁଳ ପତ୍ର ଗହଳରେ କୋଇଲିର କୁହୁ ଆଉ ଶୁଭୁନି । କିନ୍ତୁ ମୋ ବାଡିରେ ଥିବା ମନ୍ଦାର ଆଉ ଅଶୋକ ଗଛରେ ଫୁଲ ଭର୍ତ୍ତି ହୋଇଗଲେ ମୁଁ ଜାଣେ ବସନ୍ତ ଆସିଗଲା । ଏବେ ଅଗି ପୁନେଇଁ । ପରେ ପରେ ହେବ ଜାଗର ତା ପନ୍ଦର ଦିନେ ଦୋଳ ପୁନେଇଁ ।

ଦୋଳ ପୁନେଇଁ ଆଗଦିନ ଆମ ଗାଁ ମେଇଣ । ରାତିସାରା ବିମାନ ସାମ୍ନାରେ ଘୋଡା ନାଚ, ଭାଲୁନାଚ, ଷଣ୍ଢ ଲଢେଇ ସାଂଗକୁ କେଳା-କେଳୁଣୀ ନାଚ ଦେଖୁ । ମିଛ ବରକନ୍ୟାଙ୍କ ମିଛି ମିଛିକା ବାହାଘର ଦୃଶ୍ୟ ଏବେ ମନେପଡୁଛି । ଅବଶ୍ୟ ଯୁଗ ବଦଳିବା ସାଂଗକୁ ମେଇଣ(ହୋଲି) ଧାରା ବଦଳିଗଲାଣି । ଏବେ ଆତସବାଜି ପ୍ରତିଯୋଗୀତା, ବିଦ୍ୟୁତ ଆଲୋକର ଚମତ୍କାରିତା ସାଙ୍ଗକୁ ବିକୃତ ଅରୁଚିକର କାନଫଟା ସଂଗୀତ ସାଙ୍ଗକୁ ମଦ ଖାଇ ମାତାଲ ହୋଇ ବାଡିଖେଳରେ ଉଦ୍ଭଟ ଦୃଶ୍ୟ ଦେଖିବାକୁ ମିଳୁଛି ।

ଆମ ଗାଁରେ ରଂଗ ଖେଳ ଆଉ ବିଶେଷ ନାହିଁ । ପୂର୍ଣ୍ଣମୀ ଦିନ ମାରୁଆଡି ସଂପ୍ରଦାୟର ଅବିର ଖେଳ ହୁଏ । ତାପରଦିନ ରଂଗ ଖେଳର ଆମ ଗାଁରେ ଏକ ପରଂପରା ଥିଲା । ଦିନସାରା , ରଂଗ ଖେଳି ଅପରାହ୍ନରେ ଗାଧୁଆ ପାଧୁଆ ସାରି ଭୋଜିଖିଆ ଯାଉଥିଲା । ଏବେ ସେ ବେଳ ଆଉ ନାହିଁ । ମନେପଡୁଛି ସେବର୍ଷର କଥା । ମୋ ପୁଅକୁ ସେତେବେଳେ ୨/୩ବର୍ଷ ହୋଇଥାଏ । ( ଏବେ ତା ପୁଅକୁ ୧୦ ବର୍ଷ) ଆମ ଗାଁର ଥାନାବାବୁ , ବିଡିଓ , ପଶୁ ଡାକ୍ତର ସମେତ ଅନେକ ଛୋଟ ବଡ କର୍ମଚାରୀ ରଂଗ ଖେଳିବାକୁ ଆସି ଆମ ଘରେ ହାଜର । ମୋତେ ଥଣ୍ଡା ଆଉ ସାମାନ୍ୟ ଜର ଥିବାରୁ ମୁଁ ଘର କୋଣରେ ଲୁଚିଥାଏ । ହେଲେ ମୋତେ ଖୋଜିପାଇବାଟା କଷ୍ଟ ହେଲାନି । ଧାଁ ଧପଡ ଭିତରେ ରଂଗ ବୋଳାବୋଳି ଗହଳ ଚହଳରେ ମୋ ପୁଅଟା କାହାର ଜଣକର

ଠେଲାପେଲାରେ ତଳେ ପଡିଗଲା । ତା ମୁଣ୍ଡଟା ଖୁଣ୍ଟରେ ବାଜି ଫୁଲିଗଲା । ସେ ଖୁବ୍ ଜୋର୍‌ରେ କାନ୍ଦିଲା । ତା ମା ମଧ୍ୟ ମନ ଦୁଃଖରେ ଗୁଡେ ବକର ବକର ହେଲା । ମୁଁ ପରିସ୍ଥିତିଟାକୁ ହାଲ୍‌କା କରିବା ପାଇଁ ରଂଗ ଖେଳିବାକୁ ବାହାରିଲି ଜର ଦେହରେ । ବେଶ କିଛି ସମୟ ଯାଏ ରଂଗ ଖେଳରେ ମାତି ଘରକୁ ଫେରିଲି । ହେଲେ ଦେହ ସାରା କଳା ନାଲି, ନେଳି ରଂଗର ପଟୁଆରରେ ମୋତେ ଆଉ ମୁଁ ଚିହ୍ନିପାରୁନଥାଏ । ମୋ କୁନି ପୁଅ ମୋତେ ଚିହ୍ନିପାରିଲାନି । ଓଲଟି ତା ଗୁଲୁଗୁଲିଆ ଦରୋଟି ଭାଷାରେ କାନ୍ଦି କାନ୍ଦି କହୁଥାଏ ମୋ ବାପା କାହିଁ -ମୋ ବାପା କୁଆଡେ ଗଲେ ।

ତାପରେ ସାବୁନ୍ ଲଗେଇ ବହୁ କଷ୍ଟରେ ମୁହଁରୁ ଏବଂ ଦେହରୁ ଷାଠିଏ ସତୁରି ଭାଗ,ରଂଗ ଛଡେଇ ଦେଲେବି କୁନିପୁଅ ମୋତେ ତା ବାପା ବୋଲି ଗ୍ରହଣ କରିବାକୁ ଆଦୌ ପ୍ରସ୍ତୁତ ନଥାଏ । ଆଜି ଗାଆଁଦାଣ୍ଡରେ ପିଲାମାନେ କାଁ-ଭାଁ ରଂଗ ଖେଳୁଥିବା ଦେଖି ମୋର ସେଇ ମୁରୁଣା ସ୍ମୃତି ଛାଆଁକୁ ଛାଆଁ ମନକୁ ଚାଲିଆସୁଛି ହେଲେ ରଂଗ ପିଚକାରି ଧରି ଧାଇଁଯିବା ପରି ମାନସିକତା ନାହିଁ । ତଥାପି ମନଟା କେମିତି ଥାମ ଆଗପରି କୁତୁକୁତୁ ହୋଇଯାଉଛିମ ।

ଖେଳିବା ରଂଗ ହୋଲି
ଆସିଲା ବୋଲି ହୋଲି
ପଳାଶ ହସେ କାଞ୍ଚନ ହସେ
ବଉଳବାସେ ଦିଗ ଚହଟେ
ମନ୍ଦାର ଖେଳେ ଦୋଳି
ଆସିଲା ବୋଲି ହୋଲି
ପତରଝଡେ ଅବିର ଉଡେ
ମାରିବା ପିଚକାରୀ
ଖେଳିବା ଆସ ହୋରି ।
ଗାଆଁ ଦାଣ୍ଡରେ ମେଲଣ ଯାତ
ଷଣ୍ଢ ଲଢେଇ ଭାଲୁର ନାଚ
ଦେଖିବା ମନ ଭରି
ଖେଳିବା ଆସ ହୋରି ।

# ସରକାର ଚାହାନ୍ତୁ ନଚାହାନ୍ତୁ ସାହିତ୍ୟ ତା ବାଟରେ ଚାଲିବ

**ଗୀତିକାର ନନ୍ଦକିଶୋର ସିଂହଙ୍କୁ ତାଙ୍କ କୋରାଇ(କଟକ ଜିଲ୍ଲା) ବାସ ଭବନରେ ସାକ୍ଷାତ କରିଥିଲେ କୃଷ୍ଣ ଚନ୍ଦ୍ର ସାମଲ ।**

ପ୍ର : ଆପଣଙ୍କ କୋରେଇ ଗାଆଁ ମୁସଲମାନ ବହୁଳ ଅଞ୍ଚଳ ନିଶ୍ଚୟ......

ଉ : ହଁ, ଆମମାନଙ୍କ ସଂପର୍କ ଖୁବ୍ ଉତ୍ତମ । ଆମର ମେଳା ହେଲେ ସେମାନେ ଆସନ୍ତି ଏବଂ ତାଙ୍କର ବିଭାଘରକୁ ଆମେ ଯାଉ । ଏଇତ ଦେଖିଲେ ଟି.ଭିରେ ମହାଭାରତ ଚାଲୁଥିଲା ଆଉ ସେମାନେ ଆମ ଘରେ ଟି.ଭି ଦେଖୁଥିଲେ ।

ପ୍ର : ଗୀତିକବିତା ପ୍ରତି ଆପଣଙ୍କର ଆଗ୍ରହ ହେଲା କାହିଁକି ?

ଉ : ମୋତେ ଏବେ ୪୭ ବର୍ଷ । ୧୯୫୦ ମସିହାରେ ମୁଁ ଆମ ଗାଁ ମି.ଇ ସ୍କୁଲରେ ପଢୁଥିବା ବେଳେ ଆମ ସ୍କୁଲରେ ପ୍ରତି ଶନିବାର ଦିନ ଡିବେଟ୍ ସଂଗୀତ ଓ ଢଗଢମାଳି ଆଦି ପ୍ରତିଯୋଗିତା ହେଉଥିଲା । ଆମ ସ୍କୁଲର ଶିକ୍ଷକ ଥିଲେ ଶ୍ୟାମ ସୁନ୍ଦର ପାତ୍ର । ସେ ଏବେ ବାଲେଶ୍ବରର ଖଇରା ହାଇସ୍କୁଲରେ ଅଛନ୍ତି । ସେ ବାସ୍ତବିକ ମୋତେ ଏ ଦିଗରେ ପ୍ରେରଣା ଦେଇଥିଲେ ।

ପ୍ରଃ ଆଜିକାଲି ଚାରିଆଡେ ଧରାଧରି । ଆପଣ ଧରାଧରି କରି ସେ ସମୟରେ ରେଡିଓରେ ସୁଯୋଗ ପାଇଲେ ନା ଆଉକିଛି ?

ଉ : ରେଡିଓରେ ମୋ ଗୀତ ବୋଲାହେଉ, ଏହା ପିଲାବେଳୁ ମୋର ଏକ ଝୁଙ୍କ ଥିଲା । ମୁଁ ତିନି ଚାରିଥର ଗୀତ ପଠାଇବା ପରେ ତାହା ସ୍ଵୀକୃତ ହେଲାନାହିଁ । ଶୁଣିଲି ୫୦ଟି ଗୀତ ପଠାଇଲେ ତାହା ବିଚାରକୁ ନିଆଯାଏ । ଉଦ୍ୟମ ଅବ୍ୟାହତ ରଖିଲି । ସଂଗୀତଜ୍ଞ ବାଳକୃଷ୍ଣ ଦାଶ ମୋତେ ଲେଖିଲେ- ଆପଣଙ୍କ ଗୀତ ଖୁବ୍ ଭଲ ହୋଇଛି । ଆପଣ ସବୁବେଳେ ପଠାନ୍ତୁ ମୁଁ ଆପଣଙ୍କ ଗୀତ ଗାଇବି । ଏବେ ଓଡିଶାରେ ଜଣା ଅଜଣା ସବୁ ଗାୟକ ମୋ ଗୀତ ଗାଉଛନ୍ତି ।

ପ୍ର : ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ ମୋ ପ୍ରିୟାର ଗାଁ ଆଡେ-ଆପଣଙ୍କ ଏହି ଗୀତଟିର ଆଦର ଏବେ ମଧ୍ୟ ରହିଛି । କେମିତି କେଉଁ ପରିବେଶରେ ଏ ଗୀତଟି ଲେଖିଲେ ?

ଉ : ରାଜକନିକା ସ୍କୁଲରେ ଶିକ୍ଷକତା କରୁଥାଏ । ମୁଁ ରହୁଥିବା ଘରେ ଝରକାରେ କବାଟ ନଥିଲା । ଦୁଆର ମୁହଁ ଏକ ଅଖା ପାଲରେ ଢଙ୍କା ହୋଇଥିଲା । ସକାଳୁ

ସକାଳୁ ସୂର୍ଯ୍ୟର ପହିଲି କୀରଣ ଝର୍କା ଫାଙ୍କ ଦେଇ ମୋ ଉପରେ ପଡିଲା । ସେଇଠୁ ଏ ଗୀତଟିର ଜନ୍ମ ।

ପ୍ର : ଛାପା ଅକ୍ଷରରେ ଆପଣ କିପରି ସାହିତ୍ୟ ଜଗତକୁ ଆସିଲେ ?

ଉ: ମୁଁ ସପ୍ତମ ଶ୍ରେଣୀରେ ପଢୁଥାଏ । ପ୍ରଜାତନ୍ତ୍ରର ମୀନାବଜାରରେ ମୋର ଏକ କବିତା ବାହାରିଲା । ସେତେବେଳେ ଏହାର ସଂପାଦନା ଦାଇତ୍ୱରେ ଥାନ୍ତି, ରାମ ପ୍ରସାଦ ମହାନ୍ତି ସେ ମୋତେ ଉତ୍ସାହ ପ୍ରଦାନ କରି ଚିଠିଲେଖିଲେ । କହିବାକୁ ଗଲେ ଏହିଠାରୁ ହିଁ ମୋର ମୂଳଦୂଆ ପଡିଲା । ଝଂକାରରେ ମଧ୍ୟ ମୋର ଗୀତି କବିତା ପ୍ରକାଶନ ପାଇଁ ଡକ୍ଟର ମହତାବଙ୍କ ପ୍ରେରଣା ପାଇଛି । ଝଙ୍କାରରେ ପ୍ରକାଶିତ ମୁଁ ଯେ ଆଲୋକର ଏକ ଝଡ... । ଗୀତି କବିତାଟି ଶାନ୍ତନୁ ମହାପାତ୍ରଙ୍କର ସ୍ୱର ସଂଯୋଜନାରେ ରେଡିଓରେ 'ସଜଫୁଲ' କାର୍ଯ୍ୟକ୍ରମରେ ଭୀକାରିବନ୍ଧଙ୍କ କଣ୍ଠରେ ଏହି ଗୀତଟି ଲକ୍ଷ ଲକ୍ଷ ଶ୍ରୋତାଙ୍କ ମନମୁଗ୍ଧ କରିଛି ।

ପ୍ର: ଶିଶୁ ସାହିତ୍ୟ ଉପରେ ଆପଣଙ୍କର ଏତେ ଝୁଙ୍କ୍ କାହିଁକି ?

ଉ: ଶିଶୁ ମାନଙ୍କ ପାଇଁ ଲେଖି ମୁଁ ଖୁବ୍ ଆନନ୍ଦ ପାଏ । ମୋ ଜନ୍ମର ୮ବର୍ଷ ବେଳେ ବାପାଙ୍କ ବିୟୋଗ ହେଲା । ଦାଦା ମୋତେ ମଣିଷ କଲେ । ଯେ କୌଣସି ଶିଶୁକୁ ଦେଖିଲେ ମୁଁ ଖୁସିରେ ଆତ୍ମହରା ହୋଇଯାଏ । ଏଣୁ ମୋର ବେଶି ଲେଖା ଶିଶୁଙ୍କ ପାଇଁ । ଶିଶୁ ମାନଙ୍କ ପାଇଁ ମୋର ପ୍ରକାଶିତ ବହିଗୁଡିକ ହେଲା ରଙ୍ଗ ବେରଙ୍ଗ, ସାବାସ ଟୁଟୁ, ମଜା କାହାଣୀ, ଆମ ଗାଆଁ ହାଟ, ଫେରିବାଲା ଆହୁରି ଅନେକ । ଏହି ଗୁଡିକ ଶିଶୁ ମାନଙ୍କ ପାଇଁ ରାଜ୍ୟ ଶିକ୍ଷା ବିଜ୍ଞାନ ଗବେଷଣା ପରିଷଦ ଦ୍ୱାରା ସ୍ୱୀକୃତି ପାଇଛି ।

ପ୍ର : ବୟସ୍କ ମାନଙ୍କ ପାଇଁ ?

ଉ : ବୟସ୍କ ନବସ୍ୱାକ୍ଷରକାରୀମାନଙ୍କ ପାଇଁ ଢଗଢମାଳିଆରେ, ଚାଷବାସ କଥା, ନୂଆ ସକାଳ, ସବୁ ମଣିଷ ସମାନ, ସକଳ ଘଟେ ନାରାୟଣ ଆଦି ବହୁ ବହି ମୋର ପ୍ରୌଢଶିକ୍ଷାରେ ପଢାଯାଉଛି ।

ପ୍ର: ଆପଣଙ୍କର ରେଡିଓ ଓ ଟିଭି ନାଟକ ତଥା ଅନୁବାଦ ସାହିତ୍ୟ ସଂପର୍କରେ କିଛି କୁହନ୍ତୁ ।

ଉ : ଉଲୁପି, ମାନସୀଗବେଷଣାଗାର, ମୀନାର ମମି, ଗୀତିନାଟ୍ୟ ନାରଦ ଉବାଚ ଆଦି ୩୦ରୁ ୪୦ଟି ନାଟକ ଆକାଶବାଣୀରୁ ଏବଂ ଟିଭିରେ ବେଙ୍ଗ କହେ ବେଙ୍ଗୁଲୀଲୋ ଆଦି ପ୍ରଚାରିତ ଓ ପ୍ରସାରିତ । ବଂକିମଚନ୍ଦ୍ରଙ୍କର ମୃଣାଳିନୀ, ଇନ୍ଦିରା ଓ ଯୁଗଳ ଅଙ୍ଗୁରୀୟ, କୃଷ୍ଣକାନ୍ତଙ୍କ ଉଇଲମୁଁ ଓଡିଆରେ ଅନୁବାଦ କରିଛି । ଇଂରାଜୀ ସାହିତ୍ୟରୁ କିଶୋର

ମାନଙ୍କ ପାଇଁ ସୁଇସ୍ ରବିନ୍‌ସନ, ଏମିତି ଅନେକ ଅନୁବାଦ କରିଛି । ଏବେବି ମୋ ପାଖରେ ୪୦ ଖଣ୍ଡ ବହି ପ୍ରକାଶ ଅପେକ୍ଷାରେ ।

ପ୍ର : ଆପଣଙ୍କ ପରିବାରରେ ଆଉ କାହାର ସାହିତ୍ୟିକ ପ୍ରତିଭା ଥିଲାକି ?

ଉ : ମୋ ବୁଢ଼ାବାପା କାଳି ସିଂହ ଜଣେ ଭଲ ବେହେଲାବାଦକ ଥିଲେ । ଆମର ଜମିଦାର ପରିବାର । ଶେଷରେ ଏହି ବେହେଲା ବଜେଇ ଆମ ଆମ ଜମି ବାଡି ନିଲାମ ହୋଇଗଲା । ବୁଢ଼ାବାପା ସୁକିନ୍ଦା ରାଜ ଦରବାରରେ ବେହେଲା ବଜାଉଥିଲେ । ରାଜା ଖୁସିହୋଇ ତାଙ୍କ ଜମିଦାରୀରେ ଥିବା ଆଜିର ଯାଜପୁର ରୋଡର 'ଧବଳଗିରି' ଅଞ୍ଚଳରୁ ୨୦ ଏକର ଜମି ତାଙ୍କୁ ଦେଇଥିଲେ । କଳା ସଂଗୀତ ପ୍ରତି ଆମ ଘରେ ଆଦର ଥିଲା । ମୋ ପୋଷ୍ୟ ବାପା ନବକିଶୋର ସିଂହ କୋରେଇ ଅଞ୍ଚଳର ଜଣେ ଜଣାଶୁଣା କଂଗ୍ରେସ କର୍ମୀ ଓ ସମାଜସେବୀ ଥିଲେ ।

ପ୍ରଃ ଲେଖାର ମୂଲ୍ୟ ତ କିଏ ଦେଇ ପାରେନା, କିନ୍ତୁ କଣ ପାଇଲେ ଲେଖକ ଖୁସିହୁଏ ?

ଉ : ଖଣ୍ଡିଏ ଚିଠି । ବାସ୍ ତାକୁ ସିଡି କରି ଉପରକୁ ଉଠିବା ପାଇଁ ତାହାହିଁ ଯଥେଷ୍ଟ । ଏହା ଜଣେ ଲେଖକ ପାଇଁ କେତେ ମହାର୍ଘ ତାହା ଚିନ୍ତା କରିହେବ ନାହିଁ ।

ପ୍ର : କୁହାଯାଉଛି ସରକାରୀ ସ୍ତରରେ ପ୍ରୋତ୍ସାହନ ଅଭାବରେ ସାହିତ୍ୟ ମରିଯାଉଛି । ଆପଣଙ୍କର ମତ ?

ଉ : ବରାଦ ଦେଇ ସାହିତ୍ୟ ହୁଏନା । ଏହା ଏକ ସ୍ୱତଃସ୍ଫୂର୍ତ୍ତ ଧାରା । ସରକାର ଚାହାନ୍ତୁ ନଚାହାନ୍ତୁ ସାହିତ୍ୟ ତା' ବାଟରେ ଚାଲିବ । ତେଣୁ ଏଠାରେ ସରକାରୀ ପ୍ରୋତ୍ସାହନ ବା ନିରୁତ୍ସାହ କରିବାର ପ୍ରଶ୍ନ ଉଠୁନାହିଁ ।

ପ୍ର : ଆପଣ ପ୍ରଥମେ ରେଡିଓ ଗୀତିକାର ହେବାବେଳେ କେତେ କଣ ପାଉଥିଲେ ?

ଉ : ଗୀତ ଗୋଟିକେ ଚାରଣା । ଏବେ ତାହା ଚାରିଟଙ୍କା ହେଲାଣି । ନାଟକ ପାଇଁ ଯାହା ପଇସା ଦିଆଯାଉଛି । ଗୀତ ପାଇଁ ନାହିଁ, ସେଥିରେ ପୁଣି ଏବେ କଣ ଗୋଟାଏ ଶ୍ରେଣୀ ବିଭାଗ କଲେଣି । ଟଙ୍କେ ଦିଟଙ୍କା ଓ ଚାରିଟଙ୍କା । ଗୀତକୁ ଦେଖି । ମୋ ମତରେ ଗୀତରେ ଶ୍ରେଣୀ ବିଭାଗ ରହିବା ଉଚିତ ନୁହେଁ । କାରଣ କେହିବି ସଂଗୀତର ମୂଲ୍ୟ ଦେଇପାରେନା । ତାପରେ ବି ରେଡିଓ ଷ୍ଟେସନରେ ଅନେକ ସମୟରେ ଲଗ୍‌ବୁକ୍ ମେଣ୍ଟେନ କରିବାର ଅବହେଳାରୁ ପୁନଃ ପ୍ରଚାରିତ ଗୀତ ପାଇଁ ପଇସା ମିଳେନାହିଁ । ସପ୍ତାହର କାର୍ଯ୍ୟକ୍ରମ ପୁଣି କେଉଁ ସମୟରେ ଆମ ଗୀତ ବାଜିଥିଲା ତାହା ଲେଖିପଠାଇଲେ ସଂଶୋଧିତ ହୋଇ ପଇସା ମିଳେ ।

ପ୍ର : ସରକାର ଆପଣମାନଙ୍କୁ କେଉଁ ପ୍ରକାର ସାହାଯ୍ୟ କରିପାରିବେ ବୋଲି

ଭାବୁଛନ୍ତି ?

ଉ : ପ୍ରକାଶକଙ୍କ ହାତରୁ ଆମକୁ ରକ୍ଷା କରନ୍ତୁ । ମୋର ଅନେକ ଛାପା ବହି ମୋ ନିକଟରେ ବି ନାହିଁ । ପ୍ରକାଶକଙ୍କ ହାତରୁ ବଂଚାଇ ସରକାର ଅନ୍ତତଃ ସିଧାସଳଖ ଆମକୁ ରାଜଭାଗ ପ୍ରାପ୍ୟ ଦିଅନ୍ତୁ । ଲେଖକ ମାନେ ବି ମଣିଷ । ତାଙ୍କର ବି ପରିବାର ରହିଛି । ତେଲ ଲୁଣ ସଂସାରରେ ପଇସା କାହାର ଦରକାର ନାହିଁ ?

ପ୍ର : ଲେଖାଲେଖି ଆପଣଙ୍କ ପାରିବାରିକ ଜୀବନରେ କିଛି ପ୍ରତିବନ୍ଧକ ସୃଷ୍ଟି କରେକି ?

ଉ : ସ୍ତ୍ରୀ ସୁରବାଳାଙ୍କ ସହ ସନ୍ଦେହର ଝଡ ଭିତରେ ଝଗଡା ହୋଇଛି , ମୁହଁ ଫୁଲା ହୋଇଛି । କିନ୍ତୁ ତାପରେ ସବୁ ଶେଷ । ପୁଅ ଅଶୋକ ଓ ଝିଅ ପ୍ରଜ୍ଞାମୟୀ ସୁଜାତା ଏମାନଙ୍କୁ ନେଇ ମୋ ସଂସାର । ଠିକ୍ ଚାଲିଛି, ଚଳେଇ ନେଲେ ହେଲା ।

ପ୍ର : କୋରେଇ ଭଳି ଏକ ମଫସଲରେ ରହିଥିବାରୁ ସହର ଲୋକଙ୍କ ପରି ଆଉ କିଛି ଅଧିକ ସୁଯୋଗ ପାଇବାରୁ ବଂଚିତ ହୋଇଛନ୍ତି ବୋଲି ଅନୁଭବ କରୁଛନ୍ତି କି ?

ଉ : ନା, ସେମିତି କିଛି ନୁହେଁ । ସହରରେ ରହିଲେ ଅବଶ୍ୟ ଅଧିକ କିଛି ସୁଯୋଗ ମିଳନ୍ତା କିନ୍ତୁ ସବୁ ସହରକୁ ପଳାଇଲେ ଗାଆଁରେ ରହିବ କିଏ ? ତାଛଡା ଭିଟାମାଟି ପ୍ରତି ତ ପୁଣି ଗୋଟାଏ ମମତା ଅଛି ।

(ପ୍ରଜାତନ୍ତ୍ର-ସାପ୍ତାହିକୀ-୧୯-୨୮ ସେପ୍ଟେମ୍ବର ୧୯୯୯)

## ' ମୁଁ ବରାଦ ଦିଆ ଗୀତିକାର ନୁହେଁ '

ଗୀତିକାର ନନ୍ଦକିଶୋର ସିଂହଙ୍କୁ "ସିନେ ସମ୍ବାଦ" ପକ୍ଷରୁ ସାକ୍ଷାତ କରିଥିଲେ ପ୍ରଭାତ ସିହ୍ନା

ଅର୍ଦ୍ଧଶତକର ମଣିଷ ସିଏ । ଦେଖିବାକୁ ନିହାତି ମାମୁଲି ଲୋକଟେ ପରି । ଗାଆଁ ଠାରୁ ଅଦୂର ସହରକୁ ଚେତେଇ ଯାଇଥିବା ମୋରମ ରାସ୍ତାରେ ଝଙ୍କ୍ ଲଗା ଦଦରା ସାଇକେଲଟି ନିତି ନିତି ଯାହାଙ୍କୁ ବୋହିନିଏ କର୍ମ ସଂସ୍ଥାନକୁ ସିଏ ଆଉ କେହି ନୁହେଁ "ସୁଷମା ଗୋ ତୁମ ଅଂଗେ ଅଂଗେ ଭରା ମଧୁଜୋଛନାର ଗୀତି କବି "ବଡ ଦାଣ୍ଡେ ଚାଲେ ତବ ନନ୍ଦୀଘୋଷ ରଥ"ର ସ୍ରଷ୍ଟା ଏବର ପଲ୍ଲୀ ସହରର ଦରଦୀ କବି ନନ୍ଦକିଶୋର ସିଂହ.......

**ସିନେ ସମ୍ବାଦ :**

ବର୍ତ୍ତମାନର ଚଳଚ୍ଚିତ୍ର ଏବଂ କମର୍ସିଆଲ ଗୀତ ଦୁନିଆରେ ଆପଣଙ୍କ କଲମ ପ୍ରାୟ ଧିମେଇ ଯାଇଛି । ଏହାର କାରଣ କଣ ତା ଆପଣଙ୍କ ଗୀତରେ ଆଧୁନିକତାର ଅଭାବ ନା ଆଉ କିଛି ..?

**ନ.ସିଂ. :**

ପ୍ରକୃତ ପକ୍ଷେ ମଡର୍ଣ୍ଣିଜିମ୍‌ର ଅଭାବ ନାହିଁ । ବେତାର ଓ ଦୂରଦର୍ଶନରୁ ଶ୍ରୋତାଏ ଜାଣିପାରୁଥିବେ । ମୋ ସହିତ ପ୍ରଯୋଜକ ନିର୍ଦ୍ଦେଶକଙ୍କ ସୁସଂପର୍କକୁ ମଡର୍ଣ୍ଣିଜିମ୍ କହିଲେ ଠିକ୍ ହେବ । ପଚିଶ ତିରିଶ ବର୍ଷ ହେବ ଗୀତ ଲେଖି ଆସୁଛି(ଉବୋଚ୍ଛ୍ୱାସରେ) । ଏବେ ପ୍ରିୟାପ୍ରୀତିକରି ଗୀତ ଲେଖିବାକୁ ସୁଖ ଲାଗୁନି । ତାପରେ ତରବରିଆ ଲେଖାକୁ ମୁଁ ସମୟ ଦେଇ ପାରୁନି । କହିବାକୁ ଗଲେ ନିର୍ଦ୍ଦିଷ୍ଟ ସମୟରେ ସୀମାରେଖା ମୋ ଭାବକୁ ସୀମିତ କରିଦେଇଛି । କୌଣସି ଚାପରେ କିଛି ଲେଖିହୁଏନି ।

**ସିନେ ସମ୍ବାଦ :**

ମୋ ମତରେ ଚଳଚ୍ଚିତ୍ରରେ ଗୀତିକାର ମାନଙ୍କୁ ଟୁଥ୍‌ପେଷ୍ଟ ଲିରିସିଷ୍ଟ କହିଲେ ଭୁଲ ହେବନି । କାରଣ ଏହି ବରାଦଦିଆ ଗୀତିକାର ମାନଙ୍କ ଗୀତରେ ତାଙ୍କର ନିଜସ୍ୱ କୌଣସି ମୌଳିକ 'ମେସେଜ୍' ନଥାଏ । ଯାହା କିଛି ଥାଏ ତାହା ସ୍ୱୟଂ ନିର୍ଦ୍ଦେଶକଙ୍କର । କେତେକ ସ୍ଥଳେ ସଂଗୀତ ନିର୍ଦ୍ଦେଶକ ମଧ୍ୟ ସୀମିତ କରିଦେଇଥାନ୍ତି । ଏ ସଂପର୍କରେ କଣ କହିବେ ?

**ନ.ସିଂ. :**

ସଂପୂର୍ଣ୍ଣ ସତକଥା । ଗୀତିକାର ନିହାତି ପ୍ରଭାବଶାଳୀ ହୋଇନଥିଲେ ସ୍ୱାଧିନତା ରକ୍ଷା କରି ଗୀତ ଲେଖିବା ସଂଭବପର ନୁହେଁ । ତା ନହେଲେ ଗୀତିକାରଙ୍କୁ ତୋଷାମଦ କରିବାକୁ ପଡିଥାଏ । "ମୁଁ କିନ୍ତୁ ବରାଦଦିଆ ଗୀତିକାର ନୁହେଁ "। ମୁଁ ଲେଖିଥିବା 'ଧରିତ୍ରୀ', 'ଅକ୍ଷୀତୃତୀୟା','ଏଇମାଟି(ଅସମାପ୍ତ) ' 'ବନ୍ଧୁ ମହାନ୍ତି'(ଅନ୍ୟ ନାମରେ ଶେଷ ମୁହୂର୍ତ୍ତରେ ପରିବେଷିତ ) ଇତ୍ୟାଦିରେ ମୋ ରେଡିମେଡ୍ ଗୀତ ଉପରେ ସ୍ୱର ଦିଆଯାଇଛି ।

**ସିନେ ସମ୍ବାଦ :**

ଚଳଚ୍ଚିତ୍ରର ସବୁ ବିଭାଗରେ ଏବେ ପ୍ରତିଦ୍ୱନ୍ଦିତା ଦେଖିବାକୁ ମିଳେ । ମାନେ ଗୁଣ ଅପେକ୍ଷା ସଂଖ୍ୟାର ଭୂମିକା ମୁଖ୍ୟ ଆପଣ କଣ ଏଥିରେ ଦ୍ୱିମତ ହେବେ ....?

**ନ.ସିଂ. :**

ଏଇଟା ତ ନିଶ୍ଚିତ କଥା । ଦୌଡା ଦୌଡି ଧରାଧରି କରିବା ଏବର ଯୁଗଧର୍ମ ହୋଇଗଲାଣି । ତେବେ ଏ ଲାଇନ୍‌ରେ ମୁଁ ଜଣେ ପଛୁଆ ସୈନିକ ।

ସିନେ ସମ୍ବାଦ :

ତାହେଲେ ବେତାର ଜଗତରେ କେମିତି ସ୍ୱୀକୃତି ପାଇଲେ ?

ନ.ସିଂ. :

ରେଡିଓ ଶୁଣି ଶୁଣି ...ମୋ ପରିବାରରେ ଗୀତର ସଂପର୍କ ରହିଛି । ଏଥିପାଇଁ କୌଣସି ବ୍ୟକ୍ତିବିଶେଷ ମତେ ସାହାଯ୍ୟ କରିନାହାନ୍ତି ।

ସିନେ ସମ୍ବାଦ :

ଶୁଣାଯାଏ ଆକାଶବାଣୀ କଟକର ସଜଫୁଲ ତଥା ବିଶେଷ ସଂଗୀତ କାର୍ଯ୍ୟକ୍ରମରେ ଗୀତ ଲେଖିବା ସକାଶେ ଆପଣ ଲବି ଚଲେଇ ଥାନ୍ତି ସଂପୃକ୍ତ ମହଲରେ...ଏହା କେତେ ସତ ?

ନ.ସିଂ. :

ସୁସଂପର୍କ ଥାଇପାରେ । ତାକୁ ଲବି କହିଲେ କେମିତି ହେବ ? ତାଛଡା ଶ୍ରୋତାମାନେ ମଧ ଏହାର ବିଚାରକ । ସେମାନେ ବହୁତ ପ୍ରଶଂସା କରି ଚିଠିଲେଖିଥାନ୍ତି । ସଜଫୁଲରେ ମୁଁ ୮/୧୦ ଥର ଗୀତ ଲେଖିଛି । ମୋର ସାର୍ଥକତା ରହିଛି ।

ସିନେ ସମ୍ବାଦ :

ଏଯାବତ୍ କେତୋଟି ଓ କେଉଁ କେଉଁ ଚଳଚିତ୍ରରେ ଗୀତ ଲେଖିଛନ୍ତି ?

ନ.ସିଂ. :

ଧରିତ୍ରୀ ଓ ଅକ୍ଷୟତୃତୀୟା ରେ ଗୀତ ଲେଖିଛି । ବନ୍ଧୁ ମହାନ୍ତି ଚଳଚିତ୍ରରେ ଗୀତ ଲେଖିଆସିଥିଲି । ଶେଷରେ ତାହା ପରଦା ଉପରେ ଆଉ ଜଣକ ନାଆଁରେ ପ୍ରଚାରିତ ହୋଇଗଲା । ଗୌରୀ ଏବଂ କୃଷ୍ଣ ସୁଦାମାରେ ଅନୁବନ୍ଧିତ ହୋଇ ମଧ୍ୟ ଠିକ୍ ସମୟରେ, ପହଂଚି ପାରିଲିନାହିଁ । ଅର୍ଜୁନ ସାମଲଙ୍କ ସଂଗୀତ ନିର୍ଦ୍ଦେଶନାରେ"ଏଇମାଟି" ରେ ଗୀତ ଲେଖିଥିଲି । ବ୍ୟାଙ୍କ୍ ଲୋନ୍ ନପାଇ ବନ୍ଦ୍ ହୋଇଗଲା ଫିଲ୍ମଟି ।

ସିନେ ସମ୍ବାଦ :

ଏବେ ଚଳଚିତ୍ର ତଥା କମର୍ସିଆଲ ରେକର୍ଡ କ୍ଷେତ୍ରରେ ବ୍ଲୁ ବା ଉଗ୍ର ଆଧୁନିକ (ଯାହାକୁ କହିବା ଦ୍ୱିଅର୍ଥବୋଧକ) ଗୀତର ଚାହିଦା କିଛି କମ୍ ନାହିଁ । ଆପଣଙ୍କୁ ଏମିତି ଗୀତ ଲେଖିବାକୁ ଅଫର୍ ମିଳିଲେ ...

ନ.ସିଂ. :

ମୋର ତ କିଛି କରିବାର ନାହିଁ । ଭଗବାନ କରନ୍ତୁ ସେଭଳି ଅଫର୍ ମୋ ନିକଟକୁ ନଆସୁ । ମୁଁ ଏଭଳି ଗୀତ ଲେଖିବାକୁ ପ୍ରଲୁବ୍ଧ ନହୁଏ ।

ସିନେ ସମ୍ବାଦ :

ଅଶ୍ଳୀଳ ଗୀତର 'ୱାଇଡ୍ ମାର୍କେଟ' ମୂଳରେ କେଉଁ କାରଣ ରହିଛି ବୋଲି ଆପଣ

ଭାବନ୍ତି..?

ନ.ସିଂ. :

ଦେଖନ୍ତୁ ସଂଗୀତ ନିର୍ଦ୍ଦେଶକ କଣ୍ଠଶିଳ୍ପୀ ଏମାନେ ପରିବର୍ତ୍ତନ କରିପାରନ୍ତି । ଶ୍ରୋତାମାନେ କେବେ ଚାହାନ୍ତି ନାହିଁ ଆମେ ତାଙ୍କୁ ଶୁଣାଇବାରୁ ସେ ଶୁଣନ୍ତି । ଅଯଥା ଶ୍ରୋତାଙ୍କ ଦୋଷ ଦେଉ । ଦେଉଛ ତୋଳିଲେ ନାଁ..ବାଟରେ.. ବି ନାଁ ।

ସିନେ ସମ୍ବାଦ :

ଏଇ ଧରନ୍ତୁ ଆପଣ ଯଦି ପ୍ରଯୋଜକ ହୋଇଥାନ୍ତେ ..ଆପଣ କାହାକୁ ଗୀତିକାର ଏବଂ ସଂଗୀତ ନିର୍ଦ୍ଦେଶକ ଭାବରେ ଡାକନ୍ତେ ..?

ନ.ସିଂ. :

ଫିଲ୍ମ କରିବି ବୋଲି ଚିନ୍ତା କରିନି ।

ସିନେ ସମ୍ବାଦ :

ମୋ କଥା ଠିକ୍ ବୁଝିପାରିଲେନି ବୋଧେ ..?

ନ.ସିଂ. :

(ଚିନ୍ତି) ଓଃ ବୁଝିଲି । ଆପଣ କହିବାକୁ ଚାହାନ୍ତି କିଏ ଭଲ । ଗୀତ ଭିତରେ ଜୀବନାନନ୍ଦ ପାଣି ପୂର୍ବେ ଖୁବ୍ ଭଲ ଲେଖୁଥିଲେ । ଏବେ ସ୍ୱରୂପ ନାୟକ କିଛି ମନ୍ଦ ଲେଖୁନାହାନ୍ତି ଓ ସଂଗୀତ ନିର୍ଦ୍ଦେଶନା କ୍ଷେତ୍ରରେ ଓଡିଶାର ପାଣି ପବନକୁ ବାଦ୍ ଦେଇ ବାଳକୃଷ୍ଣ ଦାଶ କେବେ ସ୍ୱର ଦିଅନ୍ତି ନାହିଁ । ତାଙ୍କର କମର୍ସିଆଲ ସ୍ୱର 'ରଜନୀ ଗଜଗମନୀ ଶଂଖ ମହୁରୀ ଚିତ୍ରରେ' କେତେ ସୁନ୍ଦର ନହେଇଛି । ଆଉ ଏବେ ହସି- "ଦିଅର ଦିଅର ପକେଇଛ କେଉଁ ଗିଅର, ମୋ ତବଲାରେ ହାତ ମାରନା, ହାଉଲେ ହାଉଲେ ଦଉଥିବ, ଷଣ୍ଢବାବୁଙ୍କର, ଟକ୍କାରେ ଟକ୍କା"...ଛିଃ ମୁଁ ବି ଥରେ ଅକ୍ଷୟ ମହାନ୍ତିଙ୍କ କଣ୍ଠରେ ଲେଖିଦେଇଥିଲି "ସଂଗୀତରେ ଖୋଜିଦେ ମୋ ପାଇଁ ଶଶୁର ଘର" କମ୍ ସମାଲୋଚିତ ନହୋଇଛି ଶ୍ରୋତାଙ୍କ ଠାରୁ ।

ସିନେ ସମ୍ବାଦ :

ଆପଣଙ୍କ ମତରେ କେଉଁଗୁଡିକ ଆପଣଙ୍କ ଖୁବ୍ ପପୁଲାର୍ ଆଉ ମାଷ୍ଟର ପିସ୍ ଗୀତ ?

ନ.ସିଂ. :

ସୁଷମା ଗୋ...ତୁମ ଅଂଗେ ଅଂଗେ ଭରା ମଧୁଯୋଛନା..(କଣ୍ଠ-ରଘୁନାଥ ପାଣିଗ୍ରାହୀ) ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ ମୋ ପ୍ରିୟା ର ଗାଁ ଆଡେ (ଚିତ୍ତ ଜେନା), ବଡ ଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ, ମନ ବଡ ଦାଣ୍ଡେ ବାରେ ଆସ ଜଗନ୍ନାଥ (ଦିବାକର ମହାନ୍ତି), ମୁଁ ପୋଷିଲି ଶୁଆ ଶାରୀ ତୁ ପୋଷିଲୁ ଶାରୀ, ଆମ ଦୁହିଁଙ୍କର ସଖା ଏକଇ

ପଂକ୍ତୁରୀ (ଅକ୍ଷୟ ମହାନ୍ତି) ତୋ ଘରକୁ ଯିବା ବାଟ ଏତେ ଅଙ୍କା ବଙ୍କା ଲୋ..ଯାଉଁ ଯାଉଁ ହେଲି ବାଟବଣା..(ଅର୍ଜୁନ ସାମଲ), ପ୍ରେମିକା କହୁ ଛି ମୋତେ ଆଉ ନିଶ ରଖନା, ପ୍ରିୟା କହେ ନିଶ ବିନା ମୁହଁ ଭଲ ଦିଶେନା(ସିକନ୍ଦର ଆଲାମ), ଆଗେ ପଢୁଥିଲୁ ଉପନ୍ୟାସ ଗୋରୀ ଏବେ ଖୋଜିଲୁଣି ଭାଗବତ(ସିକନ୍ଦର ଆଲାମ) ନିତି ଯାଅ ଏଇବାଟେ ଏଇଠିତ ଦେଖାହୁଏ, କେଇପଦ କଥାହୁଏ କିଛି ତ ଅକୁହା ରହେ(ସିକ ନ୍ଦର ଆଲାମ) ।

**ସିନେ ସମ୍ବାଦ :**

ହଠାତ ସୂର୍ଯ୍ୟଙ୍କୁ ନିଜ ପ୍ରିୟା ପ୍ରତି ଦୁ ର୍ବଳ କରେଇ ଦେଲେ ଯେ...

**ନ.ସିଂ. :**

(ହସି) ରାଜ କନିକାରେ ଗୋଟେ କବାଟ ଝରକା ଓ ଛପର ଦଦରାଥିବା ଭାଂଗା ଘରେ ରହୁଥିଲି । ହଠାତ ସକାଳୁ ଆଖିଖୋଲି ଦେଖିଲି ସୂର୍ଯ୍ୟ ମୋ ରହୁଥିବା ଘରର ଚଟାଣ ଉପରେ ତେଡେଇ ପଡିଛି । ସେଇଠୁ ଏ ଗୀତର ଜନ୍ମ ।

**ସିନେ ସମ୍ବାଦ :**

ଅପେରା ଜଗତରେ ଆଉ ଜଣେ ନନ୍ଦକିଶୋର ସିଂହ ନାମଧାରୀ ଆକାଶବାଣୀ ସ୍ୱୀକୃତ ଗୀତିକାର ରହିଛନ୍ତି । ତାଙ୍କ ଗୀତ ଆପଣଙ୍କ ନାମରେ ବାଜୁଥିବାର ଅଭିଯୋଗ ହୁଏ । ଆପଣ କେବେ ରେଡିଓ କର୍ତ୍ତୃପକ୍ଷଙ୍କୁ ଜଣାଇଛନ୍ତି !

**ନ.ସିଂ. :**

ରେଡିଓରେ ଗୀତିକାର ନାମ ବିଭ୍ରାଟ ଦେଖାଦେବାରୁ ପ୍ରକୃତ ନାମଧାରୀ ସେହି ନନ୍ଦକିଶୋର ସିଂହ ତାଙ୍କ ନାମ ଆଗରେ ସାମନ୍ତ ଲଗେଇ ଦେଲେ । ଯେଉଁ ସମୟରେ ମୋ ଦୃଷ୍ଟିକୁ ଆସିଛି ରେଡିଓ କର୍ତ୍ତୃପକ୍ଷ ଙ୍କୁ ଜଣେଇ ଦେଇଛି ସଂଗେ ସଂଗେ । ଅନେକ ସମୟରେ ଏମିତି ବି ହୋଇଛି ମୋ ଗୀତ ନାରାୟଣ ପ୍ରସାଦ ସିଂ ଙ୍କ ନାମରେ ତାଙ୍କ ଗୀତକୁ ମୋ ନାମରେ ମଧ୍ୟ ବଜେଇଛନ୍ତି ।

**ସିନେ ସମ୍ବାଦ :**

ସଂପ୍ରତି ଓଡିଆ ଗୀତରେ 'ଗଜଲ ଆନ୍ଦୋଳନ'ଶ୍ରୋତାଙ୍କୁ କିଛି ଚେଞ୍ଜ୍ ଆଣିଦେଇଛିକି ?

**ନ.ସିଂ. :**

ନିଶ୍ଚିତ ଭାବରେ । ଗଜଲ ଯେ ହିନ୍ଦିରେ ଏକଚାଟିଆ ରଚନା ନୁହେଁ । ମୋର ବି ଗୋଟେ 'ଗୀତି ଓ ଗଜଲ' ନାମକ ବହି ପ୍ରକାଶିତ ହୋଇଛି । ସତାନବେ ଟି ଗୀତ ଅଛି ସେଥିରେ ।

**ସିନେ ସମ୍ବାଦ :**

ଗୀତିକାର ମାନଙ୍କୁ ଅବଧି ସାହିତ୍ୟିକ ପଦ ମର୍ଯ୍ୟାଦା ନମିଳିବାର କାରଣ କଣ ?

ନ.ସିଂ. :

ସାହିତ୍ୟିକ ପଦ ମର୍ଯ୍ୟାଦା ମିଳୁନି ବୋଲି କିଏ କହିଲା । ଗୀତି କବିତା ସାହିତ୍ୟର ଏକ ବିଭାଗ । ଏହା କେବଳ ବେତାର ଦୂରଦର୍ଶନ ପାଇଁ ଉଦ୍ଦିଷ୍ଟ ନୁହେଁ । ଜୀବନାନନ୍ଦ ପାଣିଙ୍କୁ ବିଷୁବ ମିଳନରେ ପୁରସ୍କୃତ କରାଯାଇଥିଲା । ଅକ୍ଷୟ ମହାନ୍ତିଙ୍କ ସ୍ମୃତି ତୁମେ ଶ୍ରାବଣ ରାତିର ଅଦେଖା ଚୈତି ଜୁଆଁ ଏବଂ ମୋ ନିଜସ୍ୱ ଗୀତ 'ମୁଁ ଯେ ଆଲୋକରେ ଝଡ'ରେ ସାଙ୍ଗିତିକତା ଅପେକ୍ଷା ସାହିତ୍ୟିକ ମୂଲ୍ୟବୋଧ ବେଶି ରହିଛି ।

ସିନେ ସମ୍ବାଦ :

ଆପଣଙ୍କ ପ୍ରଥମ ଗୀତକୁ ଏଇଲେ ଶୁଣିଲେ କେମିତି ଲାଗେ ?

ନ.ସିଂ. :

ମୁଁ ନିଜେ କିଛି ଅନୁଭବ କରିପାରେନି । ଶ୍ରୋତାମାନେ ବିଗତ ୨୫ ବର୍ଷ ଧରି ଶୁଣିଆସୁଛନ୍ତି ସେମାନେ ହୁଏତ ଅନୁଭବ କରିପାରୁଥିବେ । ମୂଳଦୁଆ ମଜବୂତ୍ ଥିଲେ ସୌଧ ମଧ ଠିକ୍ ଭଲ ହୁଏ । ଲେଖା ଲେଖି କ୍ଷେତ୍ରରେ ଏହା ମଧ ଠିକ୍ ପ୍ରଯୁଜ୍ୟ ।

ସିନେ ସମ୍ବାଦ :

ଆପଣ ବର୍ତ୍ତମାନ ସାଲିସ୍ କରି ଗୀତ ଲେଖିବାକୁ ଚାହାନ୍ତିକି ?

ନ.ସିଂ. :

ସାଲିସ୍ ମୋ ଇଚ୍ଛା ବିରୁଦ୍ଧ । ଫିଲ୍ମ ପାଇଁ ଗୀତ ନଲେଖିବି ବୋଲି ପ୍ରତିଜ୍ଞାବଦ୍ଧ ନୁହଁ । ସୁଯୋଗ ପାଇଲେ ନିଶ୍ଚୟ ଲେଖିବି । କିନ୍ତୁ ସାଲିସ୍ କରି ନୁହେଁ ।

ସିନେ ସମ୍ବାଦ :

ଏବେ ଆପଣଙ୍କ ହାତରେ କୌଣସି ଫିଲ୍ମ ଅଛି ?

ନ.ସିଂ. :

କିଛି ନାହିଁ ।

ସିନେ ସମ୍ବାଦ :

ଭାବ ପ୍ରବଣତା ଭୋକ ମାରିପାରେ ନାହିଁ । ସେଠି ଗୀତକୁ କ୍ୟାରିଅର କରି ଗୀତିକାର ଚଳିପାରିବ ଆଜିକାର ସମାଜରେ ।

ନ.ସିଂ. :

ଏବେ ଓଡିଶାରେ ଟିକେ କଷ୍ଟକର । ଏବେ ସେ ସମୟ ଆସି ନାହିଁ । ଭଲ ଶ୍ରୋତା ଅଭାବରୁ ..... ।

ସିନେ ସମ୍ବାଦ :

ଗୀତିକାର ଜୀବନର ସବୁଠାରୁ ଦଣ୍ଡନୀୟ ଏବଂ ସଂକଟମୟ କାଳରେ ଆପଣଙ୍କର ନିଜର ପ୍ରତିଷ୍ଠା ପାଇଁ କଣ କରୁଥିଲେ ?

ନ.ସିଂ. : କେବଳ ସମୟ ସୁଯୋଗକୁ ଅପେକ୍ଷା କରିଥିଲି ।

# ଆଜିର ଗୀତ ଯୁଗଧର୍ମୀ ହେବାରୁ ଆମକୁ ବୋଧେ ସୁଯୋଗ ମିଳୁନି

ନନ୍ଦ କିଶୋର ସିଂହ ଏକାଧାରରେ ଶିଶୁ ସାହିତ୍ୟିକ ଓ ଆକାଶବାଣୀ ଗୀତିକାର । ସେ ୧୯୬୪ ମସିହାରୁ ଏଯାବତ୍ ଗୀତ ଲେଖିଆସୁଛନ୍ତି । ତାଙ୍କର 'ବଡ ଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ', 'ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ ମୋ ପ୍ରିୟାର ଗାଆଁ ଆଡେ', 'ବସନ୍ତ ଦେଇଛି ଚିଠି ଗୋଲାପି ଗୋଲାପି' ଗୀତ ଶ୍ରୋତାଙ୍କୁ ଅଭିଭୂତ କରେ । ସେ ଧରିତ୍ରୀ, ଅକ୍ଷୀତୃତୀୟା, ବଂଧୁ ମହାନ୍ତି, ଫିଲ୍ମରେ ମଧ ଗୀତ ଲେଖିଛନ୍ତି । ସ୍ୱର୍ଗତଃ ବାଳକୃଷ୍ଣ ଦାଶ, ରଘୁନାଥ ପାଣିଗ୍ରାହୀ, ସିକନ୍ଦର ଆଲାମ, ଭିକାରୀ ବଳ, ଦିବାକର ମହାନ୍ତି,ଅନିମା କର, ଶେଖର ଘୋଷ, ଧନଂଜୟ ଶତପଥି, ଗୋପାଳ ସାମନ୍ତରାୟଙ୍କ କଣ୍ଠରେ ତାଙ୍କର ଅନେକ ଗୀତ ଲୋକପ୍ରିୟତା ହାସଲ କରିଛି । ପ୍ରଚାରସର୍ବସ୍ୱ ଯୁଗରେ ସେ କାହାରିକୁ ନିଜର ବଡିମା ଦେଖାନ୍ତି ନାହିଁ । ଏପରି ନିଜର ଫଟୋଗ୍ରାଫ୍ ଟିଏ ଦେବାକୁ କୁଣ୍ଠାବୋଧ କରୁଥିବା ଏହି ଗୀତିକାରଙ୍କୁ ସାକ୍ଷାତ କରିଥିଲେ ନାରାୟଣ କୁମାର ରାଉତରାୟ ।

ପ୍ରଃ ଆକାଶବାଣୀ ଗୀତିକାର କେବେଠାରୁ ହେଲେ ?

ଉ : ୧୯୬୪ ମସିହା ଏପ୍ରିଲ ମାସରେ ମୁଁ ଆକାଶବାଣୀ କଟକ କେନ୍ଦ୍ରର ସ୍ୱୀକୃତି ପ୍ରାପ୍ତ ଗୀତିକାର ହେଲି ।

ପ୍ରଃ ଆପଣଙ୍କର ପ୍ରଥମ ଗୀତ କଣ ଥିଲା ଓ କାହା କଣ୍ଠରେ ସ୍ଥାନ ପାଇଥିଲା ?

ଉ : ଡାକ୍ତର ମନୋରଂଜନ ପୃଷ୍ଟିଙ୍କ କଣ୍ଠରେ ମୋର ସ୍ଥାନ ପାଇଥିବା ଗୀତଟି ହେଲା ଭଜନ 'ଜୀବନ ପଥ ମୋର ବେଳକୁ ବେଳ ହୋଇଗଲା କଣ୍ଟକିତ ।'

ପ୍ରଃ ଆପଣଙ୍କ ଗୀତକୁ ଗାଇଥିବା କଣ୍ଠଶିଳ୍ପୀ ମଧ୍ୟରୁ କାହାଦ୍ୱାରା ବେଶୀ ଲୋକପ୍ରିୟତା ପାଇଛନ୍ତି ?

ଉଃ ବାଳକୃଷ୍ଣ ଦାଶ, ଭିକାରୀ ବଳ, ଗୋପାଳ ସାମନ୍ତରାୟ, ସିକନ୍ଦର ଆଲାମ, ଅନିମା କର, ଚିତ୍ତ ଜେନା, ଦିବାକର ମହାନ୍ତି ।

ପ୍ରଃ ବର୍ତ୍ତମାନ ଆପଣ ଅନୁଭବ କରୁଥିବେ ଅଶ୍ଲୀଳ ସଂଗୀତର ପ୍ରଭାବ, ପ୍ରସାର ବେଶୀ । ଏଥିପାଇଁ ଆପଣ କାହାକୁ ଦାୟୀ କରିବେ ? ଗୀତିକାର, ସଂଗୀତକାର, ଶ୍ରୋତାମାନଙ୍କୁ ଏହା କିପରି ଭାବରେ ପ୍ରତିରୋଧ କରିପାରିବ ?

ଉ : ଶ୍ରୋତାମାନଙ୍କ ତରଫରୁ ଯଦି ଅଶ୍ଳୀଳ ଗୀତ ବିରୋଧରେ ସ୍ୱର ଉତ୍ତୋଳନ ହୋଇପାରିବ ।

ପ୍ର : କମର୍‌ସିଆଲ କ୍ୟାସେଟରେ ଗୀତ ଲେଖିଛନ୍ତିକି ?

ଉ : ହଁ, କମର୍‌ସିଆଲ କ୍ୟାସେଟରେ ମୋ ଗୀତକୁ ସିକନ୍ଦର ଆଲାମ, ତୃପ୍ତି ଦାସ, ଚିତ୍ତ ଜେନା ସମସ୍ତେ ଗାଇଛନ୍ତି ।

ପ୍ର : ଦୂରଦର୍ଶନରେ ଆପଣଙ୍କ ଗୀତ କେଉଁମାନେ ଗାଇଛନ୍ତିକି ?

ଉ : ସିକନ୍ଦର ଆଲାମ, ଶକୁନ୍ତଳା ମହାପାତ୍ର, ଚିତ୍ତ ଜେନା, ଶାନ୍ତିଲତା ବାରିକ, ମମତାସାହୁ, ଆରତୀ ମିଶ୍ର, ଗୋପାଳ ସାମନ୍ତରାୟ, ରଂଜିତା ସେନାପତି ।

ପ୍ର : ଚଳଚିତ୍ର ରେ ଆଉ ଲେଖିବାର ସୁଯୋଗ ପାଉନାହାଁନ୍ତି କାହିଁକି ?

ଉ : ମୁଁ ଦୀର୍ଘ ୩୫ ବର୍ଷ ଗୀତ ଲେଖିଲା ପରେ ଏବେ କାହିଁକି ସୁଯୋଗ ମୋତେ ମିଳୁନି । ସେକଥା ପ୍ରଯୋଜକ, ସଂଗୀତ ନିର୍ଦ୍ଦେଶକଙ୍କୁ ପଚାରିଲେ ସେ କହିପାରିବେ ।

ପ୍ର : ଶିଶୁ ପତ୍ରିକାରେ ଲେଖିଥିବା ନନ୍ଦକିଶୋର ସିଂ, ଆକାଶବାଣୀ ନନ୍ଦକିଶୋର ସିଂ ସମାନ କି ?

ଉ : ହଁ ମୁଁ ଜଣେ ଶିଶୁ ସାହିତ୍ୟିକ । ମୁଁ ଷଷ୍ଠ ଶ୍ରେଣୀରେ ପଢିବା ବେଳେ ୧୯୫୦ ରୁ ଶିଶୁ ସାହିତ୍ୟ ରଚନା କରୁଛି ।

ପ୍ର : ଆପଣଙ୍କ ମତରେ ଶିଶୁ ସାହିତ୍ୟ କିପରି ହେବା ଉଚିତ ?

ଉ : ଯୁଗଧର୍ମୀ ହେବା ଉଚିତ । ଅନୁବାଦ ସାହିତ୍ୟ ଅପେକ୍ଷା ମୌଳିକତା ରଚନାକୁ ପ୍ରାଧାନ୍ୟ ଦେବା ଉଚିତ ।

ପ୍ର : ଆପଣଙ୍କର କିଛି ପୁସ୍ତକ ପ୍ରକାଶିତ ହୋଇଛିକି ?

ଉ : ହଁ, ଏଯାବତ୍ ୩୦ରୁ ଅଧିକ ପୁସ୍ତକ ମୋର ପ୍ରକାଶିତ ହୋଇ ସାରିଛି ।

ପ୍ର : ଶିଶୁ ସାହିତ୍ୟ ପାଇଁ ପୁରସ୍କୃତ କି ?

ଉ : ହଁ, ପ୍ରଜାତନ୍ତ୍ରର ବିଷୁବ ମିଳନରେ (୧୯୮୦-୮୧), ଉପେନ୍ଦ୍ର ତ୍ରିପାଠୀ ପୁରସ୍କାର, କୁଆଁତାରା ସଂସାର ଆହୁରି ଅନେକ ଅନୁଷ୍ଠାନରୁ ପୁରସ୍କୃତ ହୋଇଛି ।

ପ୍ର : ଶିଶୁ ସାହିତ୍ୟର ଭବିଷ୍ୟତ ?

ଉ : ଶିଶୁ ସାହିତ୍ୟର ନାଁରେ ଅଶିଶୁ ସାହିତ୍ୟ ପରିବେଷଣ କରିବା ଠିକ୍ ନୁହେଁ । ସଂଖ୍ୟା ବଡ କଥା ନୁହେଁ, ଗୁଣାତ୍ମକ ସରଳ ସାବଲୀଳ ରଚନା ହେଲେ ଶିଶୁ ସାହିତ୍ୟର ଭବିଷ୍ୟତ ଉଜ୍ଜ୍ୱଳ ହେବ ।

ପ୍ରସ୍ତୁତି - ଯାତ୍ରା ଦୁନିଆ

# ସମସ୍ତେ ବ୍ୟବସାୟକୁ ଦୃଷ୍ଟି ଦେଲେ, ସମାଜ ପଛେ ନର୍କକୁ ଯାଉ.....

ପ୍ରଥମକରି ଓଡିଆ ସାହିତ୍ୟ ଏକାଡେମୀ ତରଫରୁ ଘୋଷିତ ୨୦୦୧ ବର୍ଷ ପାଇଁ "ଗୀତି କବିତା " ସମ୍ମାନ ଓଡିଶାର ସ୍ୱନାମ ଧନ୍ୟ ତଥା ଲବ୍ଧ ପ୍ରତିଷ୍ଠିତ ଶିଶୁ ସାହିତ୍ୟିକ ନନ୍ଦକିଶୋର ସିଂ ପାଇବାକୁ ଯୋଗ୍ୟ ବିବେଚିତ ହୋଇଛନ୍ତି । ନନ୍ଦକିଶୋର ଗୀତିବିଚିତ୍ରା ପାଇଁ ତାଙ୍କୁ ଏହି ସମ୍ମାନ ମିଳିଛି । ୧୯୪୨ ମସିହାରେ ଜନ୍ମଗ୍ରହଣ କରି ୧୯୬୩ ମସିହାରୁ ଲେଖନୀ ଚାଳନା କରି ଆସୁଥିବା ଶ୍ରୀ ସିଂ ଅନେକ ଗୀତି କବିତା, ଶିଶୁ ଗଳ୍ପ ନାଟକ ଏକାଂକିକା, ଜଣାଣ ଭଜନ, ଦେଶାତ୍ମବୋଧକ ପଲ୍ଲୀଗୀତ ତଥା ଆଧୁନିକ ଗୀତ ରଚନା କରିଛନ୍ତି । ସେ ଆକାଶବାଣୀ ତଥା ଦୂରଦର୍ଶନ ର ଜଣେ ପୁରୁଣା ସ୍ୱିକୃତୀ ପ୍ରାପ୍ତ ଗୀତିକାର । ଭଜନ ବଡଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ, ମୋର ମନ ବଡ ଦାଣ୍ଡେ ଆସେ ଜଗନ୍ନାଥ ଓ ଆଧୁନିକ ଗୀତ ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ ମୋ ପ୍ରିୟାର ଗାଆଁ ଆଡେ । ସେତେବେଳେ ଏ ଗୀତ ଦୁଇଟି ଶ୍ରୋତା ମହଲରେ ବେଶ୍ ଆଦୃତ ହୋଇଥିଲା । ଶିଶୁ ସାହିତ୍ୟରେ ତାଙ୍କର ଉଲ୍ଲେଖନୀୟ ଅବଦାନ ପାଇଁ ପଇଁତିରିଶରୁ ଉର୍ଦ୍ଧ୍ୱ ସାହିତ୍ୟାନୁଷ୍ଠାନରୁ ମଧ୍ୟ ସେ ସମ୍ମାନିତ ହୋଇଛନ୍ତି । ପ୍ରମୁଖ ସମ୍ମାନ ମଧ୍ୟରେ ପ୍ରଜାତନ୍ତ୍ରର ପ୍ରଚାର ସମିତି ତରଫରୁ ବିଷୁବ ମିଳନର ସ୍ୱତନ୍ତ୍ର ଉତ୍ସବରେ ଶିଶୁ ସାହିତ୍ୟିକ ରୂପେ ତିନିଥର, ଶ୍ରୀକ୍ଷେତ୍ର ଶିଶୁ ସାହିତ୍ୟିକ ସମ୍ମାନ, ପୁରୀ, ଫକୀର ମୋହନ ଶିଶୁ ସାହିତ୍ୟ ସମ୍ମାନ, ବାଲେଶ୍ୱର, ଗୋକର୍ଣ୍ଣିକା ସାହିତ୍ୟ ସଂସଦ ତରଫରୁ ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ସମ୍ମାନ, ମା ଯଶୋଦା ଶିଶୁ ସାହିତ୍ୟ ସମ୍ମାନ, ଚଣ୍ଡିଖୋଲ, ବିରେନ୍ଦ୍ର ଭୂୟାଁ ସ୍ମୃତି ପୁରସ୍କାର , ନିଖିଳ ଉତ୍କଳ ଶିଳ୍ପି ପରିଷଦ ସମ୍ମାନ, ନିଖିଳ ଉତ୍କଳ ଗୀତିକବି ସମ୍ମାନ, ଓଡିଶା ଗୀତି କବି ସମ୍ମାନ ଇତ୍ୟାଦି । ଶ୍ରୀ ସିଂ ଶିକ୍ଷା ବିଭାଗରେ କାର୍ଯ୍ୟକରି ବର୍ତ୍ତମାନ ଅବସର ଗ୍ରହଣ କରିଛନ୍ତି । ଏହି ସାରସ୍ୱତ ସାଧକଙ୍କ ସହିତ ବାସ ଭବନରେ ସାକ୍ଷାତକାରର କିୟଦଂଶ ।

ପ୍ର.ବୁ୍ୟ.: ଆପଣଙ୍କ ପରିଚୟ ?

ଉ: ମୋର ପିତା ରାଜକିଶୋର ସିଂ ମାତା ରୂପାଦେବୀ ଓ ପୋଷ୍ୟ ପିତା ହେଲେ ନବକିଶୋର ସିଂ ।

ପ୍ର.ବ୍ୟୁ: ପ୍ରଥମ ଥର କରି ଆପଣ ଗୀତି କବିତା ପାଇଁ ଓଡିଶା ସାହିତ୍ୟ ଏକାଡେମୀ ତରଫରୁ ସମ୍ମାନିତ ହୋଇଥିବାରୁ ଖୁସିଥିବେ ନିଶ୍ଚୟ ?

ଉ :  ଖୁସି ତ ନିଶ୍ଚୟ । ତେବେ ସାହିତ୍ୟ ଏକାଡେମୀର ମୁଖପତ୍ର(ଗୀତି କବିତାର ସମାଲୋଚନା ବିଶେଷାଙ୍କ) କୋଣାର୍କ ପ୍ରକାଶିତ ହେଉଥିବାରୁ ମୁଁ ବେଶି ଆନନ୍ଦିତ । ସେଥିପାଇଁ ଏକାଡେମୀକୁ ଧନ୍ୟବାଦ ଦେଉଛି ।

ପ୍ର.ବୁ୍ୟ: ପରିଶ୍ରମର ମୂଲ୍ୟ ପାଇପାରିଛନ୍ତି କି ?

ଉ :  ଯାହା ପାଇବାର କଥା ତାହା ପାଇଛି ।

ପ୍ର.ବ୍ୟୁ : ଆପଣଙ୍କର କେଉଁ କେଉଁ ଗୀତି କବିତା ସଂକଳନ ସବୁ ପ୍ରକାଶିତ ହୋଇଛି ?

ଉ :  ଗୀତି ଗୁଚ୍ଛ, ଗୀତି ଓ ଗଜଲ, ଇଚ୍ଛାବତୀ ନଦୀ ଓ ନନ୍ଦକିଶୋର ଗୀତି ବିଚିତ୍ରା । ଏହା ବ୍ୟତିତ ମୋର ଅସମୀୟ ଓ ଇଂରାଜୀରେ ମଧ କବିତା ପ୍ରକାଶ ପାଇଛି ।

ପ୍ର.ବ୍ୟୁ : ବର୍ତ୍ତମାନ ଭଜନ ନାମରେ ଯେଉଁଭଳି ଅଭଜନ ପ୍ରସ୍ତୁତ ଚାଲିଛି । 'ଜଗନ୍ନାଥ'ଙ୍କୁ ଯେତେ ଶସ୍ତା କରିଦିଆଯାଉଛି ଏବଂ ଆଧୁନିକତାର ଦୁହାଇ ଦେଇ ଅଶାଳୀନ ତଥା ଦ୍ୱିଅର୍ଥବୋଧକ ସଂଗୀତର ପ୍ରଚାର ଚାଲିଛି, ଏ ବିଷୟରେ ଆପଣଙ୍କର ପ୍ରତିକ୍ରିୟା କଣ ?

ଉ :  ପ୍ରଥମେ ଭଜନ କଥା ଆଲୋଚନାକୁ ନିଆଯାଉ, ଏହାତ ହେଉଛି ନିଶ୍ଚୟ । ତଥାପି କିଛି ଏପରି ଭଜନ ପ୍ରସ୍ତୁତ ହେଉଛି ତାର ମୂଲ୍ୟବୋଧ ଯଥେଷ୍ଟ ରହିଛି । ଏଇ ଯେମିତି 'ସାର୍ଥକମ୍ୟୁଜିକ୍' ପ୍ରସ୍ତୁତ 'ଖୁଆ ଦଉଡି' କ୍ୟାସେଟ୍‌ରେ 'ବୋଉଲୋ ବୋଉ, ଯେଉଁ ଘରେ ଅଛି ଜଗନ୍ନାଥ, ଯେଉଁ ଘରେ ଅଛି ଭାଗବତ, ସେଇ ଘରକୁ ମୋ ସବାରି ଯାଉ' ଗୀତିକାରଙ୍କ ସୁନ୍ଦର ରଚନା ପ୍ରତି ଝିଅର ଭାବନା ଏଭଳି ହିଁ ହେବା ଦରକାର । ଆଧୁନିକ ଗୀତ ବିଷୟରେ ମୁଁ ଏତିକି କହିବି, ସମସ୍ତେ ବ୍ୟବସାୟକୁ ଦୃଷ୍ଟିଦେଲେ, ସମାଜ ତେଣିକି କୁଆଡେ ଯାଉ । ବର୍ତ୍ତମାନର ଯୁବକ ଯୁବତୀ ମାନଙ୍କୁ ବିପଥଗାମୀ ତଥା ଲକ୍ଷ୍ୟଭ୍ରଷ୍ଟ କରିବା ପାଇଁ ଏ ଗୀତ ହେଉଛି କେତେଗୋଟି ପ୍ରବଂଚନର ସମାରୋହ ।

ପ୍ର.ବୁ୍ୟ: ଏହାର ନିରାକରଣ କଣ ସମ୍ଭବ ନୁହେଁ ?

ଉ :  ନିଶ୍ଚୟ ସମ୍ଭବ । ସମୟ ଆସିବ ଯେତେବେଳେ ଆମେ ତୁମେ ସମସ୍ତେ ଏଥିପ୍ରତି ସଚେତନ ହେବା । ଏଭଳି କ୍ୟାସେଟକୁ ନକିଣିବା ପାଇଁ ମାନସିକ ସଂକଳ୍ପ ନେବା ତାହେଲେ ସବୁ ଠିକ୍ ହୋଇଯିବ ।

ପ୍ର.ବୁ୍ୟ: ସରକାରଙ୍କର କଣ ଏଥିପ୍ରତି ଦାୟିତ୍ୱ ନାହିଁ ?

ଉ :  ରହିଛି ନିଶ୍ଚୟ । ବହୁବାର ବିଧାନସଭାରେ ଏ ପ୍ରସଂଗ ଉତ୍‌ଥାପନ କରାଯାଇଛି । ସବୁ ସଦସ୍ୟ ଏଥିପାଇଁ ଉଦ୍‌ବେଗ ପ୍ରକାଶ କରିଛନ୍ତି । ଏହାର ନିରାକରଣ ପଛରେ କାହାର ମନସ୍କତା କି ନିଷ୍ଠାଥିଲା ପରି ଜଣାପଡେନାହିଁ । ମୋର ଆଶା ସରକାର

ଏ ସଂପର୍କରେ ନିକଟରେ ନିଶ୍ଚିତ ରୂପେ ଦୃଢ ପଦକ୍ଷେପ ଗ୍ରହଣ କରିବେ ।

ପ୍ର.ବୃ୍ୟ : ଯୁବ ଲେଖକ ଲେଖିକା ମାନଙ୍କୁ ଆପଣଙ୍କ ବାର୍ତ୍ତା କଣ ?

ଉ : ମୁଁ ତାଙ୍କୁ ଏତିକି କହିବି ସାଧନା କରିଯାଅ ସିଦ୍ଧି ନିଶ୍ଚୟ ପାଇବ । ଅନୁକରଣ କର ପଛେ ହନୁକରଣ କରନାହିଁ ।

ପ୍ର.ବୃ୍ୟ: ବାକି ଜୀବନକୁ ଆପଣ କିଭଳି ବିତାଇବେ ବୋଲି ଭାବିଛନ୍ତି । ଆପଣଙ୍କର ଆଶା ଆଉ କଣ ରହିଛି ?

ଉ : ମୋର ସେମିତି ଆଉ କିଛି ଆଶା ନାହିଁ । ଜୀବନ କଥା ଯାହା କହିଲେ, ଭଗବାନଙ୍କର ମୋ ପ୍ରତି ଯାହା ନିର୍ଦ୍ଦେଶ ଥିବ ଶେଷ ନିଶ୍ୱାସ ଥିବା ପର୍ଯ୍ୟନ୍ତ ମୁଁ ଖାଲି ମୋର କର୍ତ୍ତବ୍ୟ କରିଯିବି ।

(ପ୍ରସ୍ତୁତି- ପବିତ୍ର ମୋହନ ରାଉତରାୟ, ପ୍ରତିବିମ୍ବ-୧୧.୯.୦୫)

## କେଇ ମିନିଟ କଥାବାର୍ତ୍ତା

୨୦୦୧ ମସିହା ପାଇଁ ଗୀତି କବିତାରେ ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିବାରୁ ତାଙ୍କ ପ୍ରତିକ୍ରିୟା ଜାଣିବାକୁ ସ୍ମୃତିଲିପି ତାଙ୍କ ବାସଭବନରେ ଉପସ୍ଥିତ ହୋଇଥିଲା । ସେ ଯାହା କହିଥିଲେ ଆମ ପାଠକ ସମାଜ ଆଗରେ ଅବିକଳ ତାହହିଁ ତୋଳିଧରୁଛୁ ।

ସ୍ମୃତିଲିପି :- ଆପଣ ୨୦୦୧ ମସିହା ପାଇଁ ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ଏକଥା ଜାଣିବା ପରେ ଆପଣଙ୍କୁ କିପରି ଲାଗିଲା ?

ନ.ସିଂ. :- ଦେଖନ୍ତୁ ଓଡିଶା ସାହିତ୍ୟ ଏକାଡେମୀ ତରଫରୁ ମୁଁ ନନ୍ଦକିଶୋର ସିଂହ ପୁରସ୍କୃତ ହୋଇଛି ବୋଲି କହିଲେ ସଂପୂର୍ଣ୍ଣ ଠିକ୍ ହେବନାହିଁ । କାରଣ ସାହିତ୍ୟ ଏକାଡେମୀ ବ୍ୟକ୍ତିକୁ ନୁହେଁ ପୁସ୍ତକକୁ ପୁରସ୍କୃତ କରିଥାଏ । ଏଣୁ ମୋର ଗୀତି କବିତା ପୁସ୍ତକ "ନନ୍ଦକିଶୋର ଗୀତି ବିଚିତ୍ରା"ର ଏହା ସୌଭାଗ୍ୟ । ତାଛଡା ଏଥିପାଇଁ ଅକ୍ଷର ପ୍ରକାଶନ ସଂସ୍ଥା ମଧ୍ୟ ପ୍ରଶଂସନୀୟ କାରଣ ପ୍ରକାଶକ ଗିରିଜା କୁମାର ବଳିଆର ସିଂହ ଏ ପୁସ୍ତକ ଟିକୁ ମୋ ପରିକଳ୍ପନା ଅନୁସାରେ ସୁନ୍ଦର ରୂପାୟନ କରିଛନ୍ତି । ତେବେହିଁ ଓଡିଶା ସାହିତ୍ୟ ଏକାଡେମୀ ମୋର ପ୍ରସ୍ତାବ ଅନୁସାରେ ତାର ମୁଖପତ୍ର "କୋଣାର୍କ"ର ଏକ ଗୀତି କବିତା ସମାଲୋଚନା ବିଶେଷାଙ୍କ ପ୍ରକାଶ କରିଥିବାରୁ ମୁଁ ଖୁବ୍ ଆନନ୍ଦିତ ଏବଂ ଓ.ସା.ଏ. କୁ ମୋର କୃତଜ୍ଞତା ଜ୍ଞାପନ କରୁଛି ।

ସ୍ମୃତିଲିପି :- ଆପଣ କଣ କହିବାକୁ ଚାହାନ୍ତି ଏ ପୁରସ୍କାର ପାଇଁ ଆପଣଙ୍କ ଗୀତି କବି ଜୀବନର କିଛି ଅବଦାନ ନାହିଁ ?

ନ.ସିଂ :- ମୋର ଅବଦାନକୁ ମୁଁ ଅସ୍ୱିକାର କରୁ ନାହିଁ । ତେବେ ଏକ୍ଷେତ୍ରରେ "ଓଡିଶା ଗୀତିକବି ସମାଜର" ଅବଦାନ ଯଥେଷ୍ଟ । କାରଣ ଓଡିଶା ସାହିତ୍ୟ ଏକାଡେମୀ ସାହିତ୍ୟର ବିଭିନ୍ନ ବିଭାଗ ଯଥା ଗଳ୍ପ, ପ୍ରବନ୍ଧ,ଉପନ୍ୟାସ, ଜୀବନୀ, ସମାଲୋଚନା, କବିତା ଏବଂ ଶିଶୁ ସାହିତ୍ୟ ପରି ଗୀତି କବିତାକୁ ସ୍ୱତନ୍ତ୍ର ଭାବେ ପୁରସ୍କାର ପ୍ରଦାନ କରୁ ଏକଥା ଓଡିଆ ଗୀତି କବି ସମାଜ ବିଭିନ୍ନ ସମୟରେ ଦାବି କରିଆସୁଥିଲା । ଏଣୁ ଆଜି "ନନ୍ଦ କିଶୋର ଗୀତି ବିଚିତ୍ରା" ର ଗୀତି କବି ଭାବେ ମୁଁ ମୋର କୃତଜ୍ଞତା ଜଣାଉଛି ।

ସ୍ମୃତିଲିପି :- ସାହିତ୍ୟ ର ଅନ୍ୟ କେଉଁ ବିଭାଗ ପ୍ରତି ଆପଣ ସାହିତ୍ୟ ଏକାଡେମୀର ଦୃଷ୍ଟି ଆକର୍ଷଣ କରିବାକୁ ଚାହାନ୍ତି କି ?

ନ.ସିଂ :- ହଁ ଆଉ ଗୋଟିଏ ବରିଷ୍ଠ ବିଭାଗ "ବ୍ୟଙ୍ଗ ସାହିତ୍ୟ" । ଏ ବିଭାଗ ପ୍ରତି ଦୃଷ୍ଟି ଆକର୍ଷଣ ଦେଲେ କାନ୍ତ କବି ଲକ୍ଷ୍ମୀକାନ୍ତଙ୍କ ଠୁ ଚୌଧୁରୀ ହେମକାନ୍ତ ଙ୍କ ଯାଏ ସମସ୍ତ ବ୍ୟଙ୍ଗକାରଙ୍କୁ ଆମେ ଯଥା ସମ୍ମାନ ଦେଇପାରିବା । ଏଣୁ ଏଇ ସ୍ମୃତିଲିପି ମାଧମରେ ମୁଁ ଓଡିଶା ସାହିତ୍ୟ ଏକାଡେମୀକୁ ଅନୁରୋଧ କରୁଛି ଏ ଦିଗରେ ଦୃଷ୍ଟି ଦିଅନ୍ତୁ ଏବଂ ଜଣେ ବ୍ୟଙ୍ଗକାଙ୍କୁ ପୁରସ୍କୃତ କରନ୍ତୁ ।

ସ୍ମୃତିଲିପି :- ଆପଣତ ବହୁ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି । ତେବେ ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଥିବାରୁ ଏକ ନିଆରା ଅନୁଭବ ଉପଲବ୍ଧି କରୁଛନ୍ତି କି ?

ନ.ସିଂ :- ହଁ ଏକଥା ମୋର ସ୍ୱୀକାର କରିବାରେ ଦ୍ୱିଧା ନାହିଁ । ଓଡିଶାର ସାରସ୍ୱତ ସମାଜ ଓଡିଶା ସାହିତ୍ୟ ଏକାଡେମୀକୁ ଯଥେଷ୍ଟ ଗୁରୁତ୍ୱ ଦେଇଥିବାର ମୁଁ ଅନୁଭବ କରୁଛି । କାରଣ ବିଶ୍ୱ ବିଦ୍ୟାଳୟର ପ୍ରଫେସର ଠୁ ଆରମ୍ଭ କରି ନାଟ୍ୟକାର, ସମାଲୋଚକ, କବି ଶିଶୁ ସାହିତ୍ୟିକ ଏବଂ ସମଧର୍ମୀ ଗୀତିକବି ଗଣ ଏବଂ ପତ୍ରପତ୍ରିକାର ସଂପାଦକ ଗଣ ମଧ୍ୟ ମତେ ବଧେଇ ଜଣେଇଛନ୍ତି । ତେବେ ଗୋଟିଏ କଥା ମୋତେ ଯେତିକି ଆଶ୍ଚର୍ଯ୍ୟ ଲାଗିଛି ସେତିକି ଦୁଃଖ ବି ଲାଗିଛି ।

ସ୍ମୃତିଲିପି :- ଦୁଃଖ-ସେ ପୁଣି କାହିଁକି ?

ନ.ସିଂ :- କଥାଟି ଅପ୍ରିୟ ହେଲେବି ସତ୍ୟ ! ମୁଁ ଯେଉଁମାନଙ୍କ ପାଇଁ ମୁଖ୍ୟତଃ ଗୀତିକବିତା ଲେଖିଥାଏ । ସେମାନେ ଏ ପୁରସ୍କାର ପ୍ରତି ଏତେଟା ସମ୍ବେଦନଶୀଳ ନୁହଁନ୍ତି ।

ହୁଏତ ସେମାନେ ଅତିମାତ୍ରାରେ ବ୍ୟବସାୟିକ ଅଥବା ସଂଗୀତ ସଫଳତା ପଛରେ ଗୀତିକବିର ଭୂମିକାକୁ ସେମାନେ ଏତେଟା ଗୁରୁତ୍ୱ ଦେଇନଥାନ୍ତି !

ସୃଜନିକା :- ଏବେ କିନ୍ତୁ ଗୀତି କବିତା କେବଳ ଆକାଶବାଣୀ ବା ଦୂରଦର୍ଶନର କଣ୍ଠଶିଳ୍ପୀଙ୍କ ଭିତରେ ସୀମାବଦ୍ଧ ନାହିଁ , ଏହା ବିଭିନ୍ନ ପତ୍ରପତ୍ରିକା ର କଳେବରକୁ ପୁଷ୍ଟ କରୁଛି ।

ନ.ସିଂ :- ହଁ, ମୁଁ ଏଥିପାଇଁ ଝଙ୍କାରକୁ ବିଶେଷ ଧନ୍ୟବାଦ ଦେବି । କାରଣ ଷଷ୍ଠ ଦଶକରୁ ଝଙ୍କାର ଗୀତିକବିତାକୁ ପ୍ରୋତ୍ସାହନ ଦେଇଆସୁଛି । ସୁଖର କଥା ଏବେ ଝଙ୍କାର ସାଙ୍ଗକୁ 'ଜୀବନ ରଂଗ', 'ସୌରଭ କାଦମ୍ବିନୀ','ସଚିତ୍ର ବିଜୟା','କାବ୍ୟାଲୋକ','ସମାରୋହ' 'ସାବିତ୍ରୀ','ଅର୍ପିତା' ,'ସ୍ୱୟଂ ସମ୍ପୂର୍ଣ୍ଣା' ତଥା ମୋ ସଂପାଦିତ 'ବୋଲେ ହୁଁ ଚିଁ' ଏପରିକି ସୃଜନିକା ମଧ୍ୟ ଛନ୍ଦ କବିତା ଓ ଗୀତିକବିତାକୁ ଗୁରୁତ୍ୱ ଦେଉଛି । ଏବର୍ଷ ସାବିତ୍ରୀ ୧୧ଟି ଗୀତିକବିତା ସ୍ଥାନ ଦେଇଛି ତାର ଶାରଦୀୟ ସଂଖ୍ୟାରେ । ଏହା କମ୍ ଗୌରବର କଥା ନୁହେଁ ।

ସୃଜନିକା :- ଗୀତି କବିତା କ୍ଷେତ୍ରରେ ଆପଣଙ୍କର କିଛି ଆଶା ଆଉ ନିରାଶା.....

ନ.ସିଂ :- ଆଶା ଗୀତି କବିତା ଓଡ଼ିଶା ସାହିତ୍ୟ କ୍ଷେତ୍ରରେ ତାର ମର୍ଯ୍ୟାଦା ବଢେଇ ଚାଲିବ । କାରଣ ଭାରତ ନୋବେଲ ପୁରସ୍କାର ଆଣିଛି ଗୀତାଂଜଳୀ ଜରିଆରେ ।

ତେବେ ନିରାଶା କଥା ହେଉଛି ଏବେର କେତେଜଣ ଶସ୍ତା ଓ ମନୋରଂଜକ ଗୀତିକବି କ୍ୟାସେଟ ମାଧ୍ୟମରେ କିଛି ଅରୁଚିକର ଗୀତ ରଚନା କରି ଏହାର ମର୍ଯ୍ୟାଦା ହାନୀ କରୁଛନ୍ତି । ମୋ ଭଳି ଅନେକ ଶ୍ରଦ୍ଧାଶୀଳ ଗୀତିକବିଙ୍କୁ ଏହା ହତାଶ ,କରୁଛି ।

ସୃଜନିକା :- ସରକାର ଏଥିପାଇଁ ପରା ଖୁବ୍ ଶୀଘ୍ର ସେନସର କରୁଛନ୍ତି !

ନ.ସିଂ :- ଦେଖାଯାଉ ସରକାରଙ୍କର ଏ ପ୍ରତିଶ୍ରୁତି ପାଣିର ଗାର କି ପଥରର ଗାର ! ତେବେ ଗୋଟେ କିଛି ଅଙ୍କୁଶ ଲାଗିବ ବୋଲି ମୋର ବିଶ୍ୱାସ ।

ସୃଜନିକା :- ଆପଣଙ୍କ ବିଶ୍ୱାସରେ ଆମେ ମଧ୍ୟ ଆସ୍ଥାବାନ । ସୃଜନିକା ପାଇଁ କିଛି ସମୟ ଦେଇଥିବାରୁ ଅଶେଷ ଧନ୍ୟବାଦ ।

(ପ୍ରସ୍ତୁତି- ଭୁବନ ମୋହନ ମହାନ୍ତି ଓ ଦୟାନିଧି ନାୟକ)

# ଗୀତି, କବିତା, ସାହିତ୍ୟର ନାନ୍ଦନିକ ନାଁ ନନ୍ଦକିଶୋର

ସଚିତ୍ର ବିଜୟା-ଡିସେମ୍ବର-୨୦୦୪

ପିଲାଟି ଦିନରୁ ଗୀତ ଥିଲା ତାଙ୍କ ପ୍ରତିଭାର ପ୍ରଥମ ପରିଚୟ । ଗୀତ ଗାଇବା ନୁହେଁ-ଗୀତ ଲେଖିବା । ପରେ ପରେ ସାହିତ୍ୟ ବି ଜୀବନର କିଛି ଅଂଶ ଆବୋରି ନେଲା । ସାହିତ୍ୟରେ ସାମିଲ ହେଲେ ଗୀତି କବିତା ଓ ଶିଶୁ ସାହିତ୍ୟ । କିନ୍ତୁ ନନ୍ଦକିଶୋର ଯେଉଁଥିପାଇଁ ଏକ ନିଆରା ନାଁ-ତା ହେଉଛି ତାଙ୍କର ସୁଲଳିତ ଗୀତ ରଚନା । ବାଳକୃଷ୍ଣ ଦାସଙ୍କ ଠାରୁ ଆରମ୍ଭ କରି ରଘୁନାଥ ପାଣିଗ୍ରାହୀଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ କଣ୍ଠରେ ନନ୍ଦକିଶୋରଙ୍କ ଗୀତର ଚମକ । ସୁଲଳିତ ଗୀତ ରଚନାରେ ନନ୍ଦକିଶୋରଙ୍କ ରହିଛି ବିଶେଷ ନାଁ । ସ୍ୱଚ୍ଛ ସଂଗୀତ ଧାରାରେ ବିଶ୍ୱାସୀ ଏହି ଗୀତିକାର ଜଣକ ଆଜିବି ସଂଗୀତ ସଂରଚନାରେ ସତତ ମଗ୍ନ । ତାଙ୍କ ଜୀବନର ଦୁର୍ଲ୍ଲଭ ଅତୀତ ଓ ଆଜିର ଏକ ସୁରଭିତ ପ୍ରତିବେଦନ ବାଢନ୍ତି ଜ୍ଞାନରଂଜନ ଦାଶ ।

ସୁରମଣି ରଘୁନାଥ ପାଣିଗ୍ରାହୀଙ୍କ କଣ୍ଠ ନିଃସୃତ ଆକାଶବାଣୀର ଏକ ଲୋକପ୍ରୀୟ ସୁଗମ ସଂଗୀତ "ସୁଷମା ଗୋ ତୁମ ଅଙ୍ଗେ ଭରା ମଧୁ ମୂର୍ଚ୍ଛନା" ଆଜି ତରୁଣ ପ୍ରାଣରେ ଶତ କଦମ୍ବର ରୋମାଞ୍ଚ ଜଗାଏ । ନିରାଶାର ନିଦାଘ ପିଡୀତ ହୃଦୟ କେଦାରରେ ଝଲସି ଉଠେ ଆଶାର ସ୍ୱର୍ଣ୍ଣହର୍ଷ । ଯାହାଙ୍କ କୁହୁକ ଭରା ଲେଖନୀର କୁହୁକ ସ୍ପର୍ଶ ଏହି ଗୀତର ପ୍ରତି ପଦରେ ଶ୍ୟାମଳ ସମ୍ମୋହନ ଭରିଦେଇଛିସେ ହେଉଛନ୍ତି ସାଂପ୍ରତିକ ଗୀତି-କବିତା କୋଣାର୍କର ଜଣେ ସଫଳ ବିନ୍ଧାଣୀ କବି ନନ୍ଦକିଶୋର ସିଂହ । ସେ କେବଳ ଜଣେ ଗୀତିକବି ନୁହଁନ୍ତି, ଜଣେ କୃତି ଶିଶୁ ସାହିତ୍ୟିକ, ନାଟ୍ୟକାର ଓ ଅନୁବାଦକ ଭାବରେ ତାଙ୍କର ପରିଚୟ ବହୁ ଚର୍ଚ୍ଚିତ ।

ଭାଦ୍ରବର ଏକ ମନୋରମ ମଧ୍ୟାହ୍ନ । ନୀଳ ଆକାଶରେ ଅରୁଣିମା ମେଘବାଳାର ଛାୟାଲୋକରେ ପୁଲକର ଫୁଲରେଣୁ ବିଞ୍ଚିଦେଇ ମନର ନିଭୃତ ଅଞ୍ଚଳରେ ତୋଳନ୍ତି ଗୁଞ୍ଜନ । ଏପରି ଏକ ଅପ୍ରତ୍ୟାଶିତ ଅଥଚ ଆକାଂକ୍ଷିତ ଅବସରରେ ରାଜଧାନୀର ବିବେକାନନ୍ଦ ମାର୍ଗ ସ୍ଥିତ କ୍ଷେମଲତା ବହୁତଳ ବିଶିଷ୍ଟ ପ୍ରାସାଦ ଅଭିମୁଖେ ଆମର ଯାତ୍ରା । ଆକାଶରେ ମେଘ ବର୍ଷିବ ବର୍ଷିବ ହେଉଛି ଓ ଗୀତି କବିତାର ଗଙ୍ଗୋତ୍ରୀ ଜଳରେ ଅବଗାହନର ପ୍ରବଳ ଇଚ୍ଛା ଆମର । ପ୍ରାସାଦର ପ୍ରଥମ ମହଲାରେ ହିଁ ସାକ୍ଷାତ ହେଲା ଗୀତିକବି ନନ୍ଦକିଶୋରଙ୍କ ସହିତ । ତାଙ୍କର ଏକମାତ୍ର ପୁତ୍ର ଅଶୋକଙ୍କ ବାସଭବନରେ ସେ ନିଜ ଗାଁ କୋରେଇରୁ ଆସି ଏଇ ମାତ୍ର ପହଞ୍ଚିଥାନ୍ତି । ତାଙ୍କର ଅନାବିଳ ଓ ଆତ୍ମୀୟଭରା ଆତିଥ୍ୟ ଆମର ପଥଶ୍ରମ ଭୁଲାଇଦେଲା । ଆଳାପରୁ ମନେହେଲେ ସେ ଯେପରି ଆମର

ବହୁ ପରିଚିତ । ବୟସର ଅପରାହ୍ଣରେ ହୋଇଥିଲେ ବି ତାଙ୍କର ଗଭୀର ଆଖିଦୁଇଟିରୁ ସ୍ୱପ୍ନୀଳ ଆବେଗର ନୀଳିମା ବାରିହୋଇପଡୁଥାଏ । ତପଳମତି ନାତି ତାଙ୍କର ଆମ ଆଡେ ଦୃଷ୍ଟି ନଦେଇ ଟି.ଭିରୁ କାର୍ଟୁନ ସୋ ଦେଖିବାରେ ବ୍ୟସ୍ତ । ଆତ୍ମସ୍ଥ ନନ୍ଦକିଶୋର ଗପିଚାଲିଥାନ୍ତି ତାଙ୍କ ଅନ୍ତରଂଗ ଅତୀତର ଅନେକ ଅଭୁଲା ଅଧ୍ୟାୟ । କୋରେଇ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ମୁଁ ଷଷ୍ଠ ଶ୍ରେଣୀରେ ଛାତ୍ର ଥିଲାବେଳେ ପ୍ରତି ଶନିବାର ଦିନ ପାଠପଢା ଶେଷରେ ତର୍କ ସଭା, ଢଗଢମାଳି ଓ ସଂଗୀତ ପ୍ରତିଯୋଗିତା ହେଉଥିଲା । ସେଥିରେ ଭାଗନେଇ ମୁଁ ଉଚ୍ଚ ପ୍ରଶଂସିତ ହେଉଥିଲି । ଶିକ୍ଷକ ଶ୍ୟାମସୁନ୍ଦର ପାତ୍ର ମଧ୍ୟ ଏହି ଶିଶୁ ପ୍ରତିଭାର ଆଶୁ ବିକାଶ ପାଇଁ ଅକୁଣ୍ଠ ପ୍ରେରଣା ଦେଉଥିଲେ । କ୍ରମଶଃ ତାଙ୍କ ପ୍ରତିଭାର ବାସ୍ତବ ରୂପ ନେଲା ଗୋଟିଏ ଶିଶୁ ଗଳ୍ପ 'ନେଉଳ ଭାଇର ରାଇଜ ଫେରି' । ତାହାହିଁ ଥିଲା ତାଙ୍କର ପ୍ରଥମ ଲେଖା ଓ ୧୯୫୪ ମସିହାରେ ମୀନାବଜାରରେ ପ୍ରକାଶିତ ହୋଇ ତାହା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଥିଲା ।

ଉଚ୍ଚ ଶିକ୍ଷା ଶେଷ କରି ସେ ରୁଦ୍ର ଚରଣ ଉଚ୍ଚବିଦ୍ୟାଳୟ, ସୁଜନପୁରରେ ଜଣେ ସହକାରୀ ଶିକ୍ଷକ ଭାବରେ ନିଯୁକ୍ତ ହେଲେ । ସେତେବେଳେ ଆକାଶବାଣୀରୁ ପ୍ରଚାରିତ ଗିତ ଓ ନାଟକ ଗୁଡିକର ସେ ଜଣେ ନିୟମିତ ଶ୍ରୋତା ଥିଲେ । ବିଦ୍ୟାଳୟର ପ୍ରଧାନଶିକ୍ଷକ ସୁରେନ୍ଦ୍ରନାଥ ରାଉତଙ୍କ ଠାରୁ ପ୍ରୋତ୍ସାହନ ପାଇ ସେ ବେତାର ଉପଯୋଗୀ ଗୀତ ଓ ନାଟକ ରଚନାରେ ମନୋନିବେଶ କଲେ । ୧୯୬୦ ମସିହାରେ ତାଙ୍କ ସ୍ୱପ୍ନ ସାକାର ହେଲା । ସେ ଆକାଶବାଣୀର ଜଣେ ଗୀତିକାର ଭାବେ ସ୍ୱୀକୃତି ଲାଭ କଲେ । ତାଙ୍କ ରଚିତ ଦୁଇଟି ଗୀତ ପ୍ରଚାରିତ ହେବାର ମଧୁର ମୁହୂର୍ତ୍ତ ତାଙ୍କ ପାଇଁ ଆଜିବି ଅବିସ୍ମରଣୀୟ । "ଜୀବନ ପଥ ମୋର ବେଳକୁ ବେଳ ପ୍ରଭୁ ହୋଇଗଲା କଣ୍ଟକିତ " ଓ "ଫାଟିଲା କାଛରେ କାନ୍ଦୁଅ ନେସିଲେ ହେବକି ଲୋ ଆଉ ଯୋଡି" ଘୋଷା ଥିବା ସେହି ଜଣାଣ ଓ ପଲ୍ଲୀ ଗୀତକୁ ଗାଇଥିଲେ ଡଃ ମନୋରଂଜନ ପୃଷ୍ଟି । ସେତେବେଳେ ଆମ ଗାଁରେ ରେଡିଓ ନଥିବାରୁ ମୁଁ ତାହା ଶୁଣିବା ପାଇଁ ପ୍ରାୟ ପନ୍ଦର/ଷୋହଳ କି.ମି ଦୂରରେ ଥିବା ସୁଜନପୁର ଗାଆଁକୁ ଯାଇଥିଲି । ପୁରୁଣା ସ୍ମୃତିର ରୋମନ୍ଥନ କରୁ କରୁ ସେ ଆମୋଦିତ ହୋଇଉଠିଲେ । ସଂଗୀତ ସୁଧାକର ସ୍ୱର୍ଗତଃ ବାଳକୃଷ୍ଣ ଦାଶ ଥିଲେ ତାଙ୍କ ରଚିତ ଗୀତର ଜଣେ ମୁଗ୍ଧ ପ୍ରଶଂସକ ଓ ଗାୟକ । ଥରେ ମାନସିଂହ ପାଟଣା, କଟକରେ ଉଭୟ ସାକ୍ଷାତ ବେଳେ ସେ ଯୁବ ଗୀତିକାର ନନ୍ଦକିଶୋର କୁ ସସ୍ନେହେ କହିଥିଲେ "ମୁଁ ଯେଉଁ ଭଳି ଗୀତ ଚାହୁଁଥିଲି , ତୁମେ ସେହିଭଳି ଗୀତ ଲେଖୁଛ । ତୁମେ ଲେଖିଚାଲ, ପ୍ରଚାର ଦାୟିତ୍ୱ ମୋର ।" ସଂଗୀତ ସୁଧାକରଙ୍କ କଥା -କୌମୁଦୀ ସେବନ କରି ନନ୍ଦକିଶୋରଙ୍କର ପିପାସିତ ହୃଦୟ-ଚକୋର ନୂତନ

ଜୀବନ ଲାଭ କଲା । ତାଙ୍କର ଅମୃତସ୍ରାବୀ ଲେଖନୀ ସ୍ୱତଃ ଚଞ୍ଚଳ ହୋଇଉଠିଲା । ଗୀତ ବ୍ୟତିତ ସେ ଆକାଶବାଣୀ ଓ ଦୂରଦର୍ଶନ ପାଇଁ ବହୁ ସଂଖ୍ୟକ ନାଟକ, ଗୀତିନାଟ୍ୟ ଓ ଧାରାବାହିକ ଲେଖିଛନ୍ତି । ମଂଚରେ ତାଙ୍କର ଅଭିନୀତ ନାଟକ ମଧ୍ୟ ବିପୁଳ ଦର୍ଶକୀୟ ସ୍ୱୀକୃତି ଲାଭ କରିଛି । ଜଣେ ଶିକ୍ଷକ ଭାବରେ ସେ ନିଷ୍ପାପ ଓ ସରଳମନା ଶିଶୁ ମାନଙ୍କ ପ୍ରତି ଅତ୍ୟନ୍ତ ସମ୍ବେଦନଶୀଳ । ସେହି ଅସୁମାରୀ ଶିଶୁ ପ୍ରେମର ନିର୍ଯ୍ୟାସ ଶିଶୁ ସାହିତ୍ୟ ରୂପେ ତାଙ୍କ ଲେଖନୀରୁ ଆତ୍ମପ୍ରକାଶ କରିଛି । ଶିଶୁ ମାନଙ୍କ ପାଇଁ ଅନେକ ଶିକ୍ଷଣୀୟ ଗଳ୍ପ ଓ କବିତା ଲେଖି ସେ ସେମାନଙ୍କର ନିକଟବର୍ତ୍ତୀ ହୋଇପାରିଛନ୍ତି । ସାହିତ୍ୟର ବହୁ ବିଧ ବିଭାଗରେ ନିଜର ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିପାରିଥିବା ନନ୍ଦକିଶୋର ଗୀତିକବିତାର ଅତୀତ ଓ ସାମ୍ପ୍ରତିକ ସ୍ଥିତି ବିଷୟରେ ସୂଚନା ଦେବାକୁ ଯାଇ ପରମ ତୃପ୍ତିର ସହିତ କୁହନ୍ତି -ଦିନ ଥିଲା ଗୀତି କବି ମାନଙ୍କୁ ହୀନ ଦୃଷ୍ଟିରେ ଦେଖାଯାଉଥିଲା । କିନ୍ତୁ ବର୍ତ୍ତମାନ ସେ ସମୟ ଆଉ ନାହିଁ । ଓଡିଶା ସଂଗୀତ ନାଟକ ଏକାଡେମୀ ଓ ସାହିତ୍ୟ ଏକାଡେମୀ ଆଦି ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ଗୀତିକବି ମାନଙ୍କୁ ପୁରସ୍କୃତ ତଥା ସମ୍ବର୍ଦ୍ଧିତ କରାଯାଉଛି । ଓଡିଆ ଗୀତିକବି ସମାଜ ଆନୁକୂଲ୍ୟରେ ନିୟମିତ ଭାବରେ ଗୀତିକବିତା ପୁସ୍ତକ ପ୍ରକାଶନ ସହିତ ଗୀତିକବିତା ଉପରେ ସମ୍ମାନ ମାନ ଆୟୋଜନ କରାଯାଉଛି । ଓଡିଶାର ପ୍ରତ୍ୟେକ ସମ୍ଭ୍ରାନ୍ତ ପତ୍ରପତ୍ରିକା ବର୍ତ୍ତମାନ ଗୀତି କବିତାର ପ୍ରଚାର ଓ ପ୍ରସାର ପାଇଁ ଆଗଭର ହେଉଛନ୍ତି । ଗୀତିକବି ମାନଙ୍କୁ ପ୍ରୋତ୍ସାହନ ଦେବା ଦିଗରେ ତାଙ୍କର ମଧ୍ୟ ଅନବଦ୍ୟ ଅବଦାନ ରହିଛି । ପ୍ରତିବର୍ଷ କୋରେଇ ମଣ୍ଡଳ ସାହିତ୍ୟ ସଂସଦ ଓ ଉତ୍କଳ ସାହିତ୍ୟ ସମାଜ ସୌଜନ୍ୟରୁ ଗୀତିକବି ମାନଙ୍କୁ ପ୍ରଦତ୍ତ "କସ୍ତୁରୀ ପୁରସ୍କାର" ତଥା "ନବରୂପା-ରାଜ ପୁରସ୍କାର"(ତାଙ୍କ ପିତା ମାତା ଓ ପିତୃବ୍ୟଙ୍କ ନାମାନୁସାରେ ନାମିତା) ର ସ୍ଥାୟୀ ପାଣ୍ଠିକୁ ସେ ଆବଶ୍ୟକ ଅର୍ଥରାଶି ପ୍ରଦାନ କରୁଛନ୍ତି । ସଂଗୀତର ସ୍ୱଚ୍ଛତା ଓ ଶାଶ୍ୱତ ମୂଲ୍ୟବୋଧ ପ୍ରତି ସଦା ସଚେତନ ନନ୍ଦକିଶୋର ତାହାର ସାମ୍ପ୍ରତିକ ଅବକ୍ଷୟ କୁ ଏକ ଅପଶକୁନ ରୂପେ ବିବେଚନା କରନ୍ତି । ତାଙ୍କ ମତରେ "ଆଜିକାଲିର ଶସ୍ତା ମନୋରଂଜନ ଧର୍ମୀ ଗୀତ ସଂଗୀତର ମୌଳିକତାକୁ ଯଥେଷ୍ଟ ପରିମାଣରେ ନଷ୍ଟ କରୁ ଛି । ବିଶେଷତଃ ଜଗନ୍ନାଥଙ୍କୁ ଆଧାର କରି ଯେଉଁ ଭଜନ କ୍ୟାସେଟ ମାନ ପ୍ରସ୍ତୁତ ହେଉଛି ତାହା ଦ୍ୱାରା ସଂସ୍କୃତି ନାମରେ ଅପସଂସ୍କୃତିର ପ୍ରଚାର ହେଉଛି । ଆଉ ଯେଉଁମାନେ ଏପରି କ୍ୟାସେଟ ପ୍ରସ୍ତୁତ କରୁଛନ୍ତି ସେମାନେ ସନ୍ତ୍ରାସବାଦୀଙ୍କ ଠାରୁ ମଧ୍ୟ କମ୍ ଅପରାଧୀ ଓ ଭୟଙ୍କର ନୁହଁନ୍ତି । ସନ୍ତ୍ରାସବାଦୀ ମାନେ ସିନା କେତୋଟି ଜୀବନ ନଷ୍ଟ କରୁଛନ୍ତି, ମାତ୍ର ସେମାନେ ଗୋଟିଏ ଜାତିର ସଂସ୍କୃତିକୁ ନଷ୍ଟ କରୁଛନ୍ତି । " ସଂସ୍କୃତି ବିରୋଧୀ କୁଳ ପାଂଶୁଳ ମାନଙ୍କ ବିପକ୍ଷରେ ତାଙ୍କର ଏହି ବିଷୋଦ୍‌ଗାର କଦାପି ଅମୂଳକ ନୁହେଁ ।

ନନ୍ଦକିଶୋରଙ୍କ ରଚିତ ଗୀତ ଗୁଡିକ ଆକାଶବାଣୀ ଓ ଦୂରଦର୍ଶନର ବିଶିଷ୍ଟ ଗାୟକ ଗାୟିକା ଯଥା ସ୍ୱର୍ଗତଃ ବାଳକୃଷ୍ଣ ଦାଶ , ମହମ୍ମଦ ସିକନ୍ଦର ଆଲାମ, ଇନ୍ଦ୍ରାଣୀ ମିଶ୍ର, ପଦ୍ମାଳୟା ଗରାବଡୁ ଓ ଶେଖର ଘୋଷ ପ୍ରଭୃତିଙ୍କ ସ୍ୱର ମାଧୁର୍ଯ୍ୟ ଓ ଗାୟନ ଶୈଳୀ ଯୋଗେ ପ୍ରାଣବନ୍ତ ହୋଇଛି । ଏନ୍.ସି ଉଚ୍ଚବିଦ୍ୟାଳୟ, ଯାଜପୁର ରୋଡ୍‌ର ପ୍ରଧାନ ଶିକ୍ଷକ ଭାବେ ଅବସର ପ୍ରାପ୍ତ ନନ୍ଦକିଶୋର ଏକ ପଲ୍ଲୀ ଜୀବନ ଧର୍ମୀ ତ୍ରୈମାସିକ ସାହିତ୍ୟ ପତ୍ରିକା 'ବୋଲେ ହୁଁଟି' ର ସଂପାଦନା ଓ ପରିଚାଳନା ସହିତ ଉତ୍କଳ ସାହିତ୍ୟ ସମାଜ, ନିଖିଳ ଉତ୍କଳ ଶିଳ୍ପୀ ପରିଷଦ, ଓଡିଆ ଗୀତିକବି ସମାଜ, ଓଡିଆ ଶିଶୁ ସାହିତ୍ୟ ପରିଷଦ ଓ କୋରେଇ ମଣ୍ଡଳ ସାହିତ୍ୟ ସଂସଦ ଆଦି ଅନୁଷ୍ଠାନ ସହିତ ନିବିଡ ଭାବେ ଜଡିତ । ସେ ଆମେରିକା ବୋର୍ଡ ଅଫ୍ ଏଡିଟର ପକ୍ଷରୁ ରୋପ୍ୟ ପଦକରେ ସମ୍ମାନିତ । ତାଙ୍କର ଏକମାତ୍ର ପୁତ୍ର ଅଶୋକ ଜଣେ ସାହିତ୍ୟିକ ଓ ପୁତ୍ରବଧୂ କୁମୁଦୁନୀ ଜୀ ଜଣେ କବୟତ୍ରୀ । ସେମାନଙ୍କର ସାରସ୍ୱତ ସିଦ୍ଧିରେ ଅତ୍ୟନ୍ତ ପ୍ରୀତ ନନ୍ଦକିଶୋର ।

ଏଣେ ବାହାରେ ଝିପି ଝିପି ବର୍ଷାର ଯା-ଆସ ଆରମ୍ଭ ହୋଇଯାଇଥିଲା । 'କେମିତି ଯିବେ' କହି ଭାରି ବ୍ୟସ୍ତ ହେଲେ ସେ ! ମାତ୍ର ସମୟ ହେଲାଣି କହି ତାଙ୍କଠୁ ଫେରିଲା ବେଳକୁ ବୁଲିପଡି ଦେଖିଲି ଆଖିରେ ତାଙ୍କର ଆଗତ ସଂଗୀତର ରିମ୍‌ଝିମ୍ !

ଉପସ୍ଥାପନା- ଜ୍ଞାନରଂଜନ ଦାସ

## ବସନ୍ତ ଲେଖୁଛି ଚିଠି ଗୋଲାପି ଗୋଲାପି- ଧରିତ୍ରୀ ପକ୍ଷରୁ
## ଅଭିମନ୍ୟୁ ମିଶ୍ର

"ବସନ୍ତ ଲେଖୁଛି ଚିଠି ଗୋଲାପି ଗୋଲାପି"ର ସ୍ରଷ୍ଟା ନନ୍ଦକିଶୋର ସିଂହ କେବଳ ବେତାର ଶ୍ରୋତା ମହଲରେ ସୁପରିଚିତ ନୁହଁନ୍ତି ବହୁ ବିଦଗ୍ଧ ପାଠକ ସାହିତ୍ୟପ୍ରେମୀ ଜନସାଧାରଣଙ୍କର ମଧ ଦୃଷ୍ଟି ଆକର୍ଷଣ କରିଛନ୍ତି । ସେ ଏକ ଅନନ୍ୟ ପ୍ରତିଭା । ଏକାଧାରରେ ଗୀତିକାର, ନାଟ୍ୟକାର ଓ ଶିଶୁ ସାହିତ୍ୟିକ ମଧ । ଅନେକ ଦିନ ତଳେ ଏକ ଅଳସ ଅପରାହ୍ନରେ ତାଙ୍କ ସହ କେତୋଟି ମୁହୂର୍ତ୍ତର କିଛି କଥା ଏବେବି ମନରୁ ଭୁଲି ହୋଇନାହିଁ । ସେହି ଆଳାପ ଆଲୋଚନାରୁ କିଛି ପ୍ରିୟ ପାଠକ ପାଠିକାମାନଙ୍କ ପାଇଁ ....

:- ନନ୍ଦକିଶୋର ବାବୁ ଆପଣଙ୍କ ଗୀତି କବିତା ଓ ନାଟକ ଆମ ବେତାର କେନ୍ଦ୍ରରୁ ଅନେକ ଦିନରୁ ଶୁଣି ଆସୁଛୁ । ବିଭିନ୍ନ ପତ୍ରପତ୍ରିକାରେ ଆପଣ ଭିନ୍ନ ଭିନ୍ନ ସ୍ୱାଦର ଲେଖାଲେଖି ଚଳାଇଛନ୍ତି । ବିଶେଷତଃ ଶିଶୁ ମାନଙ୍କ ପାଇଁ ଆପଣଙ୍କ ଲେଖନୀ ସର୍ବଦା ଚଳ ଚଂଚଳ । ତେବେ ସାହିତ୍ୟର ବିଭିନ୍ନ ବିଭାଗ ସହ ଆପଣ ସଂପୃକ୍ତ ଥିଲେବି କେଉଁ ବିଭାଗ ଆପଣଙ୍କୁ ବେଶି ନିଜର କରିପାରିଛି ?

:- ଦେଖନ୍ତୁ ସାହିତ୍ୟର ପ୍ରତ୍ୟେକ ବିଭାଗ ପ୍ରତି ମୋର ଆକର୍ଷଣ ଥିଲେ ବି ଗୀତି କବିତା ଓ ଶିଶୁ ସାହିତ୍ୟ ରଚନାରେ ମୁଁ ବେଶି ସମୟ ଦେଇଥାଏ ।

:- ବେଶ କେଉଁ ଗୀତିକବିତା ଆପଣଙ୍କୁ ଶ୍ରୋତା ମହଲରେ ଅଧିକ ପରିଚିତ କରିପାରିଛି ?

:- ପ୍ରତ୍ୟେକଟି ଗୀତିକବିତା ମୋର ମାନସସନ୍ତାନ । ତେଣୁ ସେମାନଙ୍କ ଭିତରୁ ମୁଁ ବାଛବିଚାର କରିପାରିବିନି । ତେବେ 'ବଡ ଦାଣ୍ଡେ ଚାଲେ ଚକ ନନ୍ଦିଘୋଷ ରଥ' ଏବଂ 'ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ ମୋ ପ୍ରିୟାର ଗାଆଁଆଡେ', 'ଜହ୍ନ ଦେଇଛି ଚିଠି କୁନି ଜୋଛନା ହାତରେ','ସୁଷମାଗୋ ତୁମ ଅଂଗେ ଭରା ମଧୁ ଜୋଛନା', 'ବସନ୍ତ ଲେଖିଛି ଚିଠି ଗୋଲାପି ଗୋଲାପି ' ଶୁଣି ବହୁ ଗୋଲାପି ଚିଠି ଲେଖୁଥିବା ଯୁବକ ଯୁବତୀ ମୋତେ ଅଭିନନ୍ଦନ ଜଣାଇଛନ୍ତି । 'ମୁଁ ଯେ ଆଲୋକର ଏକ ଝଡ','କିଏ ସେ ଗଢିଲା ଦିନେ ଶିଳାର କୋଣାର୍କ' ବୌଦ୍ଧିକ ଆଲୋଡନ ସୃଷ୍ଟି କରିଛି । ତେଣୁ ପ୍ରତ୍ୟେକଟି ସୃଷ୍ଟି ଭିତରୁ ମୁଁ କିଛିନା କିଛି ସଫଳତା ଲାଭ କରିଛି ।

:- ଇଯେତ ଗଲା ଆପଣଙ୍କ ଗୀତିକବିତା କଥା । ଆପଣଙ୍କ ପ୍ରିୟ ଗାୟକ ଗାୟିକା ମାନେ କିଏ ?

ଓଡିଶାର ପ୍ରାୟ ପ୍ରତ୍ୟେକ ଗାୟକ ଗାୟିକା ମୋର 'ଗୀତି' ପ୍ରତି ଅକୁଣ୍ଠ ଶ୍ରଦ୍ଧା ଓ ସହାନୁଭୂତି ଦେଖାଇଛନ୍ତି । ତେବେ ମୋତେ ଏ ଦିଗରେ ପ୍ରେରଣା ଦେଇଛନ୍ତି ସମ୍ମାନୀୟ ସଂଗୀତ ସୁଧାକର ବାଳକୃଷ୍ଣ ଦାଶ । ଏହାଛଡା ସିକନ୍ଦର ଆଲାମ, ନଇମା ଆଲାମ, ଚିତ୍ତରଂଜନ ଜେନା, ଶେଖର ଘୋଷ, ଅର୍ଜ୍ଜୁନ ସାମଲ, କଲ୍ୟାଣୀ ଭଟାଚାର୍ଯ୍ୟ ନିରୋଜନଳିନୀ କୁଅଁର କ୍ରିଷ୍ଣା ମେହେଟା, ପଦ୍ମାଳୟା ଗରାବଡୁ, ଇନ୍ଦ୍ରାଣୀ ମିଶ୍ର ମୋ ରଚନା ପ୍ରତି ସର୍ବଦା ଆଗ୍ରହ ଦେଖାଇଥିବାରୁ ମୁଁ ଯଥେଷ୍ଟ ପ୍ରେରଣା ପାଇଛି ।

:- ଆଛା ଆପଣଙ୍କର ପ୍ରଥମ ବେତାର ନାଟକ କଣ ?

:- ୧୯୬୨ ମସିହାରେ ମୋର ପ୍ରଥମ ବେତାର ନାଟକ 'ଉଲୁପି' ପ୍ରଚାରିତ ହୁଏ । ଏହାପରେ ୧୯୬୩ରେ 'ଅଷ୍ଟବକ୍ର' ଠାରୁ ଆରମ୍ଭ କରି ୧୯୮୬ରେ 'ଯୌଥ ସନ୍ତାନ' ପର୍ଯ୍ୟନ୍ତ ନିରବଛିନ୍ନ ଭାବେ ବେତାର ନାଟକ ମୁଁ ଲେଖିଆସୁଛି ।

:- ଏଗୁଡିକ ମଧ୍ୟରୁ ଆପଣଙ୍କୁ କିଏ ବେଶି ସନ୍ତୋଷ ଦେଇଛି ?

:- ପ୍ରତ୍ୟେକ ନାଟକରୁ ମୁଁ କିଛିନା କିଛି ସନ୍ତୋଷ ପାଇଛି । ତେବେ ମୋତେ ସବୁଠୁ ପ୍ରତିଷ୍ଠା ଆଣିଦେଇଛି 'ମାନସୀ ଗବେଷଣାଗାର' ଏବଂ 'ସୂର୍ଯ୍ୟ ଶିଖା' ଏବଂ ଦୂରଦର୍ଶନର ଧାରାବାହିକ 'ବେଂଗ କହେ ବେଂଗୁଲିଛୋ' ।

:- ଆପଣଙ୍କର ଅଭିନୟରେ କିଛି ଦକ୍ଷତା ଅଛିକି ?

ଦକ୍ଷତା, ତାହା ଦର୍ଶକଙ୍କର ବିଚାର କରିବା କଥା କିନ୍ତୁ ଷଷ୍ଠ ଶ୍ରେଣୀରେ ପଢ଼ିବା ଠାରୁ ଆଜି ପର୍ଯ୍ୟନ୍ତ ଯେଉଁଠି ସୁଯୋଗ ମିଳିଛି ଜଣେ ସୌଖୀନ ଅଭିନେତା ଭାବରେ ତାକୁ ସାଦରେ ଗ୍ରହଣ କରିଛି । ବିଶେଷତଃ ୧୯୬୪ରୁ ଜଣେ ବେତାର ନାଟ୍ୟଶିଳ୍ପୀ ଭାବେ ମୁଁ ଅଭିନୟ କରିଆସୁଛି ।

:- ଚଳଚିତ୍ରରେ ଆପଣ ଅଭିନୟ କରିଛନ୍ତି କି ?

:- ନା, ସେ ସୁଯୋଗ ମିଳିନି, ବୟସ ମଧ୍ୟ ଧିରେ ଧିରେ ଅପରାହ୍ନମୁଖୀ । ଏଣୁ ସେ ଦିଗରେ ପ୍ରଚେଷ୍ଟା ନାହିଁ । ତେବେ ଚଳଚିତ୍ର ସହ ମୁଁ ଗୀତ ଲେଖାରେ ଗୋଟିଏ ଦୁଇଟିରେ ସଂପୃକ୍ତ ରହିଥିଲି ।

:- ଆପଣଙ୍କର ମଂଚ ନାଟକ କଥା କିଛି କୁହନ୍ତୁ ?

:- ମୋ ରଚିତ ମଂଚ ନାଟକ ଲହୁ -ଲୁହ, ଚାଣକ୍ୟ ବେଶ ବ୍ୟବସାୟିକ ସଫଳତା ହାସଲ କରିଥିଲା । ଏହାଛଡା ରାଜ୍ୟସ୍ତରୀୟ କ୍ଷୁଦ୍ର ନାଟକ ପ୍ରତିଯୋଗିତା ଏବଂ ଶିଶୁ ନାଟକ ପ୍ରତିଯୋଗିତାରେ ମଧ୍ୟ ମୋ ନାଟକ ପ୍ରଶଂସିତ ହୋଇଛି ।

:- ଆପଣଙ୍କ ଅନ୍ୟ ସାହିତ୍ୟକୃତି କିଛି....

:- ମାନେ-ଆପଣଙ୍କ ପ୍ରଶ୍ନ ଠିକ୍ ବୁଝିହେଲାନି । ଗୀତିକବିତା ଓ ନାଟକ ଏଗୁଡିକ କଣ ସାହିତ୍ୟ ପଦବାଚ୍ୟ ନୁହେଁ ?

:- ନାଇଁ-ମୋର ପଚାରିବାର ଉଦ୍ଦେଶ୍ୟ ହେଉଛି-ସାହିତ୍ୟ କ୍ଷେତ୍ରରେ ଆପଣଙ୍କ ସ୍ୱୀକୃତି କଣ ?

:- ହଁ ଓଡିଶାର ବିଭିନ୍ନ ଅନୁଷ୍ଠାନରୁ ମୁଁ ଶିଶୁ ସାହିତ୍ୟିକ ଭାବେ ସମ୍ମାନିତ ହୋଇଛି । ଏହାଛଡା କବିତା ଓ ମଜାଗପ ପ୍ରତିଯୋଗିତାରେ ମଧ୍ୟ ପୁରସ୍କୃତ ହୋଇଛି ।

:- ଏବେ ଆପଣଙ୍କ ସାରସ୍ୱତ ପ୍ରକାଶନ ସମ୍ବନ୍ଧରେ କିଛି ବକ୍ତବ୍ୟ ଥିଲେ କୁହନ୍ତୁ ?

:- ହଁ ଏଯାବତ୍ ମୋର ୧୫/୧୬ ଟି ପୁସ୍ତକ ପ୍ରକାଶ ପାଇଛି । ଏଗୁଡିକ ଭିତରେ ଶିଶୁ ସାହିତ୍ୟ, ଗୀତିକବିତା, ନାଟକ, ଉପନ୍ୟାସ, ଅନୁବାଦ ଇତ୍ୟାଦି ପ୍ରଧାନ ।

ଧରିତ୍ରୀ- ୧୩.୩.୧୯୮୮

# ଶିଶୁ ସାହିତ୍ୟ ରଚନା ପାଇଁ ଶିଶୁ ମନସ୍ତତ୍ତ୍ୱ ଅପରିହାର୍ଯ୍ୟ
# (୨୯ମଇ ୨୦୦୫)-ଧ୍ୱନି ପ୍ରତିଧ୍ୱନି

ନନ୍ଦକିଶୋର ସିଂହ ଜଣେ ବରିଷ୍ଠ ଶିଶୁ ସାହିତ୍ୟିକ ଭାବରେ ଓଡିଶାର ପ୍ରତିଟି ମହଲରେ ବେଶ୍ ପରିଚିତ । ଶିଶୁର ଆଗ୍ରହ ଓ ମନକୁ ଲକ୍ଷ୍ୟ କରି ସେ ଯେଉଁ ଶିଶୁ ଲେଖାମାନ ସୃଷ୍ଟି କରନ୍ତି ତାହା ନିଶ୍ଚିତ ଭାବେ ଲୋକପ୍ରିୟ । ୧୯୪୦ ମସିହାରେ ଯାଜପୁର ଜିଲ୍ଲାର କୋରେଇ ଗ୍ରାମରେ ତାଙ୍କର ଜନ୍ମ । ୪୦ରୁ ଉର୍ଦ୍ଧ୍ୱ ପୁସ୍ତକର ସ୍ରଷ୍ଟା ଏହି ଲେଖକ ଦଶବର୍ଷ ବୟସରୁ ଲେଖାଲେଖି ଆରମ୍ଭ କରି ଅଦ୍ୟାବଧିଜାରି ରଖିଛନ୍ତି । ତାଙ୍କ ସହ ଏଥରର ଆଳାପ ।

➡ ଆପଣ ଜଣେ ବରିଷ୍ଠ ଶିଶୁ ସାହିତ୍ୟିକ ହିସାବରେ ଶିଶୁ ସାହିତ୍ୟର ଆବଶ୍ୟକତା ସଂପର୍କରେ ଆପଣଙ୍କର ଧାରଣା କଣ ?

➡ ଶିଶୁ ସାହିତ୍ୟର ଏକାନ୍ତ ଆବଶ୍ୟକତା ରହିଛି । ଶିଶୁର ମାନସିକ, ଆବେଗିକ ଏପରିକି ଶାରିରୀକ ଶକ୍ତି ବୃଦ୍ଧି ଏବଂ ବିକାଶ ନିମିତ୍ତ ଏହାର ଖୋରାକ ଯୋଗାଇଥାଏ ।

➡ କବିତା ନା ଗଳ୍ପ ଶିଶୁଙ୍କ ପାଇଁ କାହାର ଆବଶ୍ୟକତା ବେଶୀ ବୋଲି ଆପଣ ମନେ କରନ୍ତି । ଦୟାକରି ତିନିଟି କାରଣ ଦର୍ଶାନ୍ତୁ ।

➡ କବିତା ଓ ଗଳ୍ପ ଉଭୟର ଆବଶ୍ୟକତା ରହିଛି ।

(କ) ଉଭୟ ବିଭାଗ ଶିଶୁର ଆଗ୍ରହ ଓ ଅନୁସନ୍ଧିତ୍ସା ବଢ଼ାଇଥାଏ ।

(ଖ) କବିତା ବିଭାଗର ନାନାବାୟା ଗୀତ ଠାରୁ ଖେଳ ଗୀତ ଯାଏ ଶିଶୁର ମନୋରଂଜନ ପାଇଁ ବେଶ୍ ଆବଶ୍ୟକ ।

(ଗ) ଗଳ୍ପ ଓ କବିତା ପ୍ରତ୍ୟେକ୍ଷରେ କଳ୍ପନା ବିଳାସକୁ ସମୃଦ୍ଧ କରିବା ସଂଗେ ସଂଗେ ପରୋକ୍ଷରେ ନୀତିଶିକ୍ଷା ଦେଇଥାଏ ।

➡ ଶିଶୁ ମନୋବିଜ୍ଞାନର ଶିଶୁ ସାହିତ୍ୟରପରିଣତି- ଏ କଥାରେ ଆପଣ କେତେଦୂର ଏକମତ ?

➡ ନାଁ - ମୁଁ ଏଥିରେ ସଂପୂର୍ଣ୍ଣ ଏକମତ ନୁହେଁ । ଶିଶୁ ସାହିତ୍ୟ ରଚନା ପାଇଁ ଶିଶୁ ମନୋବିଜ୍ଞାନ ରେ ଧାରଣା ଅପରିହାର୍ଯ୍ୟ ସତ । କିନ୍ତୁ ମନୋବିଜ୍ଞାନକୁ ନେଇ ଶିଶୁ ସାହିତ୍ୟ ରଚନା କଲେ ଏହାର ସ୍ୱତସ୍ଫୁର୍ତ୍ତତା ନଷ୍ଟ ହେବ ।

➡ ଇଲୋକ୍ଟ୍ରୋନିକ ମେଡିଆ ଶିଶୁ ସାହିତ୍ୟର ସ୍ଥିତି ଦିଗରେ ବିରାଟ ପ୍ରଶ୍ନବାଚୀହୋଇ ଠିଆ ହୋଇଛି । ଏ ସଂପର୍କରେ ଆପଣଙ୍କର ଧାରଣା କଣ ?

➡ ଇଲୋକ୍ଟ୍ରୋନିକ୍ ମିଡିଆ କେବଳ ଶିଶୁ କାହିଁକି ଆମ ସମସ୍ତଙ୍କର ପାଠକୀୟ ମନସ୍କତାକୁ ଅନେକ ପରିମାଣରେ ହ୍ରାସ କରିଛି । କିନ୍ତୁ କୌଣସି ସମୟରେ ଏହା

ପାଠକଙ୍କୁ ସଂପୂର୍ଣ୍ଣ ଭାବେ ଶ୍ରୋତା ବା ଦର୍ଶକରେ ବଦଳାଇ ପାରିବନାହିଁ ।

⟹ ଶିଶୁ ପାଖରେ ସାହିତ୍ୟ ପହଂଚୁଛି କି ? ବାଡି ବାଇଗଣ ନ୍ୟାୟରେ ଏହାକୁ ଅନୁଧ୍ୟାନ କରିଥିଲେ ଆପଣଙ୍କ ମତାମତ ଦିଅନ୍ତୁ ?

⟹ ମୁଁ ଗବେଷକ ନୁହେଁ । ଏଣୁ କେତେ ସଂଖ୍ୟାରେ ଏହା ଶିଶୁଙ୍କ ପାଖେ ପହଂଚୁଛି ତାହା କହିପାରିବି ନାହିଁ । ତେବେ ପୁସ୍ତକମେଳା ଗୁଡିକରେ ଶିଶୁ ସାହିତ୍ୟ ବିକ୍ରି ଭଲ ହେଉଛି । ଶିଶୁ ସାହିତ୍ୟ ପତ୍ରିକା ମଧ୍ୟ ବହୁ ସଂଖ୍ୟାରେ ପ୍ରକାଶ ପାଇବା ଶୁଭଲକ୍ଷଣ ।

⟹ ଚେଷ୍ଟା କରି ଡାକ୍ତର ଇଂଜିନିୟର ଏବଂ ବୈଜ୍ଞାନିକ ମାନଙ୍କୁ ତିଆରି କରିହୁଏ । ଚେଷ୍ଟାକରି ପାଠକ ମାନଙ୍କୁ ତିଆରି କରିହେବକି ?

⟹ ନା- କାରଣ ପାଠକଟିଏ ତିଆରି କରିବାକୁ ନିର୍ଦ୍ଦିଷ୍ଟ ସିଲାବସ୍ ବା ମାନଦଣ୍ଡ ନାହିଁ ଏହା ସଂପୂର୍ଣ୍ଣ ଭାବରେ ରୁଚିବୋଧ ଉପରେ ନିର୍ଭରଶୀଳ । ତେବେ ରୁଚିବୋଧ ଓ ଯୁଗଧର୍ମର ତାଳମେଳ ରହି ଉପଯୁକ୍ତ ବାଟରେ ସାହିତ୍ୟ ଚାଳିବା ଦରକାର ।

⟹ ବର୍ତ୍ତମାନ ଶିଶୁ ସାହିତ୍ୟ ପ୍ରକାଶ ଧାରାରେ ରଂଗୀନ ଚିତ୍ର ସାଙ୍ଗୀତିକତା ଏବଂ ଭାପ୍ରବଣତା ଆଦିର ଅଭାବ ପରିଲକ୍ଷିତ ହେଉଛି । ଏହାକୁ ଦୂରୀଭୂତ କରିବା ପାଇଁ କଣ କରାଯିବା ଉଚିତ ?

⟹ 'ଯେତେ ଚୁନାକୁ ସେତେ ପିଠା'ନ୍ୟାୟରେ ଚାଲିଛି । ତେବେ ଚୁନା-ଚିନି ସାଙ୍ଗକୁ ଠିକ୍ ରାନ୍ଧୁଣିଆର ଆବଶ୍ୟକତା ଅଛି ।

⟹ ଅଧୁନା ଆମ ଓଡଶାରେ ପାଶ୍ଚାତ୍ୟ ଶିଶୁ ସାହିତ୍ୟ ଓଡିଆ ଶିଶୁ ସାହିତ୍ୟ ଅପେକ୍ଷା ଅଧିକ ଲୋକପ୍ରିୟ ହେବାରେ ଲାଗିଛି । ଏହାର କାରଣ କଣ ?

⟹ ସାଧାରଣ ସ୍କୁଲକୁ ଛାଡି ଇଂରେଜୀ ମିଡିୟମ ସ୍କୁଲରେ ପାଠ ପଢାଇବା ସାଙ୍ଗକୁ ଖାଦ୍ୟ ପୋଷାକରେ ଆମେ ଅଭିଭାବକ ଗଣ ପାଶ୍ଚାତ୍ୟ ସଭ୍ୟତା ପ୍ରତି ଏତେ ଆଗ୍ରହୀ ହେବାର କାରଣ ଖୋଜୁନା । ଆତ୍ମନିରୀକ୍ଷଣ ର ଆବଶ୍ୟକତା ଅଛି ଏ କ୍ଷେତ୍ରରେ ।

⟹ ବର୍ତ୍ତମାନ ଶିଶୁ ସାହିତ୍ୟରେ ନୂଆ ପ୍ରକାର ମୋଡ ଦେବାପାଇଁ ସମୟ ଆସିଛି କି ? ଯଦି ହଁ ତେବେ ତାର ସ୍ୱରୂପ କଣ ?

⟹ କିଛିଟା ବୈଜ୍ଞାନିକ ତଥ୍ୟ ଓ ଚିନ୍ତା ପ୍ରବେଶ କରିଛି । ହାତ ଗଣତି କେତେକ ଶିଶୁ ସାହିତ୍ୟ ପତ୍ରିକା ଆକର୍ଷଣୀୟ ହେଉଛି । ଇଣ୍ଟରନେଟରେ ମଧ୍ୟ ଉପଲବ୍ଧ ହେଉଛି ।

⟹ ଆଜିଠାରୁ ଦଶବର୍ଷ ପରେ ଓଡିଆ ଶିଶୁ ସାହିତ୍ୟର ସ୍ୱରୂପ କିପରି ହୋଇଥିବ ବୋଲି ଭାବୁଛନ୍ତି ?

କିଛିଟା ସଂଖ୍ୟାତ୍ମକ ବୃଦ୍ଧି ହୋଇଥିବ, ଗୁଣାତ୍ମକ କ୍ଷେତ୍ରରେ ଏତେଟା ଅଭିବୃଦ୍ଧି ରେ ମୁଁ ସନ୍ଦୀହାନ ।

ପ୍ରସ୍ତୁତି- ମୋନାଲିସା

# ବିବର୍ତ୍ତନ ତରଫରୁ କେଇଟି ମୁହୂର୍ତ୍ତ

## ଗୀତିକାର ନାଟ୍ୟକାର ତଥା ଶିଶୁ ସାହିତ୍ୟିକ, ଶ୍ରୀ ନନ୍ଦକିଶୋର ସିଂଙ୍କ ସହ 'ବିବର୍ତ୍ତନ'ର କେତୋଟି ଅନ୍ତରଙ୍ଗ ମୁହୂର୍ତ୍ତ ।

ବେତାର ଦୂରଦର୍ଶନ ତଥା ଚଳଚିତ୍ର ଜଗତରେ ଗୀତି କବିତା କ୍ଷେତ୍ରରେ ନନ୍ଦକିଶୋର ସିଂ ଏକ ଜଣାଶୁଣା ନାମ । ଏହାଛଡା ସେ ମଧ୍ୟ ଜଣେ ସଫଳ ନାଟ୍ୟକାର, ନାଟ୍ୟଶିଳ୍ପୀ ତଥା ଶିଶୁ ସାହିତ୍ୟିକ । ଏହି ନିରଳସ ସାଧାରଣ ମଣିଷଟିର ଘର ଯାଜପୁର ଜିଲ୍ଲା ଅନ୍ତର୍ଗତ କୋରେଇ ଗ୍ରାମରେ । ବର୍ତ୍ତମାନ ଢେଙ୍କାନାଳ ଶିକ୍ଷାଜିଲ୍ଲା ଅଧିଶଙ୍କ ଦପ୍ତରରେ ଅଣ-ଆନୁଷ୍ଠାନିକ ଶିକ୍ଷାର ବ୍ଲକ ସ୍ତରୀୟ ଦାୟୀତ୍ୱରେ ଅବସ୍ଥାପିତ । ତାଙ୍କ ସହ ଏକ ଅଳସ ଅପରାହ୍ଣରେ ବିବର୍ତ୍ତନ ତରଫରୁ ସାକ୍ଷାତ କରାଯାଇଥିଲା । ସାକ୍ଷାତ କରିଥିଲେ ଶିଶିର କୁମାର ନାୟକ ଓ ପ୍ରସନ୍ନ ବାରିକ ।

➩ ଆପଣ କେବେଠାରୁ ଲେଖାଲେଖି ଆରମ୍ଭ କଲେଣି ?

➩ ମୁଁ ପ୍ରାୟ ଷଷ୍ଠ ଶ୍ରେଣୀରେ ପଢୁଥିବା ସମୟରେ କବିତା ଲେଖା ଆରମ୍ଭ କଲି । ସମ୍ଭବତଃ ମୋର ପ୍ରଥମ ପ୍ରକାଶିତ ଗପ 'ନେଉଳ ଭାଇର ରାଇଜ ଫେରି' ମୀନା ବଜାରରେ ୧୯୫୨-୫୩ରେ ପ୍ରକାଶିତ ହୋଇଥିଲା ।

➩ କେଉଁ କେଉଁ ବିଭାଗ ପାଇଁ ଆପଣ ଲେଖନ୍ତି ?

➩ ମୁଁ ସାହିତ୍ୟର ପ୍ରତିଟି ବିଭାଗ ପାଇଁ ଲେଖିଥାଏ କହିଲେ ଭୁଲ ହେବନାହିଁ । ତେବେ ଗୀତିକବିତା କ୍ଷୁଦ୍ର ନାଟକ ଏବଂ ଶିଶୁ ସାହିତ୍ୟ ରଚନା କ୍ଷେତ୍ରରେ ମୋର ଆଗ୍ରହ ଖୁବ୍ ବେଶୀ ।

➩ ଲେଖା ଲେଖି ପାଇଁ ପ୍ରେରଣା କେଉଁଠୁ ପାଆନ୍ତି ?

➩ ମୋତେ ଲେଖା ଲେଖି କରିବା ପାଇଁ ପ୍ରେରଣା ଯୋଗାଇଛି ମୋର ସହଜାତ ପ୍ରବୃତ୍ତି ତେବେ ମୋର ପରିବାର ମୋ ବନ୍ଧୁ ସମାଜ, ପରିବେଶର ଅବଦାନ ମଧ୍ୟ ରହିଛି ।

➩ ଲେଖା ମାଧ୍ୟମରେ ସମାଜକୁ ଆପଣ କଣ ବାର୍ତ୍ତା ଦେବାକୁ ଚାହାନ୍ତି ?

➩ ସମାଜକୁ କିଛି ନିର୍ଦ୍ଦିଷ୍ଟ ବାର୍ତ୍ତା ଦେବା ପାଇଁ ମୁଁ ଲେଖେ ନାହିଁ । କାରଣ ସମାଜକୁ ଠିକ୍ ବାଟରେ ଚଳାଇବା ପାଇଁ ଯୁଗେ ଯୁଗେ ବହୁ ମହାପୁରୁଷ ଜନ୍ମ ଗ୍ରହଣ କରି ସ୍ୱକୀୟ ଦୃଷ୍ଟିକୋଣରୁ ନୂତନ ସଂଦେଶ ଦେଇ ଆସିଛନ୍ତି । ମୋର ସେ ଯୋଗ୍ୟତା ନାହିଁ ।

ମୁଁ ଲେଖେ ଆଉ ଲେଖିଚାଲେ । ସେଇ ଲେଖା ଭିତରୁ ସମାଜ ଯଦି କିଛିଟା ଉପକୃତ ହେଉଥାଏ ତେବେ ସେଇଠି ମୋ ଲେଖାର କିଛି ସାର୍ଥକତା ଅଛି ବୋଲି ଭାବିଥାଏ ।

⟹ ଆପଣ ଅଧିକ ଗୀତି କବିତା ହିଁ ଲେଖନ୍ତି କିନ୍ତୁ ଆଜିର ଗଦ୍ୟ କବିତା ଉପରେ ଆପଣଙ୍କ ମତାମତ କଣ ?

⟹ ମୁଁ ପ୍ରାୟତଃ ଗୀତିକବିତା ଲେଖେ-ଗଦ୍ୟ କବିତାର ମଧ୍ୟ ଏକ ଅନ୍ତଃସ୍ୱର ରହିଛି । ଏହା ମଧ୍ୟ ପାଠକଙ୍କୁ କମ୍ ଆକୃଷ୍ଟ କରେନି । କବିତାର ଭାବ ଭାଷା ବର୍ଣ୍ଣନା ଯଦି ସୁସ୍ପଷ୍ଟ ତେବେ ପାଠକ ମନକୁ ଛୁଇଁଥାଏ । କିନ୍ତୁ ଜାଣିଶୁଣି ଗୁଡାଏ ସିମ୍ବଲ୍, ଇଜିମି, ଇମାଜେରି(ରୂପକଳ୍ପ) ଦେବାର ପ୍ରୟାସ କରି କବିତାକୁ ଭାରାକ୍ରାନ୍ତ କରାଯିବା ସପକ୍ଷରେ ମୁଁ ନୁହେଁ ।

⟹ ପୁସ୍ତକ ପ୍ରକାଶନ ଉପରେ ଆପଣଙ୍କ ମତାମତ କଣ ?

⟹ ମୋର ଏଯାବତ୍ ୩୦/୩୫ ଖଣ୍ଡ ପୁସ୍ତକ ପ୍ରକାଶ ପାଇଛି । ତନ୍ମଧ୍ୟରୁ ଗୀତିକବିତା ୨ଖଣ୍ଡ ନାଟକ ଏକାଂକିକା ୫ଖଣ୍ଡ ଶିଶୁ ସାହିତ୍ୟ ୯ ଖଣ୍ଡ ଅନୁବାଦ ୭ଖଣ୍ଡ । ଭଲ ପ୍ରକାଶନ ସଂସ୍ଥାଟିଏ ପାଇଲେ ଭଲ ପୁସ୍ତକଟିଏ ପ୍ରକାଶ ପାଇଥାଏ । ଆପଣ ଜାଣିଥିବେ ଅନେକ ପ୍ରସିଦ୍ଧ ଲେଖକ ଲେଖିକାଙ୍କର ସ୍ୱ-ପ୍ରକାଶନ ସଂସ୍ଥା ରହିଛି ।

⟹ କଣ କଲେ ସାହିତ୍ୟ ଅଧିକ ଲୋକାଦୃତ ହୋଇପାରିବ ?

⟹ ଲେଖକର ଅନୁଶୀଳନ ଯେତିକି ବ୍ୟାପକ ଅନ୍ତଦୃଷ୍ଟି ଯେତିକି ଗଭୀର ତାର ଲେଖା ସେତିକି ମାର୍ଜିତ ଆଉ ବିଦଗ୍ଧ ପାଠକ ହୃଦୟକୁ ତାହା ସେତିକି ଆନ୍ଦୋଳିତ କରିବାରେ ସମର୍ଥ ।

⟹ 'ଆପଣ କଣ ଭାବୁଛନ୍ତି ଆଜିର ଲେଖକ ସମାଜରେ ଉପଯୁକ୍ତ ମର୍ଯ୍ୟାଦା ପାଇଛି ?

⟹ ଲେଖକର ମଧ୍ୟ ସମାଜରେ କିଛିଟା ମର୍ଯ୍ୟାଦା ରହିଛି । ଲେଖକଟିଏ ମଧ୍ୟ କୌଣସି ସଂସ୍ଥା ଦ୍ୱାରା ପୁରସ୍କାର କି ସମ୍ମାନିତ ହେଲେ ସେ ନିଶ୍ଚିତ ଭାବେ କିଛିଟା ପ୍ରେରଣା ଆଉ ପ୍ରୋତ୍ସାହନ ପାଇଥାଏ । ତେବେ ଆଜିର ତଥାକଥିତ ରାଜନୀତିକ ଦୃଷ୍ଟିକୋଣରୁ ସମାଜରେ ଲେଖକର ସମ୍ମାନ ଏକ ଭିନ୍ନ ପ୍ରଶ୍ନ, ତାହା ବିବାଦୀୟ ମଧ୍ୟ ।

⟹ କେଉଁଥିରେ ବେଶି ଆନନ୍ଦ ପାଇଛନ୍ତି -ସମ୍ମାନରେ ନା ପୁରସ୍କାରରେ ?

⟹ ଯେଉଁ ସଂସ୍ଥା ମୋତେ ପୁରସ୍କୃତ କରୁ କି ସମ୍ମାନିତ କରୁ ତାର ଏହି ପୁରସ୍କାର ଓ ସମ୍ମାନ ଦେବା ପଛରେ କେତେ ଆଗ୍ରହ ରହିଛି ସେଇଟାକୁ ମୁଁ ବେଶି ଗୁରୁତ୍ୱ ଦେଇଥାଏ ପାଠକର ଆଦର ବୋଳା ଚିଠି ଖଣ୍ଡିଏ ମୋତେ ସବୁଠୁ ବେଶି ଆନନ୍ଦ ଦେଇଥାଏ ।

⟹ ଧନ୍ୟବାଦ ଆପଣଙ୍କ ମତାମତ ପାଇଁ ।

⟹ ମୁଁ ମଧ୍ୟ ଆପଣଙ୍କୁ ଧନ୍ୟବାଦ ଜଣାଉଛି ।

# କୌଣସି ଗୋଟିଏ ବିଭାଗରେ ବିଶେଷଜ୍ଞ ହେବା ପାଇଁ ଚାହିଁନାହିଁ

ଓଡିଆ ସାହିତ୍ୟ ଜଗତରେ ଏକ ପରିଚିତ ନାମ ନନ୍ଦ କିଶୋର ସିଂହ । ଶିଶୁ ସାହିତ୍ୟ, ନାଟକ, ଗୀତି କବିତା ଉପନ୍ୟାସ ଓ ପ୍ରବନ୍ଧ ପ୍ରଭୃତି ସବୁ ବିଭାଗରେ ସେ ପ୍ରାୟ ପଚାଶ ବର୍ଷ ଧରି ଲେଖନୀ ଚାଳନା କରିଛନ୍ତି । " ମାନସୀ ଗବେଷଣାଗାର" ନାମକ ବୈଜ୍ଞାନିକ ଚିନ୍ତାଧାରାର ନାଟକ ରଚନା କରିଥିବା ଶ୍ରୀ ସିଂହ 'ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ ମୋପ୍ରିୟାର ଗାଆଁ ଆଡେ' ଭଳି ରୋମାଣ୍ଟିକ ଗୀତ ବି ରଚନା କରିଛନ୍ତି । ମୀନା ବଜାରରେ ଶିଶୁ ଲେଖାରୁ ଆରମ୍ଭ କରି ସେ ଏବେବି ଲେଖୁଛନ୍ତି ଶିଶୁ ସାହିତ୍ୟ । ଟା-ଟା-ଟା(କବିତା) ଓ ମକରାର କାକରା ଖିଆ ଗପ ତାଙ୍କର ସଦ୍ୟ ପ୍ରକାଶିତ ଶିଶୁ ଉପଯୋଗୀ ପୁସ୍ତକ । ସମକାଳୀନ ସାହିତ୍ୟର ଏକ ବିଶିଷ୍ଟ ସ୍ରଷ୍ଟାଙ୍କୁ ସାକ୍ଷାତ କରିଥିଲେ ରାଧାନାଥ ମହାପାତ୍ର ।

➡ ଆପଣ ଏକାଧାରରେ ଜଣେ ସାହିତ୍ୟକାର, ନାଟ୍ୟକାର, ଶିଶୁ ଲେଖକ ଏବଂ କବି । ସାହିତ୍ୟର ଏତେ ଗୁଡିଏ ବିଭାଗରେ ଆପଣ ନିଜକୁ ବାଣ୍ଟିବାକୁ ଇଚ୍ଛା କଲେ କଣ ପାଇଁ ?

➡ ମୁଁ ସବୁ ବିଭାଗରେ ଲେଖିବାକୁ ଚାହିଁନାହିଁ କି କୌଣସି ଗୋଟିଏ ବିଭାଗରେ ବିଶେଷଜ୍ଞ ହୋଇ ପୁରସ୍କାର ସମ୍ମାନ ପାଇଁ ନିଜକୁ ପ୍ରସ୍ତୁତ କରିବାକୁ ଚାହିଁନି । ଯେତେବେଳେ ଯାହା ମୋ ମନକୁ ଆସିଛି ମୁଁ ତାକୁ ଲେଖିଛି, ଲେଖୁଛି ।

➡ କୁହାଯାଏ ସବୁ ଆଡିକି ହେଲେ କୌଣସି ଗୋଟିଏ ବିଭାଗ ପ୍ରତି ନ୍ୟାୟ ପ୍ରଦର୍ଶନ କରିହୁଏ ନାହିଁ । ଭାଷାରେ ବୈଷମ୍ୟ ରହେ ବୋଲି ଅଭିଯୋଗ ହୁଏ । ଏହାକୁ ଆପଣ କିଭଳି ଗ୍ରହଣ କରିବେ ?

➡ ହଁ ମୁଁ ବି ଶୁଣିଛି ଏମିତି କୁହାଯାଏ । କିନ୍ତୁ ମୋକ୍ଷେତ୍ରରେ ସେ ଅନୁଭୂତି ହେବାର ନାହିଁ । ଯେଉଁଟା ଯେଭଳି ରୂପ ନେଇ ଆତ୍ମପ୍ରକାଶ କରିବା କଥା କରୁଛି ।

➡ ଆପଣ ଗୀତିକାର ଭାବେ ଜଣାଶୁଣା । ସବୁ ବିଭାଗରେ ଥାଇ ଗୋଟିଏ ବିଭାଗରେ ଅଧିକ ପରିଚିତି ଓ ଖ୍ୟାତି ସାଉଁଟିବାର ରହସ୍ୟ କଣ ?

➡ ରହସ୍ୟ କିଛି ନାହିଁ । ପ୍ରଥମତଃ ମୁଁ ଜଣେ ପ୍ରଚାର ବିମୁଖ ଲୋକ । ଗୀତିକବି ବା ଗୀତିକାର ଭାବେ ମୋତେ ଯେବେ କିଏ ବେଶି ଲୋକଲୋଚନକୁ ଆଣିଥାଏ ତାହା ହେଉଛି ରେଡିଓ । ରେଡିଓରେ ଗୀତର ପ୍ରଚାର କାଳ ଅଧିକ । ନାଟକ ତା ତୁଳନାରେ ଯଥେଷ୍ଟ କମ୍ । ତଥାପି ମୁଁ ଗୋଟେ କଥା କହିବି ମୁଁ ଗୀତି କବିତା ଆଡକୁ ବେଶି ଝୁଙ୍କି

ନାହିଁ । ସବୁ ଦିଗକୁ ଦୃଷ୍ଟି ଦେଇଛି । ପାଠକମାନେ ମୋତେ ଗ୍ରହଣ କରିଛନ୍ତି । ଅବଶ୍ୟ ଗୀତିକବି ହିସାବରେ ବେଶି ସମ୍ମାନ ଓ ପ୍ରତିଷ୍ଠା ମିଳିଛି ।

➡ ସାରସ୍ୱତ ସାଧନାରେ ଆପଣ କେଉଁ ବିଭାଗରେ ସର୍ବ ପ୍ରଥମେ ଲେଖା ଆରମ୍ଭ କରିଥିଲେ ?

➡ ମୁଁ ଲେଖାଲେଖି ଆରମ୍ଭ କଲି ୧୯୫୪ ମସିହାରୁ ସେତେବେଳେ ଚତୁର୍ଥ ଶ୍ରେଣୀରେ ପଢୁଥିଲି । ପ୍ରଥମ ଲେଖା ମୋର ପ୍ରକାଶ ପାଇଲା ସପ୍ତମ ଶ୍ରେଣୀରେ ପଢିଲା ବେଳକୁ । ମୀନା ବଜାରରେ ଶୀର୍ଷକ ଥିଲା "ନେଉଳ ଭାଇର ରାଇଜ ଫେରି"। ବର୍ତ୍ତମାନ ସୁଦ୍ଧା ୩୫ଖଣ୍ଡ ବହି ପ୍ରକାଶ ପାଇଛି ।

➡ ସାରସ୍ୱତ ସାଧନାରେ ପ୍ରବୃତ୍ତ ହେବା ପଶ୍ଚାତରେ ପାରିବାରିକ ପ୍ରତିଫଳନ ଥିଲା କି ? ଆପଣଙ୍କ ପରିବାରରୁ କେହି ଲେଖାଲେଖି କରୁଥିଲେ ?
ପାରିବାରିକ ପ୍ରତିଫଳନ କହିଲେ ବାପା(ରାଜକିଶୋର ସିଂହ) ଲେଖାଲେଖି କରୁଥିଲେ କିନ୍ତୁ ସଂଗୀତର ପ୍ରଭାବ ମୋ ଉପରେ ବିଶେଷ ଭାବେ ପଡିଥିଲା । ମୋ ଗୋସେଇଁ ବାପା(କାଳନ୍ଦୀ ପ୍ରସାଦ ସିଂହ) ଥିଲେ ଜଣେ ବେହେଲା ବାଦକ । ମୋଟ ଉପରେ କଳା ଓ ସାହିତ୍ୟ ପ୍ରତି ଅନୁରାଗ ଥିଲା ବୋଲି କହିପାରେ ।

➡ ଆକାଶବାଣୀ ସହିତ ଆପଣ କେବେଠାରୁ ଓ କେଉଁ ବିଭାଗରେ ଲେଖାଲେଖି କରୁଥିଲେ । ତେବେ ୧୯୬୨ମସିହାରେ ସର୍ବପ୍ରଥମେ ନାଟ୍ୟକାର ଭାବେ ପରିଚିତ ହେଲି ପୌରାଣିକ ନାଟକ ଉଲୁପି ଜରିଆରେ । ତାପରେ ୧୯୬୪ ମସିହାରେ ଲେଖିଲି ଗୀତ । ପ୍ରଥମ ଗୀତ ଥିଲା 'ଜୀବନ ପଥ ମୋର' ଏହାକୁ ଗାଇଥିଲେ ଡକ୍ଟର ମନୋରଂଜନ ପୃଷ୍ଟି ।

➡ ବର୍ତ୍ତମାନ ସୁଦ୍ଧା ଆପଣ କେତୋଟି ନାଟକ ଓ ଗୀତ ରଚନା କରିଛନ୍ତି ?
ଆକାଶବାଣୀରେ ୩୦ରୁ ଉର୍ଦ୍ଧ୍ୱ ନାଟକ ପ୍ରଚାରରିତ ହେବା ସହିତ ମୁଁ ୩ଟି ମଞ୍ଚ ନାଟକ ରଚନା କରିଛି ଓ ୫୦୦୦ ଗୀତ ଲେଖିଛି । ଯେଉଁଥିରୁ ପ୍ରଚାରିତ ହୋଇଛି ୨୦୦୦ ।

➡ କେଉଁ ନାଟକ ଓ ଗୀତ ପାଇଁ ଆପଣଙ୍କୁ ସର୍ବଶ୍ରେଷ୍ଠ ସଫଳତା ମିଳିଛି ?
ସେମିତି ଆକଳନ ତ ମୁଁ କରିନି । ତେବେ ମୋର ବୈଜ୍ଞାନିକ ଚିନ୍ତା ପ୍ରସୁତ ନାଟକ "ମାନସୀ ଗବେଷଣାଗାର", ହାସ୍ୟରସାତ୍ମକ ନାଟକ 'ପ୍ରିୟ ବାବୁ', 'ଷଡବିକାର' ମନେରଖିବା ଭଳି ନାଟକ । ଗୀତ ତ ଅନେକ ଅଛି । ତେବେ ଗାୟକ ଚିତ୍ତରଂଜନ ଜେନା ଗାଇଥିବା "ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ ମୋପ୍ରିୟାର ଗାଁଆଡେ" ଓ "ଭଜନ ବଡ ଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ" ଚିରକାଳ ଲୋକପ୍ରିୟ ହୋଇ ରହିଥିବ ।

➡ ସାହିତ୍ୟର ଅନେକ ଗୁଡିଏ ବିଭାଗରେ ଆପଣ ମସୀ ଚାଳନା କରୁଛନ୍ତି । ଏ

କ୍ଷେତ୍ରରେ ଆପଣଙ୍କର ଦୀର୍ଘ ବର୍ଷର ଅନୁଭବ କେମିତି ?

➡ ଓଡିଶାର ସାରସ୍ୱତ ବାତାବରଣ ଭଲ । ବେଶ୍ କିଛି ଉତ୍ତମ ସାହିତ୍ୟ ସୃଷ୍ଟି ହୋଇଛି ।

➡ ଜଣେ ଶିଶୁ ସାହିତ୍ୟିକ ଭାବେ ଓଡିଶା ଶିଶୁ ସାହିତ୍ୟକୁ ଆପଣ କିଭଳି ବିବେଚନା କରିବେ ?

➡ ଓଡିଶା ଶିଶୁ ସାହିତ୍ୟରେ ଏବେ ପରୀ ଗପ, ଅସୁରୁଣୀ ଗପ ତୁଳନାରେ ବିଜ୍ଞାନ ଚିନ୍ତାଧାରା ଅଧିକ ମିଶିଛି । ଏହା ଏକ ଶୁଭ ଲକ୍ଷଣ । ଆମ ଲେଖାର ମାନ କମ୍ ନୁହେଁ । କେବଳ ପରିପାଟୀରେ ପଛେଇ ରହିଛି । ହିନ୍ଦୀ ଶିଶୁ ପୁସ୍ତକ 'ସୁମନ ସୌରଭ', 'ପରାଗ', ବଙ୍ଗଳାର 'ଶୁକ୍‌ତାରା କିମ୍ବା ଇଂରାଜୀ ବହି ସନ୍‌ଫ୍ଲାୱାର' ତୁଳନାରେ ଆମ ବହିର ଦୃଶ୍ୟ ପରିପାଟୀ ବେଶ ନିମ୍ନ ଧରଣର । ଓଡିଶାରେ ଶିଶୁ ସାହିତ୍ୟ ର କ୍ଷେତ୍ର ବିଲ୍‌କୁଲ ମରୁଡି ପଡିନି । ପରିଣତ ବୟସରେ ଏଠାରେ ମୋ ସହିତ ରମେଶ ଭଞ୍ଜ ବିରେନ୍ଦ୍ର ସାମନ୍ତରାୟ, ବୀରକିଶୋର ପାଢୀ, ଦାଶ ବେନହୂର ପ୍ରମୁଖ ଏବେବି ଲେଖୁଛନ୍ତି । ପୂର୍ବରୁ ସ୍ୱର୍ଗତଃ ଉଦୟନାଥ ଷଡଙ୍ଗୀ, ରାମ ପ୍ରସାଦ ମହାନ୍ତି ଲେଖୁଥିଲେ । ତେବେ ବି ଶିଶୁ ସାହିତ୍ୟ ପ୍ରତି ପୃଷ୍ଠପୋଷକତା କମ ଅଛି । ସରକାରୀ ସ୍ତରରେ ଶିଶୁଲେଖା ବହିଟି ବାହାରୁଥିଲା ବନ୍ଦ ହୋଇଗଲା । ଆମର ଅଭିଭାବକ ମାନେ ସେମାନଙ୍କ ପାଇଁ ପଛେ ବାରମଜା ଚକୋଲେଟ୍ ଆଣିବେ ଶିଶୁ ପତ୍ରିକାଟେ ଆଣିବେ ନାହିଁ । ଉପହାର ଦେବାପାଇଁ ଇଂରାଜୀ କମିକ୍ସ ବହି ଖୋଜିବେ । ଶିଶୁ ସାହିତ୍ୟର ସ୍ଥାନ ନାହିଁ ସେଠି । ଏମିତି ହେଲେ ହେବ କେମିତି ? ଶିଶୁମାନେ ଆମର ମୂଳଦୁଆ ସେମାନଙ୍କୁ ସାହିତ୍ୟାନୁରାଗୀ କଲେ ସିନା ଭବିଷ୍ୟତରେ ବଡ ବଡ ସାହିତ୍ୟିକ ସୃଷ୍ଟି ହେବେ ।

➡ ସାଂପ୍ରତିକ ଓଡିଆ ଗୀତ ଓ ସଂଗୀତ ବାବଦରେ ଆପଣଙ୍କର ମତାମତ କଣ ? ଆକାଶବାଣୀ ଏଠି ଆମର ଏକଦା ଭଲ ଗୀତକୁ ପ୍ରୋତ୍ସାହନ ଦେଇ ଶ୍ରୋତା ସୃଷ୍ଟି କରିବାରେ ସାହାଯ୍ୟ କରୁଥିଲା । ଏବେ ବ୍ୟାପକ ମିଡିଆ ହୋଇ ମଧ କିଛି ହେଉନାହିଁ

➡ ଥରେ ଜଣେ କ୍ୟାସେଟ ପ୍ରଯୋଜକ ମୋତେ ଗୀତ ଲେଖିବାକୁ କହିଲେ ମୁଁ ପଠେଇଲି । ସେ ସେଇଠୁ କହିଲେ ଏସବୁ ସାହିତ୍ୟ ହୋଇଯାଇଛି । ମୁଁ କହିଲି କ୍ୟାସେଟ ହୋଇନପାରେ କିନ୍ତୁ ମୁଁତ ସାହିତ୍ୟକୁ ଛାଡିପାରିବିନି । ଅତଏବ୍ ଗୋଟେ କଥା କହିବି କେବଳ ବ୍ୟବସାୟ ପାଇଁ ଆମର ଏମିତି ଅବସ୍ଥା ହୋଇଛି । ଶସ୍ତା ଗୀତର ପ୍ରସ୍ତୁତି ଚାଲିଛି ।

➡ ଗୀତର ଏଇ ଶସ୍ତା ରୂପ ବିରୋଧରେ କିଭଳି ପଦକ୍ଷେପ ନିଆଯିବା ଉଚିତ ବୋଲି ଆପଣ ଭାବୁଛନ୍ତି ?

➡ ସେ ଗୀତ ସବୁ ଦିନ ପାଇଁ ରହିବନି । ତେବେ ନିକଟରେ ଜଣେ ବିଶିଷ୍ଟ ସଂଗୀତଜ୍ଞ, ଟି.ଭି. ର ସାରେଗାମା କାର୍ଯ୍ୟକ୍ରମରେ ଗୀତ ଉପରେ ସେନ୍‌ସର ବ୍ୟବସ୍ଥା ଲାଗୁହେବା ଉଚିତ ବୋଲି କହିଥିଲେ । ମୁଁ ତାଙ୍କ ସହ ଏକମତ । ଏଥିପାଇଁ ବିଧିବଦ୍ଧ ପଦକ୍ଷେପ ନିଆଯିବା ଆବଶ୍ୟକ । ପ୍ରସ୍ତୁତି- ସମ୍ବାଦ -୩.୧୨.୨୦୦୦

## ଆମର ଶିଶୁ ସାହିତ୍ୟ ଉନ୍ନତ, ତେବେ ଏହାର ସ୍ରଷ୍ଟା ମାନଙ୍କୁ ଯଥେଷ୍ଟ ସମ୍ମାନ ମିଳିନାହିଁ (ପ୍ରଜାତନ୍ତ୍ର ସାପ୍ତାହିକୀ-ଜାନୁୟାରୀ-୨୦୦୨)

ଓଡିଶାର ସଂସ୍କୃତି ଓ ସାହିତ୍ୟ ଜଗତରେ ନନ୍ଦକିଶୋର ସିଂହ ଏକ ବହୁ ଚର୍ଚ୍ଚିତ ନାମ । ଏକାଧାରରେ ସେ ଜଣେ ଗୀତିକାର, ନାଟ୍ୟକାର ଶିଶୁ ସାହିତ୍ୟିକ ଓ ସାହିତ୍ୟ ପତ୍ରିକାର ସଂପାଦକ ତଥା ନାଟ୍ୟଶିଳ୍ପୀ ।

ବଡଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ, ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ ମୋପ୍ରିୟାର ଗାଆଁ ଆଡେ, ଜହ୍ନ ତ ଦେଇଛି ଚିଠି ଚୁନି ଚୁନି ଜୋଛନାରେ, ବସନ୍ତ ଲେଖିଛି ଚିଠି ଗୋଲାପୀ ଗୋଲାପୀ ଆଦି ଗୀତ ଶୁଣିବା ମାତ୍ରେ ମନେପଡିଯାନ୍ତି ନନ୍ଦକିଶୋର ସିଂ । ତା ଛଡା ଆକାଶବାଣୀ ପାଇଁ ସେ ରଚନା କରିଛନ୍ତି ସୂର୍ଯ୍ୟ ଶିଖା, ମୀନାର ମର୍ମ, ଏକ ଭିନ୍ନ ପୃଥିବୀର ଇସ୍ତାହାର ଇତ୍ୟାଦି ଜନପ୍ରିୟ ନାଟକ । ତାଙ୍କ ରଚିତ ୩୫ ଖଣ୍ଡ ପୁସ୍ତକ ଏଯାବତ୍ ପ୍ରକାଶିତ , ଯେଉଁଥିରେ ରହିଛି ଗୀତି କବିତା , କବିତା, ଶିଶୁ ସାହିତ୍ୟ, ନାଟକ ଓ ଉପନ୍ୟାସ । ପ୍ରଥମେ ଶିକ୍ଷକତା ଓ ପରେ ଶିକ୍ଷା ପ୍ରଶାସନରେ କାର୍ଯ୍ୟ କରିବା ନେଇ ସେ ସାହିତ୍ୟ ସାଧନାରେ ନିଜକୁ ସଂପୂର୍ଣ୍ଣ ନିମଗ୍ନ କରିଛନ୍ତି । ଯାଜପୁର ଜିଲ୍ଲାର କୋରେଇ ହେଉଛି ଏହି ପ୍ରସିଦ୍ଧ ସ୍ରଷ୍ଟାଙ୍କର ବାସଭୂମି । ତାଙ୍କୁ ସାକ୍ଷାତ କରିଛନ୍ତି ଜୀବନକୃଷ୍ଣ ପାଢୀ ।

⇒ ଆପଣ ଏତେଗୁଡିଏ ବିଭାଗରେ ଲେଖାଲେଖି କରୁଛନ୍ତି । ଏଥିପାଇଁ ଆପଣ ଆତ୍ମ ସନ୍ତୋଷ ପାଇଛନ୍ତି କି ?

⇒ ଆତ୍ମ ସନ୍ତୋଷ ପାଉନଥିଲେ ମୁଁ ଲେଖୁଥାନ୍ତି କାହିଁକି ? ଯେତେବେଳେ ଯେଉଁ ମୁହୂର୍ତ୍ତରେ ମୋ ମନକୁ ଆସେ ସଂଗେ ସଂଗେ ତାକୁ ଲେଖିବସେ । ଲେଖା ସାରିଲା ବେଳକୁ ମୋତେ ଭାରି ଆନନ୍ଦ ମିଳେ ।

⇒ କେବଳ ଆନନ୍ଦ ପାଇବା ପାଇଁ କଣ ଆପଣ ଲେଖିଥାନ୍ତି ?

⇒ ହଁ ସେଇଆ ନୁହେଁ ଆଉ କଣ ! ଆନନ୍ଦ ପାଇବା ସହିତ ଆତ୍ମସନ୍ତୋଷ ମଧ ମିଳିଥାଏ । ଏହା ମୋର ସାମାଜିକ କର୍ତ୍ତବ୍ୟ ବୋଲି କିଛି ମନେ କରିଥାଏ ।

⇒ ପ୍ରତ୍ୟେକ ସ୍ରଷ୍ଟା ପ୍ରାୟତଃ କବିତାରୁ ତାଙ୍କର ଲେଖନୀ ଚାଳନା ଆରମ୍ଭ କରିଥାନ୍ତି । ଆପଣଙ୍କ ମତ କଣ ?

⇒ ମୁଁ ମଧ ସେଇ ଧାରାରୁ ଆସିଛି । ତେବେ ଛନ୍ଦ କବିତା ବା ଗୀତିକବିତା ମୋର ପ୍ରିୟ । ବିଶେଷକରି ଛୋଟପିଲାଙ୍କ ପାଇଁ ଲେଖାମାନ ଲେଖି ମୁଁ ବେଶି ଆନନ୍ଦିତ ହୁଏ ।

⇨ ଗୀତିକବିତା ଓ ଶିଶୁ ସାହିତ୍ୟକୁ ଛାଡି ଆପଣ ନାଟକ ଲେଖିବାରେ ମଧ୍ୟ ସିଦ୍ଧହସ୍ତ । ଗୀତିକାରରୁ ନାଟ୍ୟକାର କିପରି ହେଲେ ?

⇨ ସତ କେହିବାକୁ ଗଲେ ପରିସ୍ଥିତି ଓ ପରିବେଶ ମନୁଷ୍ୟକୁ ବାଟ କଢେଇ ନେଇଥାଏ । ସୃଜନପୁର ରୁଦ୍ରଚରଣ ହାଇସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ସେଠାକାର ପ୍ରଧାନ ଶିକ୍ଷକ ସୁରେନ୍ଦ୍ରବାବୁ ଜଣେ ବେତାର ନାଟ୍ୟଶିଳ୍ପୀ ଥିଲେ ତାଙ୍କରି ପ୍ରେରଣାରେ ନାଟକ ଲେଖିବସିଲି ।

⇨ ଆପଣଙ୍କ ପ୍ରଥମ ନାଟକ କେବେ ରେଡିଓରେ ପ୍ରଚାର ହୋଇଥିଲା ?

⇨ ୧୯୬୦ ମସିହାରେ ବେତାର ନାଟ୍ୟକାର ଭାବରେ ସ୍ୱୀକୃତି ପାଇଲି । ୧୯୬୨ ରେ ନାଟ୍ୟଶିଳ୍ପୀ ଓ ୧୯୬୪ ରେ ଗୀତିକାର ଭାବରେ ଆକାଶବାଣୀର ସ୍ୱୀକୃତି ପାଇଥିଲି ।

⇨ ଦୂରଦର୍ଶନ ପାଇଁ ବି କାମ କରିଛନ୍ତି ?

⇨ ଦୂରଦର୍ଶନ ପାଇଁ ଧାରାବାହିକ 'ବେଙ୍ଗ କହେ ବେଙ୍ଗୁଲିଲୋ' ଲେଖିଥିଲି । ତାଛଡା ମୁଁ ମଧ୍ୟ ଜଣେ ଡ୍ରାମା ଭଏସ୍ । ହେଲେ ଏବେ ସେଠି ଭିତ ଆଉ ଲାବି ମଧ୍ୟରେ ପଛଘୁଂଚା ଦେଉଛି ।

⇨ ଶୁଣାଯାଏ ଦୂରଦର୍ଶନ ଗୀତିକାର ମାନଙ୍କୁ ପାରିଶ୍ରମିକ ଦେବାପାଇଁ ସ୍ଥିର କରିଛନ୍ତି ?

⇨ ମୁଁ ବି ସେଇଆ ଶୁଣିଛି । ଯଦି ଏହା ସତ ହୋଇଥାଏ ତାହାହେଲେ ଏ ଏକ ଉଚିତ ପଦକ୍ଷେପ ।

⇨ ଏବେ ଆପଣ ଙ୍କ ଶିଶୁ ସାହିତ୍ୟ କଥା କିଛି କୁହନ୍ତୁ ?

⇨ ମୋର ପ୍ରକାଶିତ ୩୫ ଖଣ୍ଡ ପୁସ୍ତକ ମଧ୍ୟରୁ ପ୍ରାୟ ୧୩ ଖଣ୍ଡ ପୁସ୍ତକ ଶିଶୁ ମାନଙ୍କ ପାଇଁ । ଏଥି ମଧ୍ୟରୁ ସାବାସ୍ ଟୁଟୁ, ରଙ୍ଗ ବେରଙ୍ଗ, ମଜା କାହାଣୀ, ଶିଆଳ ଝିଅର ବାହାଘର, ଟୁଟୁର ରାଇଜଫେରି , ଏକ ଦୁଇ ତିନି ଇତ୍ୟାଦି ।

⇨ ଆମ ଶିଶୁ ସାହିତ୍ୟ ଆମ ପଡୋଶୀ ରାଜ୍ୟର ଶିଶୁ ସାହିତ୍ୟ ତୁଳନାରେ କେତେ ପ୍ରଭାବଶାଳୀ ?

⇨ ଯଥେଷ୍ଟ ଆଗରେ । ଭାଷା ଭାବ ଶୈଳୀ ଦୃଷ୍ଟିରୁ ଆଗେଇଛୁ । କିନ୍ତୁ ଆମର ପୁସ୍ତକ ଓ ପତ୍ରିକା ଗୁଡିକର ସ୍ରଷ୍ଟା ଦାରିଦ୍ର୍ୟ ମଧ୍ୟରେ ଥିବାର ଲକ୍ଷ୍ୟ କରାଯାଏ । ସେଥିପାଇଁ ଦୁଃଖ ଓ ଅନୁଶୋଚନା ଲାଗେ ।

⇨ ଆପଣ ବୋଲେ ହୁଁଟି ନାମକ ଏକ ପତ୍ରିକା ର ସମ୍ପାଦନା ଦାଇତ୍ୱ ହାତକୁ ନେଇଥିବାର କାରଣ କଣ ?

⇨ ଗ୍ରାମାଂଚଳର ପାଠକ ପାଠିକା ମାନଙ୍କ ପାଇଁ କିଛି ଗୋଟେ କରିବି ବୋଲି ଭାବି ଏହି ପଲ୍ଲୀ ଭିତ୍ତିକ ପତ୍ରିକା ପ୍ରକାଶ କରୁଛି ।

⇨ ସାହିତ୍ୟ ସାଧନା ଭିତରେ ଜୀବନଟା କଟେଇଦେଲେ । ଆଉ ଆପଣଙ୍କ ଚାକିରୀ ଜୀବନ ?

⟹ ଚାକିରୀ ବେଳେ ଚାକିରୀ,ଲେଖା ବେଳେ ଲେଖା । ମୁଁ କାହାରିକୁ ହେଳା କିମ୍ବା ହତାଦର କରିନି । ସହକାରୀ ଶିକ୍ଷକ, ଉପପରିଦର୍ଶକ, ଅଣ ଆନୁଷ୍ଠାନିକ ଶିକ୍ଷା ସଂଯୋଜକ, ଶିକ୍ଷା ପ୍ରଶିକ୍ଷକ , ପ୍ରଧାନ ଶିକ୍ଷକ ଶିକ୍ଷା ଜିଲ୍ଲା ଅଧିକାରୀ ଭାବରେ କାମ କରି ଅବସର ନେଇଛି ।

⟹ ଆପଣଙ୍କ ସୃଷ୍ଟି ପଛରେ କାହାର ପ୍ରେରଣା ରହିଛି ?

⟹ ମୋ ପ୍ରେରଣା ମୁଁ ନିଜେ । ତେବେ ମୋ ପତ୍ନୀ ସୁରବାଳାଙ୍କ ସାହାଯ୍ୟ ସହଯୋଗ ରହିଆସିଛି । ନାଟକ ଲେଖିବାରେ ସୁରବାବୁ ଆମ ଅଞ୍ଚଳର ନାରଣ ବାବୁ ଏବଂ ଗୀତ ଲେଖିବାରେ ମୋର ପୂଜ୍ୟ ସ୍ୱର୍ଗତଃ ବାଳକୃଷ୍ଣ ଦାସ ଏବଂ ସିକନ୍ଦର ଆଲାମଙ୍କ ପ୍ରେରଣା ଯଥେଷ୍ଟ ସାହଯ୍ୟ କରିଛି ।

⟹ ନନ୍ଦକିଶୋର ସିଂହ କିଭଳି ବଂଚିବା ପାଇଁ ଚାହାନ୍ତି ଜଣେ ଗୀତିକାର, ନାଟ୍ୟକାର ନା ଶିଶୁ ସାହିତ୍ୟିକ ଭାବରେ ?

⟹ ନନ୍ଦସିଂହ କୌଣସି ଆଶାରଖି ମରିବାକୁ ଚାହେଁନି ଈଶ୍ୱର ମୋର ସବୁ ଇଚ୍ଛା ପୂରଣ କରିଛନ୍ତି ତେବେ ମୋର ଶେଷ ଜୀବନ ଟିକକ ଶାନ୍ତିରେ କଟୁ । ସାହିତ୍ୟ ସାଧନାରେ ନିଜକୁ ହଜାଇ ମୋର ଅବସର ସମୟ ବିତାଇବାକୁ ଚାହେଁ ।

ପ୍ରସ୍ତୁତି- (ଜୀବନକୃଷ୍ଣ ପାଢୀ, ପ୍ରଜାତନ୍ତ୍ର ତରଫରୁ )

## କେଇ ମିନିଟ କଥାବାର୍ତ୍ତା

ଗୀତିକାର ନନ୍ଦକିଶୋର ସିଂହ ଜଣେ ବିବିଧ ପ୍ରତିଭା । ଏକାଧାରରେ ଜଣେ ଶିଶୁ ସାହିତ୍ୟିକ, ନାଟ୍ୟକାର ଓ ଗୀତିକାର ଭାବେ ବେଶ ପରିଚିତ । କଥାଚିତ୍ର 'ଧରିତ୍ରୀ'ର ଜଣେ ସଫଳ ଗୀତିକାର ଭାବେ ତାଙ୍କୁ ବହୁ ଶ୍ରୋତା ମନେ ରଖିଛନ୍ତି । ତାଙ୍କର ରଚିତ ଅନେକ ଲଘୁ ସଂଗୀତ ଓ ଭଜନ ମଧ ଆଦୃତ ହୋଇଛି । ବେତାର ଦୂରଦର୍ଶନଓ ଚଳଚିତ୍ର -ପ୍ରତିଟି ମାଧ୍ୟମରେ ତାଙ୍କର ସୃଜନଶୀଳ କୃତିର ଛାପ ପଡିଛି । ତାଙ୍କ ସହ ପ୍ରତିନିଧି ନାରାୟଣ କୁମାର ରାଉତରାୟଙ୍କର କେଇମିନିଟ କଥାବାର୍ତ୍ତା :-

⟹ ଆଚ୍ଛା ନନ୍ଦ କିଶୋର ବାବୁ ! ଆପଣଙ୍କ ଲେଖା ପ୍ରଥମେ କେବେ ପ୍ରକାଶ ପାଇଥିଲା ?

⟹ ମୋର ପ୍ରଥମ ଲେଖା ପ୍ରକାଶ ପାଏ ୧୯୫୪ରେ, ଯେତେବେଳେ କି ମତେ ବାରବର୍ଷ ବୟସ । ତେବେ ମୋର ପ୍ରଥମ ଗୀତ ୧୯୬୪ରେ ଆକାଶବାଣୀ କଟକ କେନ୍ଦ୍ରରେ ପ୍ରଚାରିତ ହୋଇଥିଲା ।

⟹ ସାହିତ୍ୟର ଅନ୍ୟାନ୍ୟ ଦିଗ ଥାଉ ଥାଉ ଶିଶୁ ସାହିତ୍ୟ ପାଇଁ ଆପଣ କାହିଁକି ମନ ବଳାଇଲେ ?

⟹ ସାହିତ୍ୟର ଅନ୍ୟାନ୍ୟ ବିଭାଗ ପ୍ରତି ଯେ ମୁଁ ଦୃଷ୍ଟି ଦେଉନି ତାହା ନୁହେଁ ।

ମାତ୍ର ସେଗୁଡିକ ମୋତେ ଆନନ୍ଦ ଦେଇନି । ଶିଶୁ ସାହିତ୍ୟ ମୋର ପ୍ରିୟ ବିଭାଗ । କାରଣ ଶିଶୁ ମାନେ ମୋର ଅତିପ୍ରିୟ । ସେମାନଙ୍କ ସହ କଥାବାର୍ତ୍ତା ଥଟ୍ଟା ପରିହାସ କରିବାକୁ ମୋତେ ବେଶ୍ ଭଲ ଲାଗେ । ପ୍ରକୃତରେ ବୟସ ବଢ଼ିଯାଇଥିଲେ ବି ମନଟା ମୋର ଶିଶୁମାନଙ୍କ ଭଳି ।

➡ ଶିଶୁ ସାହିତ୍ୟକୁ ଛାଡ଼ିଦେଲେ ଅନ୍ୟକିଛି ?

➡ ହଁ, ନାଟକ, ଗୀତିକବିତା, ଉପନ୍ୟାସ, ଅନୁବାଦ ଓ ନବସାକ୍ଷରଙ୍କ ପାଇଁ କୋଡ଼ିଏ ପଚିଶ ଖଣ୍ଡ ପୁସ୍ତକ ଲେଖିଛି ଏଯାଏଁ !

➡ ଆପଣଙ୍କର ଗୀତିକାର ଜୀବନର ସ୍ମରଣୀୟ ଘଟଣାମାନେ-କିଛି ରୋମାଞ୍ଚକର ଅନୁଭୂତି କହିବେକି ?

➡ ଦେଖନ୍ତୁ ମୁଁ ଚଳଚ୍ଚିତ୍ରର ନାୟକ ନୁହେଁ, ଜଣେ ଗୀତିକାର । ମୁଖ୍ୟତଃ ବେତାର ଦୂରଦର୍ଶନ ପାଇଁ । ମାତ୍ର ଚଳଚିତ୍ର ପାଇଁ ମୋର ଅବଦାନ ଖୁବ୍ କମ୍ ।

➡ ତଥାପି କିଛି କୁହନ୍ତୁ ନା । ନିଶ୍ଚୟ କିଛି ଥିବ । କାରଣ ଅନେକ ଗୀତ ଆପଣଙ୍କର ଖୁବ୍ ରୋମାଣ୍ଟିକ...

➡ ମୁଁ ରାଜକନିକାରେ ଥାଏ । ଗୋଟାଏ ଭଙ୍ଗାଘର । ଝରକାରେ କବାଟ ନାହିଁ । ସକାଳୁ ନିଦ ଭାଙ୍ଗିଲା ବେଳକୁ ବିଛଣା ସାରା ଶୀତ ସକାଳର ଖରା ବିଛେଇ ପଡିଥାଏ । ମନେ ପଡିଲା ଘରକଥା, ସ୍ତ୍ରୀ କଥା, ଲେଖିଲି "ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ ମୋ ପ୍ରିୟାର ଗାଁଆଡେ "।

➡ କିନ୍ତୁ ଆପଣଙ୍କର ବଡ ଦାଣ୍ଡେ ଚାଲେ ତବ ନନ୍ଦିଘୋଷ ରଥ ।

➡ ସେ ଲେଖାଟି ବୋଧେ କାଳିଆର ମୋ ପାଇଁ ଆଶୀର୍ବାଦ । କାରଣ ଗୀତଟି ଶ୍ରୀଗୁଣ୍ଡିଚା ଦିନ ରଚିତ । ପୁଣି ଶ୍ରୀଗୁଣ୍ଡିଚା ଦିନ ପ୍ରଚାରିତ ।

➡ ଆପଣଙ୍କ ଗୀତ ଆମେ ଚଳଚିତ୍ରରେ ବେଶି ଶୁଣିବାକୁ ପାଉନୁ ?

➡ ପାଇବେ କିପରି ? ମୁଁ ବେଶି ଲେଖିବାର ସୁଯୋଗ ପାଉନି ।

➡ ଏହାର କାରଣ ସଂପର୍କରେ କିଛି କହରିବେକି ?

➡ ନ କହିଲେ ଭଲ ।

➡ ଆପଣଙ୍କର ନାଟ୍ୟକାର ସଂପର୍କରେ କିଛି କୁହନ୍ତୁ ?

➡ ମୁଁ ଜଣେ ପୋଖତ ନାଟ୍ୟକାର ନୁହେଁ । ତଥାପି ୧୯୬୨ରୁ ଏଯାଏଁ ନାଟକ ଆକାଶବାଣୀ ଓ ଦୂରଦର୍ଶନ ପାଇଁ ଲେଖିଆସୁଛି । ଅଳ୍ପ କୋଡୋଟି ନାଟକ ମଧ୍ୟ ମଂଚସ୍ଥ ହୋଇଛି ।

➡ ଆପଣଙ୍କ ଉଚ୍ଚକୋଟୀର ସୃଷ୍ଟି ସଂପର୍କରେ......

➡ ସ୍ରଷ୍ଟା ପାଖରେ ସୃଷ୍ଟିର ଅନ୍ତର ପାନ୍ତର ନାହିଁ । ତଥାପି କହୁଛି 'ସୂର୍ଯ୍ୟ ଶିଖା', 'ମାନସୀର ଗବେଷଣାଗାର','ଲହୁଲୁହ' ମୋତେ ଖୁବ୍ ଆନନ୍ଦ ଦେଇଛି ।

ପ୍ରସ୍ତୁତି- ଚିତ୍ରକଥା-ମାର୍ଚ୍ଚ ୧୯୮୮

## :- ଅଜଗର ବିଷ ଗଲା କୁଆଡେ-:

(ଜନ୍ମ- ୧୯୪୨ ମସିହା ମଇ ମାସରେ । ବାସସ୍ଥାନ କଟକ ଜିଲ୍ଲାର କୋରେଇ ଗ୍ରାମ । ଶିକ୍ଷାଗତ ଯୋଗ୍ୟତା- ବି.ଏ.ବି.ଇଡି. ଏବଂ ଅସମୀୟା ଭାଷାରେ ପୂର୍ବାଞ୍ଚଳ ଭାଷା କେନ୍ଦ୍ରରୁ ଡିପ୍ଲୋମା ପ୍ରାପ୍ତ ।

ଷଷ୍ଠ ଶ୍ରେଣୀରେ ପଢୁଥିବା ବେଳୁ ଶିଶୁ ପତ୍ରିକା "ମୀନାବଜାର"ରେ ଲେଖା ପ୍ରକାଶିତ । ଓଡିଶାରୁ ପ୍ରକାଶ ପାଉଥିବା ବିଭିନ୍ନ ପତ୍ର ପତ୍ରିକା ସମେତ ଶିଶୁ ପୁସ୍ତକରେ ପ୍ରବନ୍ଧ, ଗଳ୍ପ, ନାଟକ, କବିତା, ଗୀତିକବିତା ଓ ଅନୁବାଦ ବହୁ ସଂଖ୍ୟାରେ ପ୍ରକାଶିତ । ଲେଖକ ଜଣେ ଗୀତିକାର ଏବଂ ନାଟ୍ୟକାର । ସେ ଜଣେ ଦକ୍ଷ ଅଭିନେତା ମଧ୍ୟ । ଚଳଚିତ୍ର ଓ ଦୂରଦର୍ଶନ ପାଇଁ ମଧ୍ୟ ସେ ଗୀତିକବିତା ରଚନା କରିଛନ୍ତି ।

ପ୍ରଜାତନ୍ତ୍ର ବିଷୁବ ମିଳନ ଉତ୍ସବରେ ଶିଶୁ ସାହିତ୍ୟିକ ଭାବେ ପୁରସ୍କୃତ । 'ଶିଶୁ ରାଇଜ' ଏବଂ 'ଚିତ୍ରପୁରୀ' ସାହିତ୍ୟ ପ୍ରତିଯୋଗିତାରେ ମଧ୍ୟ ପୁରସ୍କୃତ ।

ପ୍ରକାଶିତ ପୁସ୍ତକ -ରଙ୍ଗ ବେରଙ୍ଗ, ସାବାସ ଚୁଟୁ, ମଜାକାହାଣୀ, ଗିତିଗୁଚ୍ଛ, ଗୀତି ଓ ଗଜଲ, ଅରଣ୍ୟ କାହାଣୀ ପ୍ରଭୃତି । 'ସଂସାର' ପରିବାରର ଜଣେ ପୁରାତନ ସଭ୍ୟ ।)

ଆମେ ଯେତେ ପ୍ରକାର ସାପ ଦେଖୁ ସେଗୁଡିକ ଭିତରୁ କେତେକ ଖୁବ୍ ବିଷାକ୍ତ, ମାତ୍ର ଅଜଗର ସାପ ଆକାରରେ ଖୁବ୍ ବଡ ହେଲେ ମଧ୍ୟ ଏହାର ବିଷ ନାହିଁ । ଏହା ଗୋଟିଏ ଜାଗାରେ ପଡିରହି ଶିକାର ସନ୍ଧାନ କରିଥାଏ । କେହି ତା ହାବୁଡରେ ପଡିଲେ ସେ ତାକୁ ଧରିଖାଏ । ସେଇଥିପାଇଁ ଗୋଟିଏ କଥା ଅଛି -" ଅଜଗରକୁ ଦାତା ରାମ" । ଏହି ଘଟଣାକୁ ନେଇ ନେଫା ଅଞ୍ଚଳର ମିସିମ ଜାତିର ଲୋକମାନଙ୍କ ମଧ୍ୟରେ ଏକ ଗପ ପ୍ରଚଳିତ ଅଛି । କଥାଟି ଏହିପରି ।

ପୃଥିବୀର ଜନ୍ମ ପରେ ବ୍ରହ୍ମା ଜୀବଜଗତ ସୃଷ୍ଟି କଲେ ସେ ପ୍ରଥମେ ଗଢିଲେ ମଣିଷ ଏବଂ ସାପ ଏହି ସମୟରେ ସାପ ବୋଇଲେ କେବଳ ଅଜଗର ସାପକୁ ବୁଝାଉଥିଲା । ଅନ୍ୟ ସାପ ଜନ୍ମ ହୋଇନଥିଲେ । ତାର ବିଷ ମଧ୍ୟ ମାରାତ୍ମକ ଥିଲା । ସେ ଖୁବ୍ ଶୀଘ୍ର ଗତି କରି ମଣିଷକୁ ଧରି ଖାଉଥିଲା । ମଣିଷକୁ ଚୋଟ ମାରିଲା ମାତ୍ରେ ସାଙ୍ଗେ ସାଙ୍ଗେ ମଣିଷ ମରିଯାଉଥିଲା । ତେଣୁ ତାର ଗର୍ବର ସୀମା ନଥାଏ । ସେ ଏ ପୃଥିବୀର ସବୁଠୁ ବଳୁଆ ଜୀବ ବୋଲି କାହାକୁ ଖାତିର କରୁନଥାଏ । ହେଲେ ମଣିଷ ସିନା ବଳରେ ଅଜଗରକୁ ପାରୁନଥିଲା କିନ୍ତୁ ବୁଦ୍ଧିରେ ସେ ଥିଲା ବିଚକ୍ଷଣ । ତେଣୁ ଅଜଗରର ପହିଲା ନମ୍ବର ଶତ୍ରୁ ହେଲା ଏଇ ମଣିଷ । ସେଥିପାଇଁ ମଣିଷ

ଉପରେ ତାର ଭାରି ରାଗ ।

ଦିନକର କଥା । ଗୋଟିଏ ମିସିମ ଯୁବକ ବଣକୁ କାଠ କାଟିବାକୁ ଯାଇଥିଲା । ଅଜଗର ତାକୁ ଦେଖି ପକାଇଲା ଚୋଟ । ଯୁବକଟିର ଦେହରେ ସାଙ୍ଗେ ସାଙ୍ଗେ ବିଷର ପ୍ରତିକ୍ରିୟା ଆରମ୍ଭ ହେଲା । ସେ ତଥାପି ସାହସ ଧରି ଘରମୁହାଁ ହୋଇ ଧାଇଁଲା- ଘରେ ପହଞ୍ଚିଲେ କାଳେ ପ୍ରତିକାର କଲେ ସେ ବଂଚି ପାରିବ । ଏଣେ ଲୋକଟିକୁ ଅଜଗର ସାପ ମାରିବା ପରେ ପରେ ସେ ନମଲାରୁ ଅଜଗର ମଧ୍ୟ ମନେ ମନେ ଲଜ୍ଜିତ ହେଲା । ସେ ଭାବିଲା ତା ବିଷ ଗୁଡିକ କଣ ପାଣି ଫାଟିଗଲାକି ? ଲୋକଟା ସାଙ୍ଗେ ସାଙ୍ଗେ ନମଲା କାହିଁକି ? ସିଆଣା ଡାମରା କାଉ ଦେଖିଲା ଅଜଗର ହେଉଛି ସବୁଠୁ ଶକ୍ତିଶାଳୀ । ତେଣୁ ତାର ସଂଗେ ବନ୍ଧୁତା ଥିଲେ ସେ ଆଉ କାହାକୁ ଡରିବ ନାହିଁ । ଏହା ଜାଣି ସେ ତା ସଂଗେ ବନ୍ଧୁତା କଲା । ଅଜଗର କାଉକୁ ଡାକି କହିଲା-

"ଡାମରା ଭାଇ ରେ ଡାମରା ଭାଇ
ମଣିଷ ଟାକୁ ତୁ ଦେଖିବୁ ଯାଇ
ମଲାକି ନମଲା ବୁଝି ଖବର
ମୋ ପାଶରେ ଆସି କହ ସତ୍ୱର ।"

ଡାମରା ଅଜଗର କଥା ଶୁଣି ଲୋକ ପଛେ ପଛେ ଉଡି ଚାଲିଲା । ଲୋକଟି କୌଣସି ମତେ ଘରେ ପହଞ୍ଚିପାରିଲା ସତ, ହେଲେ ସେଠାରେ ପଡି ମରିଗଲା ।

ସେ ଯୁବକଟି ଗାଁର ଗୋଟିଏ ଧନୀ ମୁଖିଆର ଏକମାତ୍ର ପୁଅ । ସେ ମରିଯିବା ଦେଖି ତା ବଂଶ ଯାକ କାନ୍ଦିବାରେ ଲାଗିଲେ । ତାପରେ ମିସିମ ଲୋକଙ୍କ ପ୍ରଥା ଅନୁସାରେ ତା ଶବ ସତ୍କାର କରି ତାର ପ୍ରେତ ଉଦ୍ଦେଶ୍ୟରେ ଛେଳି, ଗୋରୁ, କୁକୁଡା ଆଦି ବଳି ଦେଲେ । ସେ ମାଂସକୁ ବାଣ୍ଟି କୁଣ୍ଟି ସମସ୍ତେ ସାହି ପଡିଶା ଖାଇଲେ । ଏଣେ ହାଡ, ପୁଞ୍ଛି ଆଦି ଯାହାକୁ ଫିଙ୍ଗିଦେଲେ, ତାକୁ କୁଆ ମନଇଚ୍ଛା ଖାଇଲା । ସେ ତ ଭାରି ପେଟୁ, ଖାଉ ଖାଉ ତାର ପେଟ ଭାରୀ ହେଲା । ସେ ଅଳସରେ ଶୋଇପଡିଲା । ନିଦ ଭାଙ୍ଗିଲା ବେଳକୁ ଅନେକ ବେଳ । ଅଜଗର ତା ବାଟକୁ ଚାହିଁ ବସିଥିବ, ଏଣେ ଏତେ ଡେରି ହେଲାଣି, ଅଜଗର ରାଗି ନିଆଁ ହୋଇଯିବଣି । ତେଣୁ କଣ କରିବ ! କି ଉପାୟରେ ସେ ରକ୍ଷା ପାଇବ ! କାଉତ ଭାରି ସିଆଣା । ସେ ଭାବିଲା ମଣିଷ ତାକୁ ଏତେ ଖାଇବାକୁ ଦେଲା । ସେ ଯଦି ଅଜଗରକୁ ଏକଥା କହେ, ଅଜଗର ତାକୁ ଖାଇଦେବ । ଏଣେ ଅଜଗର ଏମିତି ମଣିଷ ଗୋଟେ ଗୋଟେ ମାରିଲେ ତାର କୁଟୁମ୍ବ ଛେଳି, କୁକୁଡା ବଳିଦେବେ ।

ସେ ଯଥେଷ୍ଟ ଖାଇବାକୁ ପାଇବ । ତେଣୁ ଦୁଇଆଡକୁ କଥା ରଖି ସେ କଣ କହିବ ବୁଦ୍ଧି ପାଞ୍ଚି ଆସିଲା । ଏଣେ ଅଜଗର କାଉକୁ ଦେଖି ରାଗରେ ଗର୍ଜିଉଠି କହିଲା, "କଣ ଖବର, ଲୋକଟା ମଲା ନା ବଂଚିଲା ?"

କାଉ କହିଲା -

"କି ଚୋଟ ମାରିଲ ଅଜଗର ଭାଇ
ଲୋକତ ମରିଲା ନାହିଁ
ଉଡି ଉଡି ମୋର ଡେଣା ଥକିଲାଣି
ଖବର ଦେବାର ପାଇଁ
ତୁମ ବିଷ ତାକୁ କାଟୁ କରିଲାନି
ଏଣୁ ନାଚୁଛି ସେ ସୁଖେ ।
କେତେବେଳେ ସିଏ ମରିବ ବୋଲିମୁଁ
ଚାହିଁଥିଲି ଗଛ ଫାଙ୍କେ ।"

ଏକଥା ଶୁଣି ଅଜଗର ନିଜକୁ ଧିକ୍କାର କରିବାକୁ ଲାଗିଲା । ତାର ବିଷ କଣ ସତେ ପାଣି ଫାଟିଗଲା । ବ୍ରହ୍ମାଙ୍କୁ ଖୁବ୍ ଗାଳିଦେଲା । ସେ କହିଲା ଯେଉଁ ବିଷ ବଳରେ ନିଜକୁ ସେ ବଳବାନ ମନେ କରୁଥିଲା, ସେ ବିଷ ତ ପାଣି ଫାଟିଗଲା । ଆଉ ତାର ସେ ବିଷଗୁଡାକ ବିଷ ଥଳିରେ ରଖି ଲାଭ କଣ ? ଏହାପରେ ସେ ବିଷ ଗୁଡାକ ବାନ୍ତି କରିବା ପରେ ସେ ଦୁର୍ବଳ ହୋଇପଡିଲା । ତାପରେ କାଉ କହିଲା,

"ଅଜଗର ଭାଇ କହୁଛି ସତ
ଲୋକଟା ମରିଛି ଖାଇତୋ ଚୋଟ ।
କୁଟୁମ୍ବ ତାଙ୍କର ଦେଲେ ଯେ ବଳି
ତାକୁ ଖାଇ ବେଳ ଗଲା ମୋ ଗଡି ।
ଭୟ କରି ତେଣୁ କହିନି ସତ
ଆଜିଠୁ ମୁଁ ତୋର ହେବିନି ମିତ । "

ତୁ ଟା ତ ସବୁ ବିଷ ବାନ୍ତି କରିଦେଲୁ । ତୋର ଆଉ ଏବେ କଣ ଅଛି ! ତୋ ସାଙ୍ଗରେ ମିତ ବସିଲାଭ କଣ ? ବରଂ ଲୋକମାନେ ମତେ ବଳିଭୋଜି ଖାଇବାକୁ ଦେଇଛନ୍ତି । ତାଙ୍କର ବନ୍ଧୁ ହୋଇ ତାଙ୍କୁ ସକାଳୁ କା କା କରି ନିଦରୁ ଉଠାଇବି । କାଉର ଠକପଣିଆ ଦେଖି ଅଜଗର ମନେ ମନେ ଅନୁତାପ କରିବାକୁ ଲାଗିଲା । ସେ ବାନ୍ତି କରିଥିବା ବିଷଗୁଡାକୁ ପୁଣି ଚାଟିବାକୁ ଆରମ୍ଭ କଲା । କିନ୍ତୁ ଯେଉଁ ଛେପ ପକାଯାଏ ତାକୁ ଆଉ କଣ ଢୋକି ହୁଏ ? ତେଣୁ ଅଜଗର ସେ ବିଷ ଚାଟିବାରୁ ତା ଜୀଭ ଟା ଖାଲି ନୀଳ ହୋଇଗଲା ସିନା, ହେଲେ ବିଷ ଥଳିକୁ ଆଉ ବିଷ ଗଲାନି । ସେଇ ବିଷ ଗୁଡା ଯେଉଁ ଗଛଲତା, କୀଟପତଙ୍ଗ, ପୋକ ଜୋକଙ୍କ ଠାରେ ଲାଗିଲା, ସେ ସବୁ ବିଷାକ୍ତ ହୋଇଗଲେ । ସେଇଦିନୁ ବଣରେ ଅନେକ ବିଷାକ୍ତ ଗଛ ଆଉ ଛୋଟ ଛୋଟ ବିଷାକ୍ତ ସାପ ଜନ୍ମ ନେଲେ । ଏଣେ ସେହି ଦିନରୁ ପରବୁଦ୍ଧିରେ ପଡି ଅଜଗର ନିଜର ଅତୁଳ ଶକ୍ତି ହରାଇ ମୋଡି ମାଡି ହୋଇ ଲୁଚିକରି ପଡିରହିଲା ।

ତେଣୁ ଆଜିକାଲି ଆମେ ଅଜଗରକୁ ଏଣେ ତେଣେ ବୁଲିବାର ଦେଖୁନା । ସେ ପାହାଡ ଜଙ୍ଗଲରେ ଲୁଚିକରି ପଡିରହିଥାଏ । ତାର ମଧ ଆଜିକାଲି ଆଉ ବିଷ ନାହିଁ ।

ସଂସାର-ଜୁଲାଇ-୧୯୮୪

# ଆମ କବି

କଟକ ଜିଲ୍ଲାର କୋରେଇ ଗ୍ରାମରେ ୧୯୪୨ ମସିହା ମଇ ମାସ ୧୫ ତାରିଖରେ ଶ୍ରୀ ସିଂହଙ୍କର ଜନ୍ମ । ଶିକ୍ଷାଗତ ଯୋଗ୍ୟତା - ବି.ଏ. ବି.ଇଡି., ଡିପ୍ ଇନ୍ ଲାଙ୍ଗୁଏଜ୍ । ଅଣଆନୁଷ୍ଠାନିକ ଶିକ୍ଷାର କନିଷ୍ଠ ସଂଯୋଜକ ରୂପେ କାର୍ଯ୍ୟରତ । ଓଡିଶାର ପ୍ରାୟ ସମସ୍ତ ପତ୍ରପତ୍ରିକାରେ କେତେ ଶହ ଲେଖା ପ୍ରକାଶିତ । ଆକାଶବାଣୀ ତଥା ଦୂରଦର୍ଶନର ଗୀତିକାର । ଶିଶୁ ସାହିତ୍ୟିକ, ଗୀତିକାର ଏବଂ ନାଟ୍ୟକାର ରୂପେ ପ୍ରତିଷ୍ଠିତ । ମୀନା ବଜାର, କୁଆଁତାରା, ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ପୁରସ୍କାର ସହ ବହୁ ଅନୁଷ୍ଠାନ ଦ୍ୱାରା ସମ୍ମାନିତ । ଏକାଙ୍କିକା, ଗୀତିକବିତା ଓ ଶିଶୁ ସାହିତ୍ୟ ସମେତ ପ୍ରାୟ ୫୦ ପାଖାପାଖି ପୁସ୍ତକ ରଚନା ।

ଠିକଣା : ଗ୍ରା/ପୋ : କୋରେଇ, ଜି-କଟକ, ପିନ୍-୭୫୫୦୨୨ ।

## ଚିଠି

ଡାକବାଲା ଡାକି କହେ ଚିଠି ନିଅ ଚିଠି
କିଏ ହସେ କିଏ କାନ୍ଦେ ପାଇ ଏଇ ଚିଠି ।
ପରୀକ୍ଷାରେ ପାସ୍ କଥା କହେ ଏଇ ଚିଠି
ମୋକଦ୍ଦମାର ଡିକ୍ରି ଶୁଣାଏ ଏଇ ଚିଠି ।
ଅମୁକର ଝିଅ ବାହା କହେ ଏଇଚିଠି
ସମୁକ ପୁଅର ବ୍ରତ୍ କଥା କହେ ଏଇଚିଠି ।
ବିଦେଶୁ ଆସିବା କଥା କହେ ଏଇ ଚିଠି
ବିଦେଶକୁ ଯିବା କଥା କହେ ଏଇଚିଠି ।
ଚାକିରି ପାଇଁ ପରୀକ୍ଷା କହେ ଏଇଚିଠି
ଚାକିରୀ ଛଟେଇ କଥା କହେ ଏଇଚିଠି ।
ଜିତିଲେ ଅଭିନନ୍ଦନ ଜଣାଏ ଏଇଚିଠି
ହାରିଲେ ସାନ୍ତ୍ୱନା ପୁଣି ଦିଏ ଏଇଚିଠି ।
ଜନମ ମୃତ୍ୟୁ ଖବର ଦିଏ ଏଇ ଚିଠି
ହସକାନ୍ଦ ସହଚର ଅଟେ ଏଇଚିଠି ।
ଦୁଃଖ ସୁଖ ଭଲମନ୍ଦ ଅଟେ ମାପକାଠି
ସଭିଙ୍କୁ ସମାନ ଭାବେ ଦେଖେ ଏଇଚିଠି ।
ରୂପ ସିନା ଭିନ୍ନ ଭିନ୍ନ ଗୁଣ ଏକଗୋଟି
ପରୋପକାରରେ ସଦା ଲାଗେ ଏଇଚିଠି ।

ପ୍ରସ୍ତୁତି-ପ୍ରଗତିବାଦୀ-୧୬.୯.୯୨

# ଲେଖକ ପରିଚୟ

ସଂପ୍ରତି ଅଧିକାଂଶ ଶିଶୁ ପତ୍ରିକାରେ ଲେଖୁଥିବା ଶିଶୁ ସାହିତ୍ୟିକ ମାନଙ୍କ ମଧ୍ୟରେ ଶ୍ରୀଯୁକ୍ତ ନନ୍ଦକିଶୋର ସିଂହ ଅନ୍ୟତମ । ସାଧାରଣ ସାହିତ୍ୟ କ୍ଷେତ୍ରକୁ ତାଙ୍କର ଦାନ ଥିଲେ ମଧ୍ୟ, ଶିଶୁ ସାହିତ୍ୟିକ ଭାବେ ସେ ଅଧିକ ପ୍ରତିଷ୍ଠିତ ।

ଶ୍ରୀଯୁକ୍ତ ସିଂହଙ୍କର ଜନ୍ମ ୧୯୪୨ ମସିହାରେ କଟକ ଜିଲ୍ଲାର କୋରେଇ ଗ୍ରାମରେ । ସେ ବି.ଏ.ବି.ଇଡି. ଯୋଗ୍ୟତା ସଂପନ୍ନ ଜଣେ ଶିକ୍ଷକ । ସଂପ୍ରତି ଡୋଲିପୁର ସେକେଣ୍ଡାରୀ ଟ୍ରେନିଂ ସ୍କୁଲର ଜନୈକ ସହକାରୀ ଶିକ୍ଷକ ।

ଶ୍ରୀଯୁକ୍ତ ସିଂହ ଅତ୍ୟନ୍ତ ଛାତ୍ରାବସ୍ଥାରୁ ଲେଖାଲେଖି ଆରମ୍ଭ କରିଛନ୍ତି । ସେ ଷଷ୍ଠ ଶ୍ରେଣୀର ଛାତ୍ର ଥିଲା ବେଳେ ତାଙ୍କର ଲେଖା 'ମୀନାବଜାର' ରେ ପ୍ରକାଶିତ ହୋଇଥିଲା । ଏଯାବତ୍, ମୀନାବଜାର, ମନପବନ, ବାରମଜା, ଶିଶୁ ସ୍ୱପ୍ନ ଶିଶୁନୟନ, ଶିଶୁରେଖା, ଜହ୍ନରାଇଜ, ଆ ଜହ୍ନମାମୁଁ, ଶରଗଶଶୀ, ପାରିଜାତ, ଟୁଉକୁମୁଷି, ଟିକିଫୁଲ, ଆମେ କୁନାକୁନି, ଶିଶୁ ରାଇଜ ଆଦି ଶିଶୁ ସାହିତ୍ୟ ପତ୍ରିକାରେ ତାଙ୍କ ଲେଖା ପ୍ରକାଶିତ ହୋଇଆସୁଛି । ଏହା ବ୍ୟତୀତ ସାଧାରଣ ସାହିତ୍ୟ ପ୍ରତିକା ଝଙ୍କାର, ଚିତ୍ରପୁରୀ, ଜୀବନରଂଗ, ସୌରଭ, ସୁଚରିତା, ମରୁତୀର୍ଥ, କାମନା, ଦ୍ରାଘିମା, ଆଦି ପତ୍ରିକାରେ ତାଙ୍କ ଲେଖା ପ୍ରକାଶିତ ହୋଇଛି ।

ଆକାଶବାଣୀ, ଦୂରଦର୍ଶନ, ଚଳଚିତ୍ର ସହ ସେ ଜଣେ ଗୀତିକାର ଭାବେ ଜଡିତ । ସେ ମଧ୍ୟ ଆକାଶବାଣୀ କଟକର ଜଣେ ସୌଖୀନ ନାଟ୍ୟକାର ତଥା ନାଟ୍ୟ ଶିଳ୍ପୀ ।

ତାଙ୍କର ପ୍ରଣୀତ ପୁସ୍ତକ ଗୀତିଗୁଚ୍ଛ, ଗୀତି ଓ ଗଜଲ୍, ରଂଗ ବେରଂଗ, ସାବାସ ଟୁଟୁ, ମଜା କାହାଣୀ ପ୍ରକାଶ ପାଇଛି । ଆଉ କେତୋଟି ପୁସ୍ତକ ପ୍ରକାଶ ଅପେକ୍ଷାରେ ଅଛି ।

ଶ୍ରୀଯୁକ୍ତ ସିଂହଙ୍କ ଲେଖାରେ ଆମ ବାରମଜା ପୁସ୍ତକ ସମୃଦ୍ଧ । ଆମେ ତାଙ୍କୁ ବାରମଜା ପରିବାରର ଜଣେ ବୋଲି ମନେକରୁଁ । ବାରମଜା ତାଙ୍କର ଦୀର୍ଘ ଜୀବନ ଓ ଉତ୍ତମ ସ୍ୱାସ୍ଥ୍ୟ କାମନା କରେ ଓ ଶିଶୁମାନଙ୍କ ପାଇଁ ତାଙ୍କ ଲେଖନୀ ଅବ୍ୟାହତ ରହୁ ବୋଲି ଆଶାକରେ ।

ବାରମଜା-ଏପ୍ରିଲ୍ -୧୯୮୧

# ଏ ସଂଖ୍ୟାର ଗୀତିକବି (ସହକାର )

୧୯୪୨ ମସିହା ମଇ ୧୫ ତାରିଖରେ ଯାଜପୁର(ଅବିଭକ୍ତ କଟକ) ଜିଲ୍ଲାର କୋରେଇ ଥାନା ସାଦକପୁର (ଶଙ୍ଖପାରି) ଗ୍ରାମରେ ଗୀତିକବି ନନ୍ଦକିଶୋର ସିଂହର ଜନ୍ମ । ପିତା ସ୍ୱର୍ଗୀୟ ରାଜ କିଶୋର ସିଂହ ଓ ମାତା ସ୍ୱର୍ଗୀୟା ରୂପା ଦେବୀ । ଶିକ୍ଷାଗତ ଯୋଗ୍ୟତା ବି.ଏ. ବି.ଇଡି., ଡିପି.ଇନ୍-ଲାଙ୍ଗୁଏଜ୍(ଅସମୀୟା) । ଉପସ୍ଥିତ କର୍ତ୍ତବ୍ୟ ଶିକ୍ଷା ବିଭାଗରୁ ମଇ ୨୦୦୨ ମସିହାରୁ ଅବସର ପରେ ସାରସ୍ୱତ ସାଧନାରେ ବ୍ରତୀ ।

<u>କୃତି-ସଂପୃକ୍ତି-ପ୍ରଶସ୍ତି :</u>

ଷଷ୍ଠ ଶ୍ରେଣୀରେ ପଢୁଥିବା ବେଳେ ଲେଖାଲେଖି ଆରମ୍ଭ । ୭ମ ଶ୍ରେଣୀ ବେଳକୁ ପ୍ରଥମ ଲେଖା ମୀନାବଜାରରେ ପ୍ରକାଶିତ । ସେଇ ଦିନରୁ ଅର୍ଥାତ ୧୯୫୪ରୁ ଅଦ୍ୟାବଧି ଓଡିଶାର ପ୍ରତ୍ୟେକ ପତ୍ରପତ୍ରିକା, ପ୍ରତ୍ୟେକ ସମ୍ବାଦପତ୍ରର ସାହିତ୍ୟ ପୃଷ୍ଠାରେ ତାଙ୍କର ବିଭିନ୍ନ ସ୍ୱାଦର ଲେଖା ପ୍ରକାଶ ପାଇ ଆସୁଛି ।

୧୯୬୨ ମସିହାରୁ ଆକାଶବାଣୀ, ଦୂରଦର୍ଶନ, ଚଳଚ୍ଚିତ୍ର ମଞ୍ଚ ଆଦି ସହ ନାଟକରଚନା, ଗୀତ ରଚନା, ଅଭିନୟ, ଆଲୋଚନା ଆଦିରେ ସଂପୃକ୍ତ ।
୪ଖଣ୍ଡ ଗୀତିକବିତା, ଦୁଇଟି କବିତା ପୁସ୍ତକ ୪ଟି ନାଟକ , ୧୫ ଖଣ୍ଡ ଶିଶୁ ସାହିତ୍ୟ ୧୦ ଖଣ୍ଡ ଅନୁବାଦ ପୁସ୍ତକ ସହ ୪୦ ରୁ ଉର୍ଦ୍ଧ୍ୱ ପୁସ୍ତକ ରଚନା କରିଛନ୍ତି ।

ଗୀତିକବିତା, ଶିଶୁ ସାହିତ୍ୟ, ନାଟକ ଅଭିନୟ ପାଇଁ ବହୁ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ଓ ସମ୍ମାନିତ ।

ଉତ୍କଳ ସାହିତ୍ୟ ସମାଜ, ଓଡିଆ ଗୀତିକବି ସମାଜ, ନିଖିଳ ଉତ୍କଳ ଶିଳ୍ପୀ ପରିଷଦ, କୋରେଇ ମଣ୍ଡଳ ସାହିତ୍ୟ ସଂସଦ ସମେତ ଆନ୍ତର୍ଜାତିକ ସାରସ୍ୱତ ସଂସ୍ଥା ABI ସହ ସଦସ୍ୟ ଭାବେ ସଂପୃକ୍ତ ।

ବର୍ତ୍ତମାନ ମୁକ୍ତ ସ୍ତମ୍ଭକାର ଭାବରେ ବିଭିନ୍ନ ସମ୍ବାଦପତ୍ରକୁ ଲେଖା ପ୍ରେରଣ ସାଙ୍ଗକୁ ସ୍ୱ ସଂପାଦନାରେ ପଲ୍ଲୀଭିତ୍ତିକ ତ୍ରୈମାସିକ ପତ୍ରିକା "ବୋଲେ ହୁଁଟି" ର ନିୟମିତ ପ୍ରକାଶନରେ କାର୍ଯ୍ୟବ୍ୟସ୍ତ ।

ଆସନ୍ତୁ ତାଙ୍କ ରଚନାରୁ ଦୁଇଟି ଗୀତିକବିତା ପଢିବା-

## ଦୁଇଟି ଭକ୍ତି ପୁଷ୍ପ

-୧-

ତୁମକୁ ନପାଇ କାନ୍ଦିବାରେ ପ୍ରଭୁ ପାଉଛି ମୁଁ ଯେଉଁ ଆନନ୍ଦ
ତୁମକୁ ପାଖରେ ପାଇବା ସୁଖରେ ହଜେଇ ଦେବି ସେ ଆନନ୍ଦ ।୦।
ମରୁ ଦହକରେ ଚାଲିବା ଭିତରେ ଛାଇ ଖୋଜିବାର ଆକୁଳତା
କଣ୍ଟକରେ ଛଡି ସୁବାସିତ ଫୁଲ ଫୁଟିବାରେ ଯେଉଁ ପୁଲକତା
ଘନ ଅନ୍ଧକାରେ ପଥହରା ହୋଇ ତୁମକୁ ଖୋଜିବା ଆନନ୍ଦ
ଆଶାର ସୂର୍ଯ୍ୟ ଝଲମଲ ହେଲେ ହଜିଯାଏ ସେଇ ଆନନ୍ଦ ।୧।
ଅତଳ ସାଗରେ ଝଡ ଉଠେ ଯେବେ ଦିଗହରା ହେବା ଆତୁରତା
କାନନ ମଝିରେ ମତ୍ତ ଦନ୍ତାବଳ ଆଗେ ପଡି ଯେଉଁ କାତରତା
ଜୀବନ ଯୁଦ୍ଧେ ହାରିବା ଭିତରେ ଜିଣିବା ଆଶାର ଆନନ୍ଦ
ଜୟଲାଭ ପରେ ହଜିଯାଏ ପ୍ରଭୁ ଜୟମାଲ୍ୟ ପିନ୍ଧା ଆନନ୍ଦ । ।୨।

-୨-

ଜଗତ କହୁଛି ତୋତେ ଜଗତର ନାଥ
ତୋ ଜଗତେ ଏତେ ପୁଣି କାହିଁକି ଅନାଥ ।୦।
ଆନନ୍ଦ ବଜାରେ ତୋର ଭରା କଇବଲ୍ୟ
ତୋ ଭକତ ଲୋକେ କିଆଁ ହୁଏ କଲବଲ
ଦୁଃଖହାରୀ ବୋଲାଉଛୁ ଦେଇ ଏତେ ଦୁଃଖ ।୧।
ତୋ ରଙ୍ଗା ଅଧରେ ସଦା ଲାଖି ରହେ ହସ
ଭକ୍ତ ଆଖି ଲୁହେ ଭରି ପାଉ କେଉଁ ଯଶ
ଆଲୋକଦାତା ଲିଭାଉ ମୁକ୍ତି-ଆଶା-ଦୀପ ।୨।

ଜୁଲାଇ-ଅଗଷ୍ଟ-୨୦୦୨

# ନନ୍ଦକିଶୋର ସିଂହଙ୍କୁ ଆନ୍ତର୍ଜାତିକ ସମ୍ମାନ

ନନ୍ଦକିଶୋର ସିଂହ ୧୯୫୨ ମସିହାରୁ ଲେଖନୀ ଚାଳନା କରିଆସୁଛନ୍ତି । ୧୯୬୪ ମସିହାରୁ ସେ ଆକାଶବାଣୀର ସ୍ୱୀକୃତିପ୍ରାପ୍ତ ଗୀତିକାର ଆଜିପର୍ଯ୍ୟନ୍ତ ବିଭିନ୍ନ ପତ୍ରପତ୍ରିକାରେ ସାହିତ୍ୟର ବିଭିନ୍ନ ବିଭାଗରେ ତାଙ୍କର ପ୍ରାୟ ପାଞ୍ଚଶହରୁ ଉର୍ଦ୍ଧ୍ୱ ରଚନା ପ୍ରକାଶ ପାଇଲାଣି । ସହସ୍ରାଧିକ ଗୀତ ତାଙ୍କର ଆକାଶବାଣୀ ଓ ଦୂରଦର୍ଶନରୁ ବିଭିନ୍ନ ଶିଳ୍ପୀଙ୍କ କଣ୍ଠରେ ପ୍ରସାରିତ ।

ତାଙ୍କର ପ୍ରାୟ ୩୫ଖଣ୍ଡ ପୁସ୍ତକ ଶିଶୁ ସାହିତ୍ୟ, ନାଟକ, ଉପନ୍ୟାସ, କବିତା, ଗୀତ ତଥା ଅନୁବାଦ ରୂପରେ ପ୍ରକାଶିତ ।

ପ୍ରଜାତନ୍ତ୍ର ବିଷୁବ ମିଳନ, ମୀନାବଜାର ପୁରସ୍କାର, ଗୋକର୍ଣ୍ଣିକା, ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ପୁରସ୍କାର, ବିରେନ୍ଦ୍ର ଭୂୟାଁ ସ୍ମୃତି ପୁରସ୍କାର ସମେତ ସେ ବହୁ ଅନୁଷ୍ଠାନ ଦ୍ୱାରା ସମ୍ମାନିତ ଓ ପୁରସ୍କୃତ । ୧୯୯୭ରେ ସେ ପ୍ରଜାତନ୍ତ୍ର ବିଷୁବ ମିଳନରେ ମନୋଜ ସ୍ମାରକୀ ଶିଶୁ ସାହିତ୍ୟ ପୁରସ୍କାର, ନିଖିଳଉତ୍କଳ ଶିଶୁ ମେଳା ସମିତି ଚଣ୍ଡିଖୋଲର ମା' ଯଶୋଦା ଶିଶୁ ସାହିତ୍ୟ ପୁରସ୍କାର ମଧ୍ୟ ଲାଭ କରିଛନ୍ତି ।

ଶ୍ରୀ ସିଂହଙ୍କର କୃତିର ସ୍ୱୀକୃତି ସ୍ୱରୂପ ଆମେରିକାର A.B.I. ସଂସ୍ଥା ତାଙ୍କୁ ରିସର୍ଚ୍ଚ ଫେଲୋ ଭାବେ ଗ୍ରହଣ କରି ପ୍ରମାଣପତ୍ର ଦେବା ସହିତ ଏକ ରୌପ୍ୟ ପଦକ ପ୍ରଦାନ କରିଛନ୍ତି ।

ପ୍ରସ୍ତୁତି- ସମୟ- ୧.୨.୯୮

# ଡ. ବସନ୍ତ କିଶୋର ସାହୁଙ୍କ ପ୍ରବନ୍ଧ -
# ନନ୍ଦକିଶୋର ସିଂହଙ୍କ ଶିଶୁ ଗଳ୍ପରେ ଶିଶୁ ମନସ୍ତତ୍ତ୍ୱ-ଏକ ଅଧ୍ୟୟନ

ଶିଶୁ-ସାହିତ୍ୟ ଶିଶୁ ମାନଙ୍କର ଜୀବନ ବେଦ । ଶିଶୁର ପ୍ରତ୍ୟେକ କାର୍ଯ୍ୟକଳାପ ଓ ଭାବାବେଗ ଏଥିରେ ଆତ୍ମପ୍ରକାଶ କରେ । ଫଳରେ ଶିଶୁ ସେହି ସାହିତ୍ୟରେ ନିଜକୁ ଆବିଷ୍କାର କରେ ଓ ନିଜର ସ୍ୱରୂପ ଉଦ୍‌ଘାଟିତ କରି ଖୁସି ହୁଏ । ଏଣୁ ଶିଶୁ ସାହିତ୍ୟ ଶିଶୁ ମାନଙ୍କର ସାହିତ୍ୟ ଓ ଶିଶୁ ମାନଙ୍କ ପାଇଁ ସାହିତ୍ୟ । ଏହାର ରଚୟିତା ବୟସ୍କ କିନ୍ତୁ ପାଠକ ଶିଶୁ । ଅବଶ୍ୟ ବଡମାନେ ଶିଶୁ-ସାହିତ୍ୟ ପାଠ କରି ଆନନ୍ଦ ଲାଭ କଲେହେଁ, ଏହା ଶିଶୁ ମାନଙ୍କ ପାଇଁ ଉଦ୍ଦିଷ୍ଟ । ଶିଶୁ-ସାହିତ୍ୟ ଶିଶୁମାନଙ୍କର ମନୋରଂଜନ କରିବା ସହିତ ସେମାନଙ୍କୁ ଉପଯୁକ୍ତ ମାର୍ଗ ପ୍ରଦର୍ଶନ କରି ସୁନାଗରିକରେ ପରିଣତ

କରିଥାଏ । ଏହାର ମୂଳ କାରଣ ହେଉଛି ଶିଶୁର ମନସ୍ତତ୍ତ୍ୱକୁ ଦୃଷ୍ଟିରେ ରଖି ସାହିତ୍ୟ ରଚନା କରିବା ।

ଆଜିର ଶିଶୁ ଆଗାମୀ କାଲିର ଭବିଷ୍ୟତ । ତେଣୁ ସେହି ଭବିଷ୍ୟତର ନାଗରିକକୁ ଯଦି ଏବେଠାରୁ ଉପଯୁକ୍ତ ଦିଗ୍‌ଦର୍ଶନ ପ୍ରଦାନ କରାନଯାଏ, ତେବେ ତାର ସେହି ସୁନେଲି ଭବିଷ୍ୟତ ଅନ୍ଧାରମୟ ହୋଇଯିବ । ସେହି ଅନ୍ଧକାରରେ ବାଟବଣା ହୋଇ ସେ ହାହୁତାଶମୟ ଜୀବନଯାପନ କରିବ । ତେଣୁ ସରଳ ଓ ନିଷ୍ପାପ ଶିଶୁର ସୁନେଲି ଭବିଷ୍ୟତ କୁ ଗଢିବାକୁ ଉଭୟ ଶିଶୁ-ସାହିତ୍ୟ ଓ ଶିଶୁ-ସାହିତ୍ୟିକ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । ଶିଶୁର କ୍ରମ ବିକଶିତ ମନରେ ସଦାସର୍ବଦା ବିଭିନ୍ନ ପ୍ରକାର ପ୍ରଶ୍ନ ଜାଗରିତ ହେଉଥାଏ । ନୂଆ ବସ୍ତୁ ଓ ପଦାର୍ଥର ସଂପର୍କରେ ଆସି ତା ମନରେ କାହିଁକି, କିପରି କେମିତି ଇତ୍ୟାଦି ବିଭିନ୍ନ ପ୍ରଶ୍ନ ସବୁବେଳେ ଆନ୍ଦୋଳିତ ହେଉଥାଏ । ଜିଜ୍ଞାସା ପ୍ରବୃତ୍ତିର ବିକାଶ ହେତୁ ଏପରି ଘଟିଥାଏ । କାରଣ ଶିଶୁ ନୂଆକରି ତାର ଚତୁଃପାର୍ଶ୍ୱ ଦେଖେ ଓ ଅନୁଭବ କରେ । ଶିଶୁର ଏହି ଜିଜ୍ଞାସୁ ପ୍ରବଣ ମନକୁ ଶାନ୍ତ କରିବା ପାଇଁ ଶିଶୁ-ସାହିତ୍ୟ ଏକ ଅମୋଘ ଅସ୍ତ୍ରଶସ୍ତ୍ର ଭାବରେ କାର୍ଯ୍ୟ କରିଥାଏ ।

ସୁତରାଂ ଶିଶୁ-ସାହିତ୍ୟିକ ଯଦି ଶିଶୁ ପ୍ରିୟ ହୋଇଥାଏ ଓ ତାଙ୍କର ଶିଶୁ ରଚନା ଶିଶୁ ମାନଙ୍କ ଉପରେ ଗଭୀର ପ୍ରଭାବ ପକାଇଥାଏ । ଏହି ପରିପ୍ରେକ୍ଷୀରେ ସାଂପ୍ରତିକ କାଳରେ ଶିଶୁ ମାନଙ୍କ ପାଇଁ ମୌଳିକ ଗଳ୍ପ ସୃଷ୍ଟି କରିବାରେ ଯେଉଁ କେତେ ଜଣଙ୍କ ନାମକୁ ସ୍ମରଣ କରାଯାଏ, ସେମାନଙ୍କ ମଧ୍ୟରେ ନନ୍ଦକିଶୋର ସିଂହ ଅନ୍ୟତମ । ଶିଶୁ-ସାହିତ୍ୟ ବ୍ୟତୀତ ଜଣେ ନାଟ୍ୟକାର , ଗୀତିକାର ଓ ଔପନ୍ୟାସିକ ଭାବରେ ମଧ୍ୟ ତାଙ୍କର ସୁଖ୍ୟାତି ରହିଛି । ଏ ଆଲୋଚନା କେବଳ ତାଙ୍କର ଶିଶୁ ଗଳ୍ପକୁ ନେଇ ଅନୁଧ୍ୟାନ କରାଯାଇଛି । ପ୍ରାୟ ତେର ଖଣ୍ଡରୁ ଉର୍ଦ୍ଧ୍ୱ ଶିଶୁ-ସାହିତ୍ୟ ପୁସ୍ତକର ସେ ସ୍ରଷ୍ଟା । ଏହା ବ୍ୟତୀତ ଆହୁରି ଶତାଧିକ ଶିଶୁ ଗଳ୍ପ ତାଙ୍କର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ । ତାଙ୍କ ରଚନା ସମୂହ କିପରି ଭାବେ ଶିଶୁ ମନସ୍ତତ୍ତ୍ୱ ଉପରେ ଆଧାରିତ, ତାହା ନିମ୍ନରେ ପୁଙ୍ଖାନୁପୁଙ୍ଖ ଭାବେ ଦର୍ଶାଇ ଦିଆଯାଉଛି ।

## ଶିଶୁ-ସାହିତ୍ୟ ଓ ଶିଶୁ ମନୋବିଜ୍ଞାନ :

ସାହିତ୍ୟର ସଂପର୍କ ମନ ସହିତ । ତେଣୁ, ଶିଶୁ-ସାହିତ୍ୟର ସଂପର୍କ ଶିଶୁର ମନ ସହିତ । ଶିଶୁର ମନ ବୟସ୍କ ବ୍ୟକ୍ତିର ମନ ଠାରୁ ସ୍ୱତନ୍ତ୍ର ଏବଂ ଅଲଗା । ତାର ନିଜର ସ୍ୱତନ୍ତ୍ର ଚିନ୍ତା, ବିଚାର ଶକ୍ତି ଭାବାବେଗ ରହିଛି । ତେଣୁ ସେ ସଦା ସର୍ବଦା ନିଜ ମନ ଅନୁଯାୟୀ କାର୍ଯ୍ୟ କରିବାକୁ ଚାହେଁ । ସେଥିରେ ସାମାନ୍ୟ ବାଧାସୃଷ୍ଟି ହେଲେ ସେ ଉତ୍ତେଜିତ ଓ କ୍ରୋଧି ହେବା ସହିତ ନିଜର ପ୍ରତିକ୍ରିୟା ପ୍ରକାଶ କରେ । ଏହାକୁ ଆମେ

କହୁ ପିଲା ଦୁଷ୍ଟାମି କରୁଛି । କଥା ମାନୁ ନାହିଁ । କିନ୍ତୁ, ଏକଥା କହିବା ସମୟରେ ଆମେ କଣ କେବେ ଶିଶୁର ଚିନ୍ତାଧାରା ଓ କାର୍ଯ୍ୟକଳାପ ପ୍ରତି ସମ୍ମାନ ପ୍ରଦର୍ଶନ କରିଛେ ? ଏକଥା ଯଦି ପ୍ରତ୍ୟେକ ପିତାମାତାଙ୍କୁ ପଚରାଯାଏ, ତେବେ ସମସ୍ତେ ନିଶ୍ଚୟ ନାସ୍ତିବାଣୀ ଶୁଣାଇବେ । କାରଣ ଆମେ ସମସ୍ତଙ୍କୁ ଭାବୁ ଆମେ ପିଲାଙ୍କୁ ଯାହା ଯେପରି କହିବୁ - ସେମାନେ ସେପରି ତାହା କରିବାକୁ ବାଧ । କେତେକ କ୍ଷେତ୍ରରେ ପିଲାମାନେ ବାଧବାଧକତାରେ ବୟସ୍କ ମାନଙ୍କର ଇଚ୍ଛାନୁଯାୟୀ କାର୍ଯ୍ୟ କରୁଥିଲେ ହେଁ, ବୟସ୍କ ମାନଙ୍କର ଅବର୍ତ୍ତମାନରେ ସେମାନେ ନିଜେ ଚାହୁଁଥିବା କାର୍ଯ୍ୟ ପ୍ରତି ଅଧିକ ଧ୍ୟାନ ଦେଇଥାନ୍ତି ।

ବାସ୍ତବ କ୍ଷେତ୍ରରେ ଅସନ୍ତୁଷ୍ଟ ଶିଶୁ ସର୍ବଦା ତାର ମାନସିକ ଶାନ୍ତି ପାଇଁ ଅନ୍ୟ ଏକ ମାଧ୍ୟମ ଖୋଜୁଥାଏ । ଯେଉଁ ମାଧ୍ୟମ ଦ୍ୱାରା କୌଣସି ପ୍ରକାର ପ୍ରତିବନ୍ଧକ ସୃଷ୍ଟି ହବନାହିଁ । ତାର ଏଇ ଆଶା କେବଳ ମାନସିକ ସ୍ତରରେ ପୂରଣ ହୋଇପାରେ । କାରଣ ଆମର ସମସ୍ତ କ୍ରିୟା ପ୍ରକ୍ରିୟା ଓ ଭାବାବେଗ ଯାହା ମନ ଦ୍ୱାରା ନିୟନ୍ତ୍ରିତ ତାହାହିଁ ହେଉଛି ଶିଶୁ ମନୋବିଜ୍ଞାନ । ଶିଶୁ ମନୋବିଜ୍ଞାନ ସହିତ ଶିଶୁ-ସାହିତ୍ୟର ଘନିଷ୍ଠ ସଂପର୍କ ରହିଛି । କାରଣ ଶିଶୁ ଯେତେବେଳେ ବାସ୍ତବ ଜଗତରେ ପଦାଙ୍କିତ ଓ ଦୁଃଖୀ ହୋଇ ନିଜର ମନ ଖୁସି ପାଇଁ ନିଜକୁ ଶିଶୁ-ସାହିତ୍ୟ ମଧ୍ୟରେ ହଜାଇ ଦିଏ, ସେତେବେଳେ ତନ୍ମଧ୍ୟରେ ସେ ସମସ୍ତ ଅସଫଳ କାର୍ଯ୍ୟକୁ ସଫଳ ଓ ସମସ୍ତ ଅସାଧ୍ୟ କାର୍ଯ୍ୟକୁ ସାଧ୍ୟ ହେବାର ଦେଖେ । ଚରିତ୍ର ମାନଙ୍କର ଭାବାବେଗ ଓ କାର୍ଯ୍ୟକଳାପ ସହିତ ନିଜର ଭାବାବେଗ ଓ କାର୍ଯ୍ୟକଳାପ ର ସାମ୍ୟତା ସେ ଦେଖିବାକୁ ପାଏ । ଏହି ସାମ୍ୟତା କେବଳ ଶିଶୁ ମନୋବିଜ୍ଞାନ ଯୋଗୁହିଁ ସମର୍ଥ ହୋଇଥାଏ । ତେଣୁ, ଶିଶୁ, ଶିଶୁ-ସାହିତ୍ୟ ଓ ଶିଶୁ ମନୋବିଜ୍ଞାନ ଗୋଟିଏ ସରଳ ରେଖାର ତିନୋଟି ବିନ୍ଦୁ ମାତ୍ର । ଯାହାକି ପରସ୍ପରକୁ ଗୋଟିଏ ରଜ୍ଜୁରେ ବାନ୍ଧିରଖେ ।

ଯେଉଁ ଶିଶୁ ସାହିତ୍ୟରେ ଶିଶୁ ମନୋବିଜ୍ଞାନ ସମର୍ଥିତ ଉପାଦାନ ଯେତେ ଅଧିକ ମାତ୍ରାରେ ଥାଏ, ତାହା ଶିଶୁକୁ ସେତେ ଆକର୍ଷିତ କରେ । ଏହି ପରିପ୍ରେକ୍ଷୀରେ ନନ୍ଦକିଶୋର ସିଂହଙ୍କ ଶିଶୁ ଗଳ୍ପରେ ଶିଶୁ ମନୋବିଜ୍ଞାନ ସମର୍ଥିତ ଉପାଦାନ ସଂପର୍କରେ ନିମ୍ନରେ ବିଶଦ ଭାବରେ ଆଲୋଚନା କରାଯାଇଛି ।

**ଧାରଣା :**

ଶିଶୁ ଜନ୍ମରୁ କୌଣସି କଥା ଶିଖିନଥାଏ । ପରିବାର ଓ ପରିପାର୍ଶ୍ୱ ଉପରେ ନିର୍ଭର କରି ତାକୁ ସମସ୍ତ କଥା ଶିଖିବାକୁ ହୋଇଥାଏ । ଏହାକୁ ପ୍ରତ୍ୟକ୍ଷ ଜ୍ଞାନ କୁହାଯାଏ । ଏହି ଜ୍ଞାନ ଗ୍ରହଣ କରିବାର ଶକ୍ତି ଯେଉଁ ଶିଶୁଠାରେ ଯେତେ ଅଧିକ, ସେ ସ୍ୱଳ୍ପ ସମୟ ମଧ୍ୟରେ ସେତେ ଅଧିକ କଥା ଶିଖିପାରେ ଓ ଜାଣିପାରେ । ଏପରି ଶିଖିବା ଓ ଜାଣିବାକୁ ଶିଶୁ ମନୋବିଜ୍ଞାନରେ ଧାରଣା କୁହାଯାଏ । ଶିଶୁ ମନରେ କୌଣସି

ବିଷୟ ବା ବସ୍ତୁ ସଂପର୍କରେ ଏକ ସ୍ପଷ୍ଟ ଧାରଣା ସୃଷ୍ଟି କରିବା ପାଇଁ ଶିଶୁ-ସାହିତ୍ୟ ଏକ ଗୁରୁ ଦାୟିତ୍ୱ ତୁଲାଇଥାଏ । ଚଞ୍ଚଳ ମତି ଶିଶୁର ମନକୁ ସ୍ଥିର କରିବାକୁ ବା ତାର ଜିଜ୍ଞାସୁ ପ୍ରବୃତ୍ତିର ଉପସମ ପାଇଁ ଅନେକ କାଳ୍ପନିକ କାହାଣୀ ସୃଷ୍ଟି କରାଯାଏ । ଉକ୍ତ କାହାଣୀ ପଢ଼ି ଶିଶୁ ଆନନ୍ଦିତ ହେବା ସହିତ ଏକ ନିର୍ଦ୍ଦିଷ୍ଟ ବସ୍ତୁ ବା ବିଷୟ ସଂପର୍କରେ ନିଜ ମନ ମଧ୍ୟରେ ଏକ ଧାରଣାର ବୀଜ ରୋପିତ କରେ । ନନ୍ଦକିଶୋର ସିଂହଙ୍କର କେତେକ ଗଳ୍ପ ପିଲାମାନଙ୍କ ମନରେ ଧାରଣା ସୃଷ୍ଟି କରିବା ପାଇଁ ହିଁ ଉଦ୍ଦିଷ୍ଟ । ତାଙ୍କର 'ବେଙ୍ଗ ରାବେ କାହିଁକି ?' ଗଳ୍ପକୁ ଉଦାହରଣ ଭାବେ ଗ୍ରହଣ କରାଯାଇପାରେ । ବର୍ଷାଦିନେ କେଁ କଟର କେଁ କଟର କରି ବେଙ୍ଗ ବୋବାଇବା କଥାଟି ଏକ ସ୍ୱଭାବିକ ଘଟଣା । କିନ୍ତୁ ସେ କାହିଁକି ଏପରି ବୋବାଏ ଯଦି ଶିଶୁଟିଏ ଆମକୁ ପଚାରି ବସେ -ତେବେ କଣ ଆମେ ତାର ଉତ୍ତର ଦେଇପାରିବା । କିନ୍ତୁ ଶ୍ରୀଯୁକ୍ତ ସିଂହ ନିଜର ବିଚାର ଓ କଳ୍ପନା ଶକ୍ତି କୁ ପ୍ରୟୋଗ କରି ଏକ ସୁନ୍ଦର ଗଳ୍ପଟିଏ ସୃଷ୍ଟି କରିଛନ୍ତି । "ଅନେକ ଦିନ ତଳରେ ପୃଥିବୀ ପୃଷ୍ଠାରେ ବର୍ଷା ନହେବାରୁ ବେଙ୍ଗଟିଏ ଚିନ୍ତିତ ହୋଇ ବର୍ଷାର ରାଜା ଇନ୍ଦ୍ର ଦେବତାଙ୍କ ପାଖକୁ ଯାଇଛି କୈଫିୟତ ମାଗିବା ପାଇଁ । ଏହା ଜାଣିପାରି ଇନ୍ଦ୍ର ସାମାନ୍ୟ ବେଙ୍ଗକୁ ଘଉଡାଇ ଦେବାପାଇଁ ବିଭିନ୍ନ ସମୟରେ ପାରା, କୁକୁର ଓ ଅନ୍ୟ ରଖୁଆଳ ମାନଙ୍କୁ ପ୍ରେରଣ କରିଛନ୍ତି । କିନ୍ତୁ ଚତୁର ବେଙ୍ଗ ପୂର୍ବରୁ ସତର୍କତା ଅବଲମ୍ବନ କରି ନିଜ ସାଥିରେ କୋକିଶିଆଳୀ, ଭାଲୁ ଓ ବାଘକୁ ସାଙ୍ଗରେ ନେଇ ଯାଇଥିଲା । ଯେଉଁମାନେକି ଇନ୍ଦ୍ରଙ୍କର ସମସ୍ତ ପ୍ରତିରୋଧକୁ କୁଶଳତାର ସହିତ ମୁକାବିଲା କରିପାରି ସେମାନଙ୍କୁ ହରାଇଦେଲା । ଇନ୍ଦ୍ର ଭାବିଲେ ଏଇ ବେଙ୍ଗ ଗୋଟିଏ ସାଧାରଣ ଜନ୍ତୁ ନୁହେଁ- ତେଣୁ ତାକୁ ସନ୍ତୁଷ୍ଟ କରାଇବା ପାଇଁ ସଂଗେ ସଂଗେ ବର୍ଷା କରାଇଲେ । ମାତ୍ର ଏତିକିରେ ବେଙ୍ଗ ଇନ୍ଦ୍ରଙ୍କୁ ଛାଡିଲା ନାହିଁ- ଭବିଷ୍ୟତରେ ଆଉ ଯେପରି ଏପରି ଘଟଣା ନଘଟିବ ସେଥିପାଇଁ ଇନ୍ଦ୍ରଙ୍କ ଠାରୁ ପ୍ରତିଶ୍ରୁତି ମାଗିଲା । ଇନ୍ଦ୍ର ଦେଖିଲେ ଏ ବେଙ୍ଗ ଛାଡିବ ନାହିଁ । ତେଣୁ ସେ ବେଙ୍ଗକୁ କହିଲେ, ..ପୃଥିବୀରେ ବର୍ଷାର ଅଭାବ ହେଲେ ତୁମେ ଟିକେ ସ୍ୱର୍ଗକୁ ଚାହିଁ ଦି ଚାରି କୁହାଟ ମାରିଦେବ । ସେତିକିରେ ମୁଁ ମେଘ ମାନଙ୍କୁ ସଂଗେ ସଂଗେ ପଠାଇଦେବି । ତୁମର ଆଉ ଆସିବା ଦରକାର ନାହିଁ । "

ଏହା ବ୍ୟତୀତ ଟୁଟୁର ରାଇଜ ଫେରି ପୁସ୍ତକରେ ପକ୍ଷୀ, ଆକାଶ, ହାତୀ, ବାଘ, ମାଛ ଆଦି ସଂପର୍କରେ ସୁନ୍ଦର ଓ ସାବଲୀଳ ଶୈଳୀରେ ଗାଳ୍ପିକ ପିଲାମାନଙ୍କ ମନରେ ଏକ ସ୍ୱଚ୍ଛ ଧାରଣା ସୃଷ୍ଟି କରିବା ପାଇଁ ସକ୍ଷମ ହୋଇପାରିଛନ୍ତି ।

**ପରିବେଶ :**

ଶିଶୁ ନିକଟରେ ପରିବେଶ ହେଉଚି ସବୁଠାରୁ ମୂଲ୍ୟବାନ । ଶିଶୁ ମନୋବିଜ୍ଞାନରେ ପରିପାର୍ଶ୍ୱ ଅର୍ଥ ଶିଶୁର ଚତୁଃପାର୍ଶ୍ୱ ବା ଶିଶୁ ଯେଉଁମାନଙ୍କର ଘନିଷ୍ଠ

ସଂପର୍କରେ ଆସେ । ଶିଶୁ ଯେଉଁମାନଙ୍କ ସଂପର୍କରେ ଆସୁଛି, ସେମାନଙ୍କ ସଂପର୍କରେ ଅଧିକରୁ ଅଧିକ ଜାଣିବା ପାଇଁ ତାର ଆଗ୍ରହ ବୃଦ୍ଧିପାଇଥାଏ । ତେଣୁ ତାର ପରିବେଶରେ ବସବାସ କରୁଥିବା ଜୀବଜନ୍ତୁ, ଗଛଲତା ଓ ପଶୁପକ୍ଷୀ ମାନଙ୍କ ସଂପର୍କରେ ଗଳ୍ପ ପାଠ କରି ଶିଶୁ ଅଧିକ ଖୁସି ହୁଏ । ଶିଶୁ ମନସ୍ତତ୍ତ୍ୱ ର ଏହି ଉପାଦାନକୁ ନେଇ ଗାଳ୍ପିକ ଶ୍ରୀଯୁକ୍ତ ସିଂହ ଅନେକ ଗଳ୍ପ ରଚନା କରିଥିବା ଜଣାଯାଏ । ତାଙ୍କର 'କାଳିଆ ଷଣ୍ଢ ପାଇଲା ଦଣ୍ଡ', 'ଚିଲ ବେଙ୍ଗ ମୂଷା', 'ବାଘ ଭଣଜାର ବିଲେଇ ମାଇଁ', 'ଶିଆଳ ଝିଅର ବାହାଘର', 'ଅଦ୍ଭୁତ ମେଣ୍ଢା' ଏବଂ 'ଠେକୁଆ ଓ କାଠୁରିଆ ପିଲା' ଆଦି ଗଳ୍ପ ଗୁଡ଼ିକ ଯେଉଁପରି ଶିକ୍ଷଣୀୟ ସେହିପରି ମଧ ଶିଶୁ ପରିବେଶ ଆଧାରିତ ।

## ପରିଚୟବୋଧ :

ଶିଶୁ ଯେଉଁମାନଙ୍କ ସଂସ୍ପର୍ଶରେ ଆସିଥାଏ ସେହିମାନଙ୍କ ସଂପର୍କରେ ଅଧିକରୁ ଅଧିକ ଜାଣିବା ହେଉଛି ଶିଶୁମନୋବିଜ୍ଞାନରେ ପରିଚୟବୋଧ । ଅର୍ଥାତ୍ ଶିଶୁ ସମାଜର ବିଭିନ୍ନ ନୀତିନିୟମ, ପ୍ରଥା ଓ ଚାଲିଚଳନ ଦ୍ୱାରା ପରିଚାଳିତ ହୁଏ । ଏସବୁ କଣ, କାହିଁକି ଓ କିପରି ଇତ୍ୟାଦି ବିଭିନ୍ନ ପ୍ରଶ୍ନ ତା ମନରେ ସ୍ଥାନ ଲାଭ କରେ । ତାର ଏହି ଆଗ୍ରହକୁ କେବଳ ଶିଶୁ-ସାହିତ୍ୟ ହିଁ ପୂରଣ କରିପାରେ । ଶିଶୁର ପରିଚୟବୋଧ ବଢାଇବା ପାଇଁ ଗାଳ୍ପିକ ବିଭିନ୍ନ ବିଷୟରେ ଲେଖନୀ ଚାଳନା କରିଥିବା ଦେଖାଯାଏ । ତାଙ୍କର 'ନାରଦ ବୁଦ୍ଧି ଶିଖିଲେ', 'ସେ ସୁନା କଂକଣ ଫୋପାଡି ଦେଲେ', 'ଜୟମତୀ', 'ମାକସମୁଲର','ଫିରୋଜସାହା' ଏବଂ 'କେଉଁଠାରେ ରକ୍ତ କେଶ' ଆଦି ଗଳ୍ପରୁ ଶିଶୁ ଅନେକ କଥା ଜାଣିପାରି ନିଜର ପରିଚୟବୋଧ ଜ୍ଞାନ ବୃଦ୍ଧିକରେ ।

## ସର୍ବପ୍ରାଣବାଦ :Animisim

ଛୋଟ ଶିଶୁ ସଜୀବ ଓ ନିର୍ଜୀବ ମଧ୍ୟରେ ରହିଥିବା ତଫାତ୍ କଣ ଜାଣେ ନାହିଁ । ତା ଦୃଷ୍ଟିରେ ସମସ୍ତଙ୍କର ଜୀବନ ଅଛି ଓ ସମସ୍ତେ ଚଳପ୍ରଚଳ ହେବା ସହିତ କଥାବାର୍ତ୍ତା ମଧ କରିପାରନ୍ତି । ଶିଶୁର ଏହି ମନସ୍ତତ୍ତ୍ୱକୁ ନେଇ ଗାଳ୍ପିକ ଅନେକ ମନଛୁଆଁ କାହାଣୀ ସୃଷ୍ଟି କରିଛନ୍ତି । ତାଙ୍କର 'ଚତୁର ମାଙ୍କଡ' ଗଳ୍ପରେ ବୁଢା ମାଙ୍କଡଟିଏ ବଗିଚାଟିଏ କରି ତାର ଯତ୍ନନେବା ସଂଗେ ସଂଗେ ସେଠାରେ ମଧ କେତେକ କୁକୁଡା ରଖିଥାଏ । ହସଖୁସିରେ ମାଙ୍କଡର ସମୟ ଅତିବାହିତ ହେଉଥାଏ । ବିଲୁଆଟିଏ କୁକୁଡା ମାନଙ୍କୁ ଦେଖିବା ପରେ ସେମାନଙ୍କୁ ଖାଇବା ପାଇଁ ତା ପାଟିରୁ ଲାଳ ବାହାରିଲା । ବିଲୁଆ ବିଭିନ୍ନ ପ୍ରକାର ପ୍ରଲୋଭନ ଦେଖାଇ ମାଙ୍କଡଟିକୁ ଅନ୍ୟତ୍ର ଡାକିନେବାକୁ ଚେଷ୍ଟାକରି ବିଫଳ ହେଲା । ମାତ୍ର ଚତୁର ମାଙ୍କଡ ବିଲୁଆର କୌଶଳ

ବୁଝିପାରି ତାକୁ ଉଚିତ ଶିକ୍ଷା ଦେବାପାଇଁ ଚିନ୍ତା କରିଛି ।

ଦିନେ ସନ୍ଧ୍ୟାରେ ବିଭିନ୍ନ ପ୍ରକାର ରୋଷେଇରେ ମଗ୍ନ ଥିବା ସମୟରେ ବିଲୁଆ କଣ୍ଟାବୁଦା ଆଢୁଆଳରେ ଲୁଚି ରହିଥିବା ମାଙ୍କଡ ଜାଣିପାରିଛି । ଏହାପରେ ମାଙ୍କଡ ବିଲୁଆକୁ ଘର ଭିତରକୁ ଖାଇବାକୁ ଡାକିଛିଏବଂ ଖାଇବା ପୂର୍ବରୁ ବିଲୁଆକୁ ଆଖିବୁଜି ବସିବା ପାଇଁ ମାଙ୍କଡ ପରାମର୍ଶ ଦେଇଛି । ବିଲୁଆ ମାଙ୍କଡର କୌଶଳ ବୁଝିନପାରି ସୁସ୍ୱାଦୁ ଖାଦ୍ୟ ଖାଇବା ଲୋଭରେ ଆଖିବୁଜି ଆଁ କରି ବସିଛି । ଏହି ସୁଯୋଗରେ ମାଙ୍କଡ ଚୂଲିରୁ ଜଳନ୍ତା ନିଆଁରଡ ଆଣି ବିଲୁଆ ମୂହଁରେ ଗୁଞ୍ଜି ଦେଇଛି । ବିଚରା ବିଲୁଆଟି ପ୍ରାଣ ବିକଳରେ ହୁକେ ହୁକେ ହୋ ଡାକି ସେଠାରୁ ଜୀବନ ବକଳରେ ଧାଇଁ ପଳାଇ ଯାଇଛି । ଏହି ଗଳ୍ପରେ ମାଙ୍କଡ, ଚିଲ ଓ ବିଲୁଆ ଆଦି ପଶୁପକ୍ଷୀଙ୍କର କଥୋପକଥନ ଓ ମନୁଷ୍ୟୋଚିତ କାର୍ଯ୍ୟକଳାପ ଓ କଥାବାର୍ତ୍ତା ଶିଶୁମାନଙ୍କୁ ଆନନ୍ଦ ପ୍ରଦାନ କରେ । ତାଙ୍କର ଅନ୍ୟ କେତେକ ଗଳ୍ପରେ ପଶୁପକ୍ଷୀ ଓ ଗଛଲତା ମାନେ ମଧ ମଣିଷ ମାନଙ୍କ ପରି କଥାବାର୍ତ୍ତା ଓ ଆଚରଣ ପ୍ରଦର୍ଶନ କରିବାର ଜଣାଯାଏ ।

**କଳ୍ପନା :**

ଶିଶୁର ମନ ହେଉଛି କଳ୍ପନାର ଭଣ୍ଡାରଘର । ବାସ୍ତବ ଜଗତରେ ଯାହା ଅସମ୍ଭବ ତାହା ଶିଶୁ କଳ୍ପନାରେ ସମ୍ଭବ ହୋଇଥାଏ । କାରଣ ଶିଶୁକୁ ବାସ୍ତବ ଜଗତରେ ଅନେକ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡିରହିଥାଏ । ତେଣୁ ତାର ଅଶା, ଆକାଂକ୍ଷା, ଇଚ୍ଛା ଓ ଆଗ୍ରହ ଆଦିକୁ ସେ କଳ୍ପନା ମାଧମରେ ସାକାର କରିବାକୁ ସକ୍ଷମ ହୁଏ । କଳ୍ପନାର ପ୍ରଥମ ସ୍ପର୍ଶ ସେ ଶିଶୁ-ସାହିତ୍ୟରୁ ହିଁ ପାଇଥାଏ । ଶିଶୁକଳ୍ପନାର ରୂପରେଖ ଗାଳ୍ପିକଙ୍କ **'ସାବାସଟୁଟୁ' ଗଳ୍ପରେ ପ୍ରତୀୟମାନ ହୋଇଥାଏ ।**

**ହାସ୍ୟରସ :**

ହସିବାକୁ କିଏବା ଭଲ ନପାଏ । କିନ୍ତୁ, ହାସ୍ୟରସର ଝଲକ ସାହିତ୍ୟରେ ସୃଷ୍ଟିକରି ନିଜେ ହସିବା ସହିତ ଅନ୍ୟମାନଙ୍କୁ ହସାଇବା ହେଉଛି ଏକ ସାର୍ଥକ କଳା । ଯାହାକି ସବୁ ସାହିତ୍ୟିକଙ୍କ ପକ୍ଷରେ ସମ୍ଭବ ନୁହେଁ । ଗାଳ୍ପିକ ସିଂହଙ୍କର କେତେକ ଗଳ୍ପ ରେ ନିର୍ମଳ ହାସ୍ୟରସର ଧାରା ପ୍ରବାହିତ ହେଉଥିବା ଲକ୍ଷ୍ୟ କରାଯାଏ । ତାଙ୍କ 'ଓଲାକୁ ଓଲି' ଗଳ୍ପରେ ଲୋକଟିଏ ତାର ସ୍ତ୍ରୀର ଅନୁରୋଧରେ ନିଜ ଘରପାଇଁ ତିନିଗୋଡିଆ ଟିଏ ଆଣିବା ପାଇଁ ବଜାର ଯାଇଛି । ବଜାର ସାରା ଖୋଜି ଖୋଜି ଶେଷରେ ବଢେଇ ଦୋକାନରୁ ତିନିଗୋଡିଆ ଟୁଲ୍‌ଟିଏ କିଣି ତାକୁ ମୁଣ୍ଡେଇ ଘରକୁ ବାହାରିଲା । ବାଟରେ ସେ ଭାବିଲା ମୋର ତ ଦୁଇଟି ଗୋଡ, ମୁଁ ଏତେ ବାଟ ଚାଲୁଛି କିନ୍ତୁ, ଏ ତିନିଗୋଡିଆ ମୋଠାରୁ ଆହୁରି ଶୀଘ୍ର ନିଶ୍ଚୟ ଚାଲିପାରିବ । ମୁଁ କାହିଁକି ତାକୁ ବେକାରଟାରେ ମୁଣ୍ଡେଇ

ନେଉଛି ? ଏହା ଭାବି ଓଲା ଲୋକଟି ସେହିଠାରେ ତିନି ଗୋଡିଆଟିକୁ ଥୋଇଦେଇ ଘରକୁ ଆସିଲା । ଆସିଲାବେଳେ ତିନିଗୋଡିଆକୁ କହିଲା ତୁ ମୋ ପଛରେ ଆସୁଥା, ମୁଁ ଆଗରେ ଯାଉଛି । ତା ପରର ଘଟଣାକୁ ଗାଳ୍ପିକ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ଓଲା ଘରେ ପହଞ୍ଚିଲାକ୍ଷଣି ଓଲି କହିଲା ତୁମେତ ଆସିଲ, ତିନିଗୋଡିଆ କାହିଁ ? ଓଲା ଏ କଥା ଶୁଣି କହିଲା -କଣ ତିନିଗୋଡିଆ ଏଯାଏଁ ଘରକୁ ଆସିନି ? ମୋର ଦୁଇଟା ଗୋଡରେ ଚାଲି ମୁଁ ଘରେ ପହଞ୍ଚିଲି ହେଲେ ତାର ତିନିଟା ଗୋଡ ଥାଉ ଥାଉ ସେ ଗଲା କୁଆଡେ ? ଏକଥା ଶୁଣି କିଏବା ନହସି ରହିପାରିବ ? ଏହି ଗଳ୍ପ ବ୍ୟତୀତ ତାଙ୍କର 'ତିନି ବାହାପିଆ ହେଲେ ଜବଦ' ଓ 'ହୁଣ୍ଡା ମାଧିଆ' ଗଳ୍ପ ଦୁଇଟି ମଧ୍ୟ ହାସ୍ୟରସାତ୍ମକ ।

## ଐନ୍ଦ୍ରଜାଲିକ ବସ୍ତୁ ପ୍ରତି ଆକର୍ଷଣ :

ଯେଉଁଠି କାହାଣୀ ର କଥାବସ୍ତୁ ଆଉ ଆଗକୁ ଯାଇପାରେ ନାହିଁ-ସେଠାରେ ଗାଳ୍ପିକ କେତେ କାଳ୍ପନିକ ଐନ୍ଦ୍ରଜାଲିକ ବସ୍ତୁର ପରିବେଷଣ କରି ଗଳ୍ପର କଥାବସ୍ତୁକୁ ଆଗେଇ ନେବା ସହିତ ଶିଶୁମାନଙ୍କ ମନରେ ବିସ୍ମୟ ସୃଷ୍ଟି କରିଥାନ୍ତି । ଏହି ସବୁ ବସ୍ତୁ ଓ ତାର କାର୍ଯ୍ୟକଳାପ ପ୍ରତି ଶିଶୁ ଅଧିକ ଆକର୍ଷିତ ହୋଇଥାଏ । ଶିଶୁର ଏହି ମନସ୍ତତ୍ତ୍ୱକୁ ଆଖି ଆଗରେ ରଖି ଗାଳ୍ପିକ କେତେକ ଗଳ୍ପ ସୃଷ୍ଟି କରିଥିବା ଜଣାଯାଏ । ତାଙ୍କର 'ଫେରାଇ ଦେଉ ମୋ ମେଜ ଓ ଗଧ' ଗଳ୍ପରେ ଏପରି ଏକ ମେଜର ଅବତାରଣା କରାଯାଇଛି । ଉକ୍ତ ମେଜ ଉପରେ ଗାମିଛା ଟିଏ ଘୋଡାଇ ଦେଇ ତାକୁ ଯାହା ଖାଇବାକୁ ମାଗିଲେ ସେ ତାହା ଦେଇପାରେ । ଏହି ଗଳ୍ପରେ ମଧ୍ୟ ଏପରି ଏକ ଗଧର ବର୍ଣ୍ଣନା କରାଯାଇଛି ଯେ ଯେଉଁ ଗଧର କାନମୋଡି ଦେଲେ ତା ପାଟିରୁ ସୁନାରୁପା ଆଦି ବାହାରେ । ଏଇ ଦୁଇଟି ଐନ୍ଦ୍ରଜାଲିକ ବସ୍ତୁ ପିଲାଟିଏ ନିଜର ସାଧୁତା କର୍ମକୁଶଳତା ଏବଂ ପରୋପକାର ଗୁଣ ଯୋଗୁ ବଢେଇ ଓ ଘୋଡାବାଲା ଠାରୁ ପାଇଥିଲା । ମାତ୍ର ସେ ଘରକୁ ଫେରିବା ବାଟରେ ଗୋଟିଏ ଚଟିଘରର ମାଲିକ ଚତୁରତାର ସହିତ ପିଲାଟି ଠାରୁ ଦୁଇଟିଯାକ ଐନ୍ଦ୍ରଜାଲିକ ବସ୍ତୁକୁ ଠକି ନେଇ ଯାଇଛି । ପିଲାଟି ନିଜର ଭାଗ୍ୟକୁ ଆଦରି ଗୋଟିଏ କାଠୁରିଆ ନିକଟରେ କାମ କରିଛି ଓ କାଠୁରିଆ ପିଲାଟିର କାମରେ ଖୁସି ହୋଇ ତାକୁ ଗୋଟିଏ କୁହୁକ ବାଡି ପ୍ରଦାନ କରିଛି । ବାଡିକୁ ଯେତେବେଳେ ଯାହା କରିବାକୁ କହିବ ସେତେବେଳେ ସେ ତାହା କରିବ । ପିଲାଟି ଖୁସି ହୋଇ ପୁଣି ଆସି ସେଇ ଚଟିଘରେ ଆଶ୍ରୟ ନେଲା । ଚଟିଘରର ମାଲିକ ପୁନର୍ବାର ଲୋଭାଶକ୍ତ ହୋଇ ପିଲାଟି ଶୋଇଥିବା ଭାବି ବାଡିଟିକୁ ନେବା ପୋଇଁ ଆସିଲା । ପିଲାଟି ସଂଗେ ସଂଗେ ଉଠିପଡି କହିଲା -

'ରେ ବାଡି ମୋ କୁହୁକ ବାଡି
ପିଟି ପିଟି ଦେ ସାବାଡ କରି ।'

ଚାହୁଁ ଚାହୁଁ ବାଡି ଲୋକଟା ଉପରେ ଖାଲି ଦୁଲଦାଲ୍ ପାହାର ବସାଇବାରେ ଲାଗିଲା । ଲୋକଟି ଆକୁଳ ହୋଇ କହିଲା, 'ଆଉ ମାରନା, ଆଉ ମାରନା- ମରିଯିବି ମରିଯିବି ।' ମୁଁ ତୁମର କାଠ ମେଢ ଓ ଗଧ ସବୁ ଫେରାଇ ଦେଉଛି । ଏକଥା ଶୁଣିବା ପରେ ପିଲାଟି କହିଲା-

'ରେ ବାଡି ହୋଇ ଯା ଶାନ୍ତ
ଫେରାଇ ଦେଉ ମୋ ମେଢ ଓ ଗଧ
ନଦେଲେ ପିଟି ଭାଙ୍ଗିବା ଦାନ୍ତ । '

ଏହି ଐନ୍ଦ୍ରଜାଲିକ ବାଡିର କରାମତି ନିଶ୍ଚିତ ଭାବରେ ପିଲାମାନଙ୍କୁ ଆନନ୍ଦ ପ୍ରଦାନ କରିଥାଏ । ଏହା ଦ୍ୱାରା ଶିଶୁର କଳ୍ପନା ଶକ୍ତିର ମଧ୍ୟ ବିସ୍ତାର ଘଟେ । ଲେଖକଙ୍କର ଏହି ଶୈଳୀ ଶିଶୁକୁ ଶିଶୁ-ସାହିତ୍ୟ ପ୍ରତି ଅଧିକ ଆକୃଷ୍ଟ କରିଥାଏ ।

<u>ଚରିତ୍ର :</u>

ଗଳ୍ପର ଚରିତ୍ର ଗୁଡିକ ଶିଶୁମାନଙ୍କ ମନରେ ଗଭୀର ରେଖାପାତ କରିଥାଏ । ଗାଳ୍ପିକଙ୍କ ଗଳ୍ପର ଚରିତ୍ର ଗୁଡିକ ମୁଖ୍ୟତଃ ଦୁଇଟି ଗୁଣରାଜିକୁ ନେଇ ଚିତ୍ରିତ ହୋଇଛି । ସତ୍ ଚରିତ୍ର ଗୁଡିକ ନିଜର କାର୍ଯ୍ୟକଳାପ ପାଇଁ ପ୍ରଶଂସା ପାଇବା ସହିତ ସୁଖ ଶାନ୍ତିରେ ଜୀବନ ଯାପନ କରିଛନ୍ତି । କିନ୍ତୁ ଅସତ୍ ଚରିତ୍ର ଗୁଡିକ ସବୁଠାରେ ହତାଦର ପାଇବା ସହିତ ଅଶାନ୍ତି, ଦୁଃଖ ଓ ଯନ୍ତ୍ରଣା ମଧ୍ୟରେ ଜୀବନ ଯାପନ କରିଛନ୍ତି । ହାସ୍ୟରସ ପୂର୍ଣ୍ଣ ଗଳ୍ପ ଗୁଡିକରେ ଚିତ୍ରିତ ଚରିତ୍ରମାନେ ଗଳ୍ପର କଥାବସ୍ତୁ ଅନୁଯାୟୀ ନିଜର ଆଚରଣ ପ୍ରଦର୍ଶନ କରିଛନ୍ତି । ମୋଟାମୋଟି ଭାବେ ଗାଳ୍ପିକ ତାଙ୍କ ଗଳ୍ପ ଗୁଡିକର ଚରିତ୍ର ମାନଙ୍କ ମାଧ୍ୟମ ଦେଇ ଶିଶୁମାନଙ୍କ ମନରେ ଏକ ସ୍ଥାୟୀ ପ୍ରଭାବ ପକାଇବାକୁ ଚେଷ୍ଟା କରିଛନ୍ତି ।

<u>ଭାଷା :</u>

ଭାଷା ହେଉଛି ଗଳ୍ପର ପ୍ରାଣ ସ୍ପନ୍ଦନ । ସରଳ, ସହଜ ଓ ଶବ୍ଦ ଚୟନ ସହିତ କ୍ଷୁଦ୍ର କ୍ଷୁଦ୍ର ବାକ୍ୟ ବ୍ୟବହାର ଏବଂ ତା ସହିତ ଭାଷାର କାବ୍ୟିକତା ହିଁ ଗାଳ୍ପିକ ସିଂହଙ୍କ ଗଳ୍ପର ମୁଖ୍ୟ ଆଭିମୁଖ୍ୟ । ତାଙ୍କର 'ତିନି ବାହାପିଆ ହେଲେ ଜବଦ' ଗଳ୍ପଟିକୁ ଉଦାହରଣ ରୂପେ ଗ୍ରହଣ କରାଯାଇପାରେ -"ଗାଆଁଟିଏ । ନାଁ ତାର ସୁଜନପୁର । ସେଇ ସୁଜନପୁରରେ ତିନୋଟି ଦୁର୍ଜନ ଟୋକା । ପୁଡି ମାରିବାରେ, ବାହାପିଅ ପଣରେ ବଡ ଧାଉଁଲା । ଲୋକେ ସେ ତିନିଜଣଙ୍କୁ ଖଚୁଆ, ମିଛୁଆ ଓ ବାହାପିଆ ବୋଲି ସବୁବେଳେ କହନ୍ତି ।"

ଗଳ୍ପର ନାମକରଣରେ ମଧ୍ୟ ତାଙ୍କର ଏକ ବିଶେଷତ୍ୱ ରହିଛି । ସେଗୁଡିକର କାବ୍ୟଧର୍ମିତା ହେତୁ ସେଗୁଡିକ ଅଧିକ ଶ୍ରୁତିମଧୁର । ଗାଳ୍ପିକଙ୍କର 'ନଣ୍ଡା ମଉସାଙ୍କ ପଣ୍ଡା', 'କାଳିଆ ଷଣ୍ଢ ପାଇଲା ଦଣ୍ଡ', 'ଲଟକଣ ଖାଇଲା ଚଟକଣା' ଏବଂ 'ଟୋକା ବୁଦ୍ଧି ଟୋକେଇରେ' ଆଦି ଗଳ୍ପର ନାମକରଣରୁ ଏକଥାର ସତ୍ୟତା ଉପଲବ୍ଧି କରରିହୁଏ । ଶିଶୁ ଏହି ସବୁ ଗଳ୍ପର ଶୀର୍ଷକ ପଢି ପ୍ରଥମରୁ ହିଁ ସେସବୁ ପ୍ରତି ଆକୃଷ୍ଟ ହୋଇପଡି ସଂପୂର୍ଣ୍ଣ ଗଳ୍ପଟିକୁ ପଢିବା ପାଇଁ ଆଗ୍ରହ ପ୍ରକାଶ କରେ ।

ଗଳ୍ପ ମଧ୍ୟରେ ଗୀତର ପ୍ରୟୋଗ ହୋଇଥିଲେ ଶିଶୁ ସେଥିପ୍ରତି ଅଧିକ ଆଗ୍ରହ ପ୍ରକାଶ କରିଥାଏ । ଗାଳ୍ପିକ ସିଂହ ତାଙ୍କର କେତେକ ଗଳ୍ପରେ ଏହି ଶୈଳୀକୁ ଗ୍ରହଣ କରିଥିବାର ଦେଖାଯାଏ । ତାଙ୍କର 'ମୂଷା ଭାଇର ପାରିଧି' ଗଳ୍ପରେ ପିଲାମାନେ ମୂଷାକୁ ଗୀତ ଗାଇ ବିଭିନ୍ନ କଥା ପଚାରିବା ସହିତ ମୂଷା ମଧ୍ୟ ନିଜର ମନୋଭାବକୁ ଗୀତ ଗାଇ ଉତ୍ତର ପ୍ରଦାନ କରିଛି -

"ମୂଷା ଭାଇରେ ମୂଷା ଭାଇ
ଆମ ଭାଇଙ୍କୁ ଆ ଡୁ ଧାଇଁ ॥"

ମୂଷା ପିଲାଙ୍କ କଥା ଶୁଣି କହିଲା-

"କାହିଁକି ଡାକୁଛ ଏତେ
ପାରିଧିକୁ ପରା ବାହାରିଛି ମୁହିଁ
ବେଳ ଜମା ନାହିଁ ମୋତେ ।"

ଗଳ୍ପରେ ବର୍ଣ୍ଣନାଧର୍ମି ଅପେକ୍ଷା କଥନ ଧର୍ମି ପ୍ରତି ଶିଶୁ ଅଧିକ ଆକୃଷ୍ଟ ହୋଇଥାଏ । ନନ୍ଦକିଶୋର ସିଂହଙ୍କ ଅଧିକାଂଶ ଗଳ୍ପର ଚରିତ୍ର ମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ହୋଇ ଗଳ୍ପର ବିଷୟ ବସ୍ତୁକୁ ଆଗେଇ ନେଇଥିବା ଦେଖାଯାଏ । ଘଟଣା ଏବଂ ଚରିତ୍ର ମାନଙ୍କର ବିଶେଷତ୍ୱ ପ୍ରତିପାଦନ କରିବା ପାଇଁ ଗାଳ୍ପିକ ତାଙ୍କର କେତେକ ଗଳ୍ପରେ ଲୋକୋକ୍ତି ଓ ଭଗବତ୍ ବାଣୀର ପ୍ରୟୋଗ କରିଥିବା ଜଣାଯାଏ । ଯଥା-

୧ ॥ ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ ।
(ଟୋକେଇରେ ଚିକିପିଲା)

୨ ॥ ବୁଦ୍ଧି ବିଚାରି କାମ କଲେ , ପ୍ରମାଦ ନପଡଇ ଭଲେ ।
(ଚତୁର ମାଙ୍କଡ)

୩ ॥ ଯାହାକୁ ଯାହା କରିଛି ଦଇବ, ସେ କି ତହିଁରୁ ଅନ୍ୟଥା ହୋଇବ ।
(ଟୋକା ବୁଦ୍ଧି ଟୋକେଇରେ)

୪ ।।   ସୂତା ମାଢ଼ିଲେ ସରୁ, କଥା ମାଢ଼ିଲେ ମୋଟା ।

(ମାମଲା ତୁଟିଲା)

ଏହା ବ୍ୟତୀତ ଗାଳ୍ପିକଙ୍କର ଅଧିକାଂଶ ଗଳ୍ପରେ ନୀତିଶିକ୍ଷା ପ୍ରଦାନ କରାଯାଇଥିବା ଦେଖାଯାଏ । ଯାହାଦ୍ୱାରା ଶିଶୁ ନିଜର ଚରିତ୍ର ଗଠନ କରିବା ପାଇଁ ଉପଯୁକ୍ତ ପ୍ରେରଣା ପାଇବାରେ ।

୧)   ଉପକାରୀ ଜୀବକୁ ବୁଢ଼ା ହେଲେବି ଅନାଦର କରିବା ଠିକ୍ ନୁହେଁ

(ନଣ୍ଡା ମଉସାଙ୍କ ପଣ୍ଡା)

୨)   ଭଲ ମଣିଷଙ୍କ ସଂପର୍କରେ ଆସିଲେ ମନ୍ଦ ପ୍ରକୃତିର ଲୋକବି ଭଲ ହୋଇଥାଏ ।

(ବାବା ଶୀତଳ ଦାସ)

୩)   ଯେ କୌଣସି କାମ କରିବା ପୂର୍ବରୁ ଭୁଲ ଠିକ୍ ବରାବର ଭାବିଚିନ୍ତି କର ।

(ଚିଲ, ବେଙ୍ଗ ମୂଷା)

ଗାଳ୍ପିକଙ୍କର କେତେକ ଗଳ୍ପରେ ମୌଖିକ ଶିଶୁ ଗଳ୍ପର ପ୍ରଭାବ ପଡ଼ିଥିବା ମଧ୍ୟ ଦେଖାଯାଏ । ଉଦାହରଣ ଭାବେ "ସିଙ୍ଗି ମାଛ ହେଲା ପୁରୁଷ ସିଙ୍ଗ"ଗଳ୍ପରୁ ଗ୍ରହଣ କରାଯାଇପାରେ - ଉକ୍ତ ଗଳ୍ପର ବିଷୟ ବସ୍ତୁ ଭାଷା ଓ ଭାବ ଆଦି ମୌଖିକ ଗଳ୍ପ ପରି ପ୍ରତୀୟମାନ ହୁଏ । ଉଦାହରଣ ଭାବେ ଗଳ୍ପର କେତେକ ଅଂଶକୁ ଗ୍ରହଣ କରାଯାଇପାରେ-" ଦିନେ କଣ ହୋଇଛି ନା ସିଙ୍ଗି ନିଜ ଖୋଳପାକୁ ତୁଠରେ ରଖି ନଈକୁ ଗାଧୋଇ ଯାଇଛି । କେଡେ ସୁନ୍ଦର ଯୁବକ ଟିଏ । ଦେଖିଲେ ଆଖି ଝଲସି ଯିବ । କେଉଟ ଝିଅ ତ ଛପି ରହିଥିଲା, ସେ ଖୋଳପାଟିକୁ ନେଇ ନିଆଁରେ ପକାଇଦେଲା । ଏଥର ସିଙ୍ଗି ଆଉ ଯାଏ କୁଆଡେ ? ସୁସ୍ଥ, ସବଳ ଓ ସୁନ୍ଦର ଯୁବକଟିଏ ହୋଇ ମହା ଆନନ୍ଦରେ ନିଜ ଘରଣୀ ସହ କାଳ କାଟିଲା । ମୁଁ ଗଲି ଯେ, ମୋତେ ପାନ ଖଣ୍ଡ ବି ଦେଲେ ନାହିଁ । "

ଶବ୍ଦ ସଂଯୋଜନାରେ ମଧ୍ୟ ଗାଳ୍ପିକଙ୍କର ବିଶେଷତ୍ୱ ପରିଲକ୍ଷିତ ହୋଇଥାଏ । ତାଙ୍କ ଗଳ୍ପରେ କଥିତ ଓ ଆଞ୍ଚଳିକ ଶବ୍ଦର ବହୁଳ ବ୍ୟବହାର ଦେଖାଯାଏ । ମଝାମଝି (ମଝିରେ), ଗାଆଁ ପଞ୍ଚୁଆତି(ଗ୍ରାମ ପଞ୍ଚାୟତ), ଇୟେ,ଉଛୁଣି, ହେଇଟି, ଯଉଟା ଆଦି କେତୋଟି ଆଞ୍ଚଳିକ ଶବ୍ଦକୁ ଉଦାହରଣ ଭାବେ ଗ୍ରହଣ କରାଯାଇପାରେ । ତେବେ, ମୋଟାମୋଟି ଗାଳ୍ପିକଙ୍କର ଭାଷା ସହଜ ସରଳ ଏବଂ କାବ୍ୟ ଧର୍ମୀ ।

**ପ୍ରାନ୍ତ କଥନ :**

ଉପଯୁକ୍ତ ଆଲୋଚନାରୁ ନନ୍ଦକିଶୋର ସିଂହଙ୍କ ମୌଳିକ ରଚନାର ସ୍ୱାତନ୍ତ୍ର୍ୟତା ପରିଲକ୍ଷିତ ହୋଇଥାଏ । ତାଙ୍କର ପ୍ରତ୍ୟେକଟି ରଚନା ପୂର୍ବ ରଚନା ଠାରୁ ସ୍ୱାତନ୍ତ୍ର୍ୟ ଓ ପ୍ରଭାବଶାଳୀ । ଶିଶୁ ମନୋବିଜ୍ଞାନ ସମର୍ଥିତ ଉପାଦାନକୁ ନେଇ ତାଙ୍କର ଗଳ୍ପ

ଗୁଡିକ ରଚିତ ହୋଇଥିବାରୁ , ଶିଶୁର ଭବିଷ୍ୟତ ଗଠନ ପାଇଁ ସେଥିରୁ ଅନେକ ପ୍ରେରଣା ମିଳିଥାଏ । ମୌଖିକ ଗଳ୍ପ ପରଂପରାର କଥକ ବା କଥାସାଗର ପରି ଗାଳ୍ପିକଙ୍କର ଗଳ୍ପ ଗୁଡିକର କଥନ ଧର୍ମିତା ଶିଶୁମାନଙ୍କୁ ତାଙ୍କ ଗଳ୍ପ ପାଠ ପାଇଁ ଆକର୍ଷିତ କରିଥାଏ । ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନି ଚାଳନା କରୁଥିଲେ ହେଁ, ଗାଳ୍ପିକ ତାଙ୍କର ଶିଶୁ ଗଳ୍ପରେ ଯେପରି ସାର୍ଥକତା ଲାଭ କରିଛନ୍ତି, ତାହା ଅନ୍ୟ ବିଭାଗରେ ଲାଭ କରିପାରିନାହାନ୍ତି । ଏଣୁ, ଏହି ଶିଶୁ ଗଳ୍ପ ସମୂହ ତାଙ୍କୁ ନିଶ୍ଚୟ ଦିନେ ଉପଯୁକ୍ତ ସମ୍ମାନର ଅଧିକାରୀ କରାଇପାରିବ-ଏଥିରେ ସନ୍ଦେହର ଅବକାଶ ନାହିଁ ।

## ଓଡିଶା ସାହିତ୍ୟ ଏକାଡେମୀ ପୁରସ୍କାର ପ୍ରାପ୍ତି ସମୟରେ......

ଯାଜପୁର ଜିଲ୍ଲାର କୋରେଇ ଠାରେ୧୯୪୨ ମସିହା ମଇ ୧୫ ତାରିଖରେ ଜନ୍ମ । ବିଦ୍ୟାଳୟରେ ଅଧ୍ୟୟନ କାଳରୁ ଲେଖାଲେଖି ପ୍ରତି ଗଭୀର ଅନୁରାଗ । ଓଡିଆ ସାହିତ୍ୟର ବିଭିନ୍ନ ବିଭାଗ ଯଥା- ଗଳ୍ପ, କବିତା,ନାଟକ-ଏକାଂକିକା, ଗୀତିକବିତା, ପ୍ରବନ୍ଧ ତଥା ରମ୍ୟ ରଚନା ଇତ୍ୟାଦିରେ ଲେଖନୀ ଚାଳନା କରି ଜଣେ ସାର୍ଥକ ସାରସ୍ୱତ ସାଧକ ଭାବରେ ସିଦ୍ଧି ଲାଭ କରିଛନ୍ତି । ଶିକ୍ଷକତାକୁ ବୃତ୍ତି ଭାବରେ ଗ୍ରହଣ କରି ଶିକ୍ଷା ବିଭାଗରେ ବିଭିନ୍ନ ପଦପଦବୀରେ କାର୍ଯ୍ୟକରି ସେ ୨୦୦୦ ମସିହାରେ ସରକାରୀ ବୃତ୍ତିରୁ ଅବସର ଗ୍ରହଣ କରିଛନ୍ତି । ସଂପ୍ରତି ପଲ୍ଲୀ ଜୀବନ ଧର୍ମୀ ସାହିତ୍ୟ ପତ୍ରିକା "ବୋଲେ ହୁଁଟି" ର ସଂପାଦନା କାର୍ଯ୍ୟ ତଥା ସାରସ୍ୱତ ସାଧନାରେ ସେ ମଗ୍ନ ରହିଛନ୍ତି ।..

## ଗୀତିକବି ଙ୍କ ମତାମତ

ଭାରତବର୍ଷରୁ ସାହିତ୍ୟ ବିଭାଗରେ ପ୍ରଥମେ ନୋବେଲ ପୁରସ୍କାର କବିଗୁରୁ ରବୀନ୍ଦ୍ରନାଥ ଠାକୁରଙ୍କୁ ତାଙ୍କର ଅନବଦ୍ୟ କମିତା ଗ୍ରନ୍ଥ_ଗୀତାଞ୍ଜଳୀଦ ପାଇଁ ମିଳିଥିବା ବେଳେ ଓଡିଶା ସାହିତ୍ୟ ଏକାଡେମୀ ବିଳମ୍ବରେ ହେଲେବି ୨୦୦୧ ମସିହା ଠାରୁ ଗୀତି କବିତା ପାଇଁ ପୁରସ୍କାର ପ୍ରଦାନ କରିଥିବାରୁ ଜଣେ ଗୀତିକବି ଭାବେ ଏକାଡେମୀ

କର୍ତ୍ତୃପକ୍ଷଙ୍କୁ ମୁଁ କୃତଜ୍ଞତା ଜ୍ଞାପନ କରୁଅଛି । ଏହାଛଡା ପ୍ରଥମ ଭାବେ ଏହି ଗୀତିକବିତା ପାଇଁ ଏକାଡେମୀ ପୁରସ୍କାର ମୋତେ ମିଳିଥିବାରୁ ମୁଁ ନିଜକୁ ଭାଗ୍ୟବାନ ମନେ କରୁଛି ।

ପୁନଶ୍ଚ ଇତିମଧ୍ୟରେ ଓଡିଶା ସାହିତ୍ୟ ଏକାଡେମୀ ତାର ମୁଖପତ୍ର କୋଣାର୍କ ର ୧୩୭ତମ ସଂଖ୍ୟାଟିକୁ ଗୀତିକବିତା ବିଶେଷାଙ୍କ ରୂପେ ପ୍ରକାଶ କରି ଗୀତିକବିତା ବିକାଶଧାରାରେ ଏକ ନୂତନ ଅଧ୍ୟାୟ ଯୋଗ କରିଥିବାରୁ ମୁଁ ଏକାଡେମୀକୁ ସାଧୁବାଦ ଜ୍ଞାପନ କରୁଛି ।

ଏହି ଅବସରରେ ଏକାଡେମୀ ପୁରସ୍କାର ନିମନ୍ତେ ବିଚାରକ ମଣ୍ଡଳୀ, ଆକାଶବାଣୀ ଓଡିଆ ଗୀତିକବି ସମାଜଙ୍କୁ ସ୍ମରଣ କରୁଛି ।

## ଉଲ୍ଲେଖନୀୟ ରଚନାବଳୀ :

ଗୀତିକବିତା :- ଗୀତିଗୁଚ୍ଛ, ଗୀତି ଓ ଗଜଲ, ନନ୍ଦକିଶୋର ଗୀତିବିଚିତ୍ରା, କବିତା-ପ୍ରୀତି-ପ୍ରିୟା-ପୃଥିବୀ,

ନାଟକ- ମାନସୀ ଗବେଷଣାଗାର, ଲୁହଲହୁ , ସବୁମଣିଷ ସମାନ, ଗରୁଦକ୍ଷିଣା,

ଅନୁବାଦ-ସୁଇସ୍ ରବିନ୍‌ସନ୍ , ଅରଣ୍ୟର ଆହ୍ୱାନ, ଉଇଲର୍ କାହାଣୀ,

ଶିଶୁ ସାହିତ୍ୟ- ରଂଗ ବେରଂଗ , ସାବାସ ଟୁଟୁ, ମଜା କାହାଣୀ, ମୋ ଗାଆଁ ହାଟ, ପୁରାଣ କଥା, କଥାଟିଏ କହୁଁ, ଶ୍ରବଣ କୁମାର, ରାମକୃଷ୍ଣ ଉପଦେଶାବଳୀ, ଏକ ଦୁଇ ତିନି ।

ଓଡିଶା ସାହିତ୍ୟ ଏକାଡେମୀ ୨୦୦୧ ଗୀତିକବିତା ପୁରସ୍କାର ଦେବା ଅବସରରେ .....

ପ୍ରସ୍ତୁତି- ଓଡିଶା ସାହିତ୍ୟ ଏକାଡେମୀ

# ଦୈନିକ କାଳାନ୍ତର ର ୮ମ ସମାବର୍ତ୍ତନ ଅବସରରେ
# ସମ୍ମାନନୀୟ ସମ୍ବର୍ଦ୍ଧିତ ପ୍ରତିଭା : ଏକ ଝଲକ

ସାରସ୍ୱତ ସାଧକ ତଥା ଶିଶୁ ଲେଖକ ନନ୍ଦକିଶୋର ସିଂହଙ୍କର ଜନ୍ମ ୧୫ ମେ ୧୯୪୨ ମସିହା ଯାଜପୁର ଜିଲ୍ଲାର କୋରେଇ ଗ୍ରାମରେ । ଶିକ୍ଷାଗତ ଯୋଗ୍ୟତା ବିଏ.ବି.ଇଡି., ଡି.ପି.ଇନ. ଲାଙ୍ଗୁଏଜ(ଅସମୀୟା) ଗତ ୨୦୦୦ ମସିହାରୁ ଚାକିରୀ କ୍ଷେତ୍ରରୁ ଅବସର ଗ୍ରହଣ କରିବା ପରେ ସଂପ୍ରତି ସାରସ୍ୱତ ସାଧନାରେ ବ୍ରତୀ ।

୧୯୬୨ ମସିହାରୁ କଟକ ଆକାଶବାଣୀ, ଦୂରଦର୍ଶନ, ମଞ୍ଚ, ଚଳଚିତ୍ର ସହ ଜଣେ ଗୀତିକାର, ନାଟ୍ୟକାର ଭାବେ ସମ୍ବାଦ ପତ୍ର ମାନଙ୍କରେ ତାଙ୍କର ଅନେକ ସୃଜନଶୀଳ ଲେଖା ପ୍ରକାଶିତ । ଶ୍ରୀଯୁକ୍ତ ସିଂହ ଶିଶୁ ସାହିତ୍ୟ ଓ ଗୀତି କବିତା ରଚନା କରିବାରେ ଅଧିକ ଉତ୍ସାହ ରଖିଛନ୍ତି ।

ସେ ଓଡିଶାର ସର୍ବ ପ୍ରାଚୀନ ସାରସ୍ୱତ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜ , ନିଖିଳ ଉତ୍କଳ ଗୀତିକବି ସମାଜ, ନିଖିଳ ଉତ୍କଳ ଶିକ୍ଷା ପରିଷଦ, ଶିଶୁ ଲେଖକ ସମ୍ମେଳନ ଆଦି ଅନେକ ଅନୁଷ୍ଠାନର ଆଜୀବନ ସଦସ୍ୟ ଅଛନ୍ତି । ଏତଦ୍‌ଭିନ୍ନ ଆମେରିକା ABI ସଂସ୍ଥାର ଏଡିଟୋରିଆଲ ବୋର୍ଡର ସଭ୍ୟଭାବେ ମନୋନୀତ ହୋଇଛନ୍ତି ।

ଶ୍ରୀଯୁକ୍ତ ନନ୍ଦଙ୍କ ପ୍ରକାଶିତ ରଚନାବଳୀ ମଧ୍ୟରେ ରଙ୍ଗ ବେରଙ୍ଗ, ମଜାକାହାଣୀ, ଶିଆଳ ଝିଅର ବାହାଘର, ଚୁଟୁର ରାଇଜ ଫେରି, ଏକ-ଦୁଇ-ତିନି ଆଦି ୧୫ ଖଣ୍ଡରୁ ଉର୍ଦ୍ଧ୍ୱ ଶିଶୁ ସାହିତ୍ୟ ସମେତ ଗୀତିକବିତା ନାଟକ ଏକାଙ୍କିକା, ଅନୁବାଦ ସାହିତ୍ୟ ସଂପର୍କୀତ ପଚାଶରୁ ଉର୍ଦ୍ଧ୍ୱ ପୁସ୍ତକର ରଚୟିତା । ତାଙ୍କର ଏତାଦୃଶ ସାରସ୍ୱତ କୃତି ପାଇଁ ପ୍ରଜାତନ୍ତ୍ର ବିଷୁବ ମିଳନଠାରୁ ଆରମ୍ଭ କରି କୋରେଇ ମଣ୍ଡଳ ସାହିତ୍ୟ ସଂସଦ ପର୍ଯ୍ୟନ୍ତ ପ୍ରାୟ ତିରିଶରୁ ଉର୍ଦ୍ଧ୍ୱ ଅନୁଷ୍ଠାନ ଦ୍ୱାରା ଶିଶୁ ସାହିତ୍ୟ ଗୀତିକବିତା ତଥା ନାଟକ ପାଇଁ ପୁରସ୍କୃତ ତଥା ସମ୍ମାନିତ ।

ଚଳିତବର୍ଷ 'କାଳାନ୍ତର' ସମ୍ବାଦପତ୍ରର ସ୍ୱନକ୍ଷତ୍ର ଦିବସ ଅବସରରେ ଶ୍ରୀଯୁକ୍ତ ନନ୍ଦଙ୍କୁ 'କାନ୍ତକବି ଲକ୍ଷ୍ମୀକାନ୍ତ' ସମ୍ମାନରେ ସମ୍ମାନିତ କରାଯାଇ ତାଙ୍କ ପ୍ରତିଭାର ପ୍ରତିଟି ଦିଗକୁ ସ୍ମରଣ କରାଯାଇଛି ।

**କାଳାନ୍ତର-୨୬-୭-୨୦୦୪**

# ନନ୍ଦକିଶୋର ସିଂହଙ୍କ ଶିଶୁ ସାହିତ୍ୟ ରେ ଶିଶୁ ମନସ୍ତତ୍ତ୍ୱ

ଡକ୍ଟର ବସନ୍ତ କିଶୋର ସାହୁ

ଶିଶୁ ହସିଲେ ଦୁନିଆ ହସେ । ଶିଶୁକୁ ହସାଇବା ପାଇଁ ଯେତେ ମାଧ୍ୟମ ରହିଛି ତନ୍ମଧ୍ୟରେ ଶିଶୁ ସାହିତ୍ୟ ର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ମନେହୁଏ । ଶିଶୁକୁ ସୁମଣିଷ ବା ଭବିଷ୍ୟତର କର୍ଣ୍ଣଧାର ଭାବରେ ଗଢିବା ପାଇଁ ଶିଶୁ ସାହିତ୍ୟ ର ଭୂମିକା ନିଶ୍ଚିତ ଭାବେ ଅନସ୍ୱୀକାର୍ଯ୍ୟ । ସାମ୍ପ୍ରତିକ କାଳରେ ଶିଶୁ ମନସ୍ତତ୍ତ୍ୱକୁ ଅଧାରକରି ଶିଶୁକୁ ଉପଯୁକ୍ତ ଦିଗ୍‌ଦର୍ଶନ ପ୍ରଦାନ ପାଇଁ ଯେଉଁ କେତେଜଣ ଶିଶୁ-ସାହିତ୍ୟିକ ନିରଳସ ସାଧନା ଅବ୍ୟାହତ ରଖିଛନ୍ତି ସେମାନଙ୍କ ମଧ୍ୟରେ ନନ୍ଦକିଶୋର ସିଂହ ଏକ ସ୍ମରଣୀୟ ନାମ ।

ଶ୍ରୀଯୁକ୍ତ ସିଂହ ଜଣେ ପ୍ରତିଷ୍ଠିତ ଓ ସ୍ୱନାମଧନ୍ୟ ଗୀତିକାର ତଥା ନାଟ୍ୟକାର ହେଲେହେଁ ଶିଶୁ ସାହିତ୍ୟ କ୍ଷେତ୍ରରେ ଅଧିକ ସଫଳତା ଲାଭ କରି ପ୍ରତିଷ୍ଠା ଅର୍ଜନ କରିଛନ୍ତି । ଜଣେ ଆଦର୍ଶ ଶିକ୍ଷକ ଭାବେ ସେ ବହୁବର୍ଷ ଧରି ଶିଶୁ ମାନଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଛନ୍ତି । ପିଲାମାନଙ୍କର ଆଚାର-ବ୍ୟବହାର, ଧାରଣା ଓ ଭଲମନ୍ଦ ସହିତ ପରିଚିତ ହୋଇଛନ୍ତି । ଶିକ୍ଷକତା କାଳରେ ଶିଶୁ ମାନଙ୍କୁ ଶିକ୍ଷା କ୍ଷେତ୍ରରେ ସଫଳତା ପାଇଁ ଯେଉଁ ଯେଉଁ ପ୍ରକାର ଶିକ୍ଷା ଓ ଦିଗ୍‌ଦର୍ଶନ ପ୍ରଦାନ କରୁଥିଲେ ସେମାନଙ୍କ ମନୋରଂଜନ ତଥା ମାନସିକ ବିକାଶ ପାଇଁ ସେହିପରି ସଫଳ ଶିଶୁ ସାହିତ୍ୟ ସୃଷ୍ଟି କରି ଶିଶୁ ପ୍ରିୟତା ଲାଭ କରିଛନ୍ତି । ସଂପ୍ରତି ଶ୍ରୀଯୁକ୍ତ ସିଂହ ସରକାରୀ ଚାକିରୀରୁ ଅବସର ନେବା ପରେ ନିଜକୁ ସାହିତ୍ୟ ସେବାରେ ଅଧିକ ସକ୍ରିୟ କରାଇପାରିଛନ୍ତି । ସଂପ୍ରତି ତାଙ୍କ ସଂପାଦନାରେ 'ବୋଲେ ହୁଁଟି' ନାମକ ଏକ ସାହିତ୍ୟ ପତ୍ରିକା ପ୍ରକାଶ ପାଇଁ ପାଠକୀୟ ପ୍ରଶଂସା ଲାଭ କରିଛନ୍ତି । ଏହି ପତ୍ରିକାରେ ପଲ୍ଲୀ ସାହିତ୍ୟ, ଶିଶୁ ସାହିତ୍ୟ ସମେତ ଓଡିଆ ସଂସ୍କୃତି ଉପରେ ଗୁରୁତ୍ୱ ପ୍ରଦାନ କରାଯାଉଛି । ଜଣେ ସୁସଂଗଠକ ଭାବରେ ମଧ୍ୟ ସୁଖ୍ୟାତି ରହିଛି । ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଥିଲେ, ଏହି ଆଲୋଚନା କେବଳ ତାଙ୍କର ଶିଶୁ ସାହିତ୍ୟ କୃତିତ୍ୱକୁ ନେଇ ଆଲୋଚନା କରାଯାଇଛି । ତାଙ୍କର ପ୍ରାୟ ୧୭ ଖଣ୍ଡ ଶିଶୁ ଗଳ୍ପ ଓ କବିତା ପୁସ୍ତକ ପ୍ରକାଶ ପାଇଛି । ତନ୍ମଧ୍ୟରେ ପିଲାଙ୍କ କଥାସରିତସାଗର, ସାବାସ ଟୁଟୁ , ମଜା କାହାଣୀ, ଶିଆଳି ଝିଅର ବାହାଘର, କଥାଟିଏ କହୁଁ ଟୁଟୁର ରାଇଜ ଫେରି, ଶ୍ରୀରାମକୃଷ୍ଣଙ୍କ ଉପଦେଶ, ଯେତେ ଦିଅଁ ସେତେ ପୂଜା, ସକଳ ଘଟେ ନାରାୟଣ, ରଙ୍ଗ ବେରଙ୍ଗ ଏକ ବୁଢ଼ା ଦିନି ପ୍ରଧାନ । ପ୍ରକାଶିତ ଶିଶୁ ପୁସ୍ତକ ବ୍ୟତିତ ତାଙ୍କର ଶତାଧିକ ଶିଶୁ ଗଳ୍ପ କବିତା ଆଦି ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଛି । ଏକାଧିକ ଶିଶୁ ନାଟକ ରୂପକ, ଗଳ୍ପ ଓ କବିତା ଆକାଶବାଣୀ

ଦ୍ୱାରା ପ୍ରସାରିତ ହୋଇଛି । ସେହି ସମସ୍ତ ଶିଶୁ ରଚନାରେ କିପରି ଭାବରେ ଶିଶୁ-ସାହିତ୍ୟକ ଉପାଦାନ ରକ୍ଷିତ ହୋଇଛି, ତାହା ନିମ୍ନରେ ଆଲୋଚନା କରାଗଲା ।

ଶିଶୁ ସାହିତ୍ୟ ଜୀବନର ଚିତ୍ରଲିପି । ଶିଶୁର ସମସ୍ତ କାର୍ଯ୍ୟକଳାପ ଓ ଭାବାବେଗ ଶିଶୁ ସାହିତ୍ୟ ରେ ପ୍ରକାଶ ପାଏ । ଶିଶୁ ସାହିତ୍ୟ ପାଠକରି ଶିଶୁ ସେଥିରେ ନିରୋଳା ଆନନ୍ଦ ଲାଭ କରେ । ତେଣୁ ଶିଶୁ ସାହିତ୍ୟ ହେଉଛି ଶିଶୁମାନଙ୍କର ଓ ଶିଶୁ ମାନଙ୍କ ପାଇଁ ସାହିତ୍ୟ । ଏହାର ସ୍ରଷ୍ଟା ବୟସ୍କ କିନ୍ତୁ ପାଠକ ଶିଶୁ । ଏହା ଶିଶୁର ମନୋରଂଜନ କରିବା ସହିତ ତାକୁ ଉପଯୁକ୍ତ ଉପଯୁକ୍ତ ମାର୍ଗ ପ୍ରଦର୍ଶନ କରି ସୁନାଗରିକ କରି ଗଢିତୋଳିବାରେ ସାହାଯ୍ୟ କରେ । ଶିଶୁ ମନସ୍ତାତ୍ତ୍ୱିକ ଉପାଦାନକୁ ନେଇ ସୃଷ୍ଟି ହୋଇଥିବା ଶିଶୁ ସାହିତ୍ୟ ଅଧିକ ପ୍ରଭାବଶାଳୀ ଓ ଶିଶୁ ମନୋରଂଜକ ହୋଇଥାଏ । ଏକ୍ଷେତ୍ରରେ ଶ୍ରୀଯୁକ୍ତ ନନ୍ଦକିଶୋର ସିଂହ ଅଧିକ ସଫଳତା ଲାଭ କରିଥିବା ଦେଖାଯାଏ । ସେସବୁ ନିମ୍ନରେ ଦର୍ଶାଇ ଦିଆଯାଇଛି ।

## ଶିଶୁ ସାହିତ୍ୟ ଓ ଶିଶୁ ମନୋବିଜ୍ଞାନ :

ବୌଦ୍ଧିକ ସାହିତ୍ୟ ସମାଜର ଦର୍ପଣ ପରି ଶିଶୁ ସାହିତ୍ୟ କୁ ଶିଶୁ ସମାଜର ଦର୍ପଣ ଭାବେ ଗ୍ରହଣ କରାଯାଇଛି । ଶିଶୁ ସାହିତ୍ୟ ର ସଂପର୍କ ଶିଶୁର ମନ ସହିତ ଅଧିକ । ଶିଶୁର ମନ ବୟସ୍କ ବ୍ୟକ୍ତିର ମନଠାରୁ ଅଲଗା ଓ ସ୍ୱତନ୍ତ୍ର । ଶିଶୁ ଆକାର ପ୍ରକାରରେ ବୟସ୍କ ବ୍ୟକ୍ତିର କ୍ଷୁଦ୍ର ରୂପ ହେଲେହେଁ, ତାର ମନ ସହିତ ବୟସ୍କ ବ୍ୟକ୍ତିର ମନ କୌଣସି ସାମଞ୍ଜସ୍ୟ ନଥାଏ । ଶିଶୁର ନିଜସ୍ୱ ଚିନ୍ତା, ବିଚାର ଓ ଭାବାବେଗ ରହିଛି । ନିଜ ଚିନ୍ତା ଓ ରୁଚି ଅନୁଯାୟୀ ସେ କାର୍ଯ୍ୟ ସଂପାଦନ କରେ । ସେଥିରେ ବାଧାସୃଷ୍ଟି ହେଲେ ସେ ବିଭିନ୍ନ ଉପାୟରେ ପ୍ରତିକ୍ରିୟା ପ୍ରକାଶ କରିଥାଏ । ତାର ଏହି ପ୍ରତିକ୍ରିୟା ଦେଖି ପିଲାଟି ଦୁଷ୍ଟ ଓ ଅବାଧ ବୋଲି ଆମେ କହିଥାଉ । ଏହି ମତ ପ୍ରଦାନ କଲାବେଳେ ଆମେ ଶିଶୁର ଆଗ୍ରହ ଓ ମତାମତ କଥା ବିଚାର କରିନଥାଉ । ଆମେ ଭାବୁ ପିଲାଙ୍କୁ ଯାହା ଯେପରି କହିବୁ, ତାହା ସେମାନେ କରିବାକୁ ବାଧ୍ୟ ହେବେ । ସ୍ଥଳ ବିଶେଷରେ ପିଲାମାନେ ଆମ କହିବା ଅନୁଯାୟୀ କାର୍ଯ୍ୟକରୁଥିଲେ ହେଁ, ସେଥିପ୍ରତି ସେମାନଙ୍କର ଆଗ୍ରହ ନଥାଏ ।

ନିଜର ମାନସିକ ଶାନ୍ତି ପାଇବା ପାଇଁ ଶିଶୁ ସର୍ବଦା ଏକ ମାଧ୍ୟମ ଖୋଜୁଥାଏ । ତାର କାର୍ଯ୍ୟକଳାପରେ କୌଣସି ବାଧା ସୃଷ୍ଟି ନହେବାକୁ ସେ ଚାହେଁ । ତାର ଏହି ଆଶା କେବଳ ମାନସିକ ସ୍ତରରେ ପୂରଣ ହୁଏ । ବାସ୍ତବ ଜୀବନରେ ସେ ଅନେକ ବାଧାର ସମ୍ମୁଖୀନ ହୁଏ । ଶିଶୁର ସମସ୍ତ କ୍ରିୟା ପ୍ରତିକ୍ରିୟା ଯାହା ମନ ଦ୍ୱାରା ନିୟନ୍ତ୍ରିତ ତାହାହିଁ

ହେଉଛି ଯଥାର୍ଥ ଶିଶୁ ମନୋବିଜ୍ଞାନ । ଶିଶୁ ମନୋବିଜ୍ଞାନ ସହିତ ଶିଶୁ ସାହିତ୍ୟ ର ଘନିଷ୍ଠ ସଂପର୍କ ରହିଛି । କାରଣ ବାସ୍ତବ ଜୀବନରେ ବିଫଳ ଶିଶୁ ମନ ଖୁସି ପାଇଁ ନିଜକୁ ଶିଶୁ ସାହିତ୍ୟ ମଧ୍ୟରେ ହଜାଇ ଦେଇ ସେଥିରୁ ନିରୋଳା ଆନନ୍ଦ ଲାଭ କରେ । ଶିଶୁ ସାହିତ୍ୟ ରେ ଚରିତ୍ର ମାନଙ୍କର ଅସମ୍ଭବ କାର୍ଯ୍ୟ ସମ୍ଭବ ହେବା ପଢି ସେଥିରୁ ସେ ନିର୍ମଳ ଆନନ୍ଦ ଓ ପ୍ରେରଣା ଲାଭ କରେ । ଏହା ହେଉଛି ଶିଶୁ ମନୋବିଜ୍ଞାନର ସଫଳ ପ୍ରତିଶ୍ରୁତି । ଏହା ଦ୍ୱାରା ତାର କଳ୍ପନା ଶକ୍ତିର ମଧ୍ୟ ବିସ୍ତାର ଘଟେ । ଶିଶୁ ମନୋବିଜ୍ଞାନ ସମର୍ଥିତ ଉପାଦାନ କୁ ନେଇ ରଚିତ ଶିଶୁ ସାହିତ୍ୟ ଶିଶୁକୁ ଅଧିକ ଆକୃଷ୍ଟ କରେ । ଏଣୁ ନନ୍ଦକିଶୋର ସିଂହଙ୍କ ଶିଶୁ ସାହିତ୍ୟରେ ଶିଶୁ ମନୋବିଜ୍ଞାନ ସମର୍ଥିତ ଉପାଦାନ କିପରି ପ୍ରକାଶ ପାଇଛି, ତାହା ନିମ୍ନରେ ଆଲୋଚନା କରାଗଲା ।

ଧାରଣା :

ପରିବାର ଓ ପରିପାର୍ଶ୍ୱ ଉପରେ ନିର୍ଭର କରି ଶିଶୁ ଅନେକ କଥା ଶିକ୍ଷାକରେ । ଏହାକୁ ଶିଶୁ ମନସ୍ତତ୍ତ୍ୱରେ ପ୍ରତ୍ୟକ୍ଷ ଜ୍ଞାନ କୁହାଯାଏ । ପରକରି ଦେଖାଯାଇଛି ଜ୍ଞାନ ଗ୍ରହଣ ଶକ୍ତି ଯେଉଁ ଶିଶୁ ଠାରେ ଯେତେ ଅଧିକ, ସେ ସ୍ୱଳ୍ପ ସମୟ ମଧ୍ୟରେ ସେତେ ଅଧିକ କଥା ଶିକ୍ଷା କରେ ବା ଜାଣିପାରେ । ଏହି ଶିଖିବା ଓ ଜାଣିବା ପ୍ରକ୍ରିୟାକୁ ଶିଶୁ ମନୋବିଜ୍ଞାନରେ ଧାରଣା କୁହାଯାଏ । ଶିଶୁ ମନରେ କୌଣସି ବିଷୟ ବା ବସ୍ତୁ ସଂପର୍କରେ ଏକ ସ୍ଥୁଳ ଧାରଣା ସୃଷ୍ଟି କରିବା ପାଇଁ ଶିଶୁ ସାହିତ୍ୟ ଏକ ଗୁରୁ ଦାୟିତ୍ୱ ତୁଲାଇଥାଏ । ଚଂଚଳମତି ଶିଶୁର ମନକୁ ସ୍ଥିର କରିବାକୁ ବା ତାର ଜିଜ୍ଞାସା ପ୍ରବୃତ୍ତିର ଉପଶମ ପାଇଁ ଅନେକ କାଳ୍ପନିକ କାହାଣୀ ଶିଶୁ-ସାହିତ୍ୟରେ ସୃଷ୍ଟି କରାଯାଏ । ସେହି କାହାଣୀ ପଢି ଶିଶୁ ଆନନ୍ଦ ଲାଭ କରିବା ସହିତ ଏକ ନିର୍ଦ୍ଦିଷ୍ଟ ବସ୍ତୁ ବା ବିଷୟ ସଂପର୍କରେ ନିଜ ମନ ମଧ୍ୟରେ ଏକ ସ୍ଥୁଳ ଧାରଣା ସୃଷ୍ଟି କରେ । ନନ୍ଦକିଶୋର ସିଂହଙ୍କର କେତେକ ଗଳ୍ପ ପିଲାମାନଙ୍କ ମନରେ ଧାରଣା ସୃଷ୍ଟି କରିବା ପାଇଁ ଉଦ୍ଦିଷ୍ଟ । ତାଙ୍କର 'ବେଙ୍ଗ ରାବେ କାହିଁକି ?' ଗଳ୍ପକୁ ଉଦାହରଣ ଭାବେ ଗ୍ରହଣ କରାଯାଇପାରେ । ବର୍ଷାଦିନରେ ବେଙ୍ଗ କେଁ କଟର କେଁ କଟର ଶବ୍ଦ କରି ବୋବାଇବା ଏକ ସାଧାରଣ ଘଟଣା । କିନ୍ତୁ ବେଙ୍ଗ ଏପରି କାହିଁକି ବୋବାଏ ବୋଲି ଶିଶୁ ଯଦି ଆମକୁ ପ୍ରଶ୍ନ କରେ ତେବେ କଣ ତାର ମନ ବୁଝିଲା ପରି ଉତ୍ତର ଆମେ ଦେଇପାରିବା । ଏହି କ୍ଷେତ୍ରରେ କିନ୍ତୁ ଶ୍ରୀଯୁକ୍ତ ସିଂହ ନିଜର ବିଚାର ଓ କଳ୍ପନା ଶକ୍ତିକୁ ପ୍ରୟୋଗ କରି ଏକ ସୁନ୍ଦର ଗଳ୍ପ ସୃଷ୍ଟି କରିଛନ୍ତି । "ଅନେକ ଦିନ ତଳେ ପୃଥିବୀ ପୃଷ୍ଠରେ ବର୍ଷା ନହେବାରୁ ବେଙ୍ଗ ଟିଏ ଚିନ୍ତିତ ହୋଇ ଏହାର କାରଣ ଜାଣିବାକୁ ବର୍ଷାର ରାଜା ଇନ୍ଦ୍ରଦେବତାଙ୍କ ପାଖକୁ ଯାଇଛି । ଏହା ଜାଣିପାରି ଇନ୍ଦ୍ର ସାମାନ୍ୟ ବେଙ୍ଗକୁ ଘଉଡାଇ ଦେବା ପାଇଁ ବିଭିନ୍ନ ସମୟରେ ପାରା,

କୁକୁର ଓ ଅନ୍ୟ ଜଗୁଆଳୀ ମାନଙ୍କୁ ପ୍ରେରଣ କରିଛନ୍ତି । କିନ୍ତୁ ଚତୁର ବେଙ୍ଗ ପୂର୍ବରୁ ସତର୍କ ହୋଇ ନିଜ ସାଥିରେ । କୋକିଶିଆଳୀ ଭାଲୁ ଓ ବାଘକୁ ନେଇଥିବାରୁ ସେସବୁର ମୁକାବିଲା କରିପାରିଛି । ଏହା ଦେଖି ଇନ୍ଦ୍ର ଭାବିଲେ ଏହି ବେଙ୍ଗ ଗୋଟିଏ ସାଧାରଣ ବେଙ୍ଗ ନୁହେଁ । ତେଣୁ ତାକୁ ସନ୍ତୁଷ୍ଟ କରାଇବା ପାଇଁ ସଂଗେ ସଂଗେ ବର୍ଷା କରାଇଲେ । ମାତ୍ର ବେଙ୍ଗ ଇନ୍ଦ୍ରଙ୍କର ଚାଲାଖି ବୁଝିପାରି ସେତିକିରେ ଇନ୍ଦ୍ରଙ୍କୁ ଛାଡିଲା ନାହିଁ । ଭବିଷ୍ୟତରେ ଯେପରି ଏମିତି ଘଟଣା ଆଉ ନଘଟିବ ସେପାଇଁ ଇନ୍ଦ୍ରଙ୍କ ଠାରୁ ପତିଶ୍ରୁତି ମାଗିଲା । ଇନ୍ଦ୍ର ଦେଖିଲେ ଏ ବେଙ୍ଗ ଛାଡିବ ନାହିଁ । ତେଣୁ ସେ ବେଙ୍ଗକୁ କହିଲେ, ପୃଥିବୀରେ ବର୍ଷାର ଅଭାବ ହେଲେ ତୁମେ ଟିକେ ସ୍ୱର୍ଗକୁ ଚାହିଁ ଦି'ଚାରି କୁହାଟ ମାରିଦେବ । ସେତିକିରେ ମୁଁ ମେଘ ମାନଙ୍କୁ ସଂଗେ ସଂଗେ ପଠାଇଦେବି । ତୁମର ଆଉ ଆସିବା ଦରକାର ନାହିଁ । "

ଚାଉଳ ଓ ଭାତ ସଂପର୍କରେ ଶିଶୁ ମନରେ ଏକ ସ୍ଥୁଳ ଧାରଣା ସୃଷ୍ଟି କରିବା ପାଇଁ ସରଳ ଓ ସୁନ୍ଦର ପଦାବଳୀ ମାଧ୍ୟମରେ ସେ ପ୍ରୟାସ କରିଛନ୍ତି -

"ଧାନରୁ ଚାଉଳ ହୁଏ ମୋଟା ଓ ସରୁଆ,<br>
ଭାତ କେ ଉଷୁନା ଖାଏ, ଖାଏ କେ ଅରୁଆ ।।<br>
ଖାଏ କେ ଗରମ ତ ଖାଏ କେ ପଖାଳ<br>
ନାନା ଭାବେ ଲୋଡା ଭାତ ସଂଜଠୁ ସକାଳ ।।"

<u>ପରିବେଶ :</u>

ଶିଶୁ ନିଜ ପରିବେଶକୁ ଅଧିକ ଭଲପାଏ । ଶିଶୁ ମନୋବିଜ୍ଞାନରେ ଶିଶୁର ଚତୁଃପାର୍ଶ୍ୱକୁ ଶିଶୁ ପରିବେଶ ଭାବରେ ଗ୍ରହଣ କରାଯାଏ । ଶିଶୁ ତାର ଦୈନନ୍ଦିନ ଜୀବନରେ ଆସୁଥିବା ବ୍ୟକ୍ତି, ପଶୁପକ୍ଷୀ, କୀଟପତଙ୍ଗ ଓ ବୃକ୍ଷଲତାଙ୍କ ସଂପର୍କରେ ଗଳ୍ପ ଓ କବିତାପାଠ କରି ସେ ଅଧିକ ଖୁସିହୁଏ । ଶିଶୁ ମନସ୍ତତ୍ତ୍ୱର ଏହି ଉପାଦାନ ଶ୍ରୀଯୁକ୍ତ ସିଂହଙ୍କର ଅନେକ ଗଳ୍ପ ଓ କବିତାରେ ସ୍ଥାନ ପାଇଛି । ତାଙ୍କର **'କାଳିଆ ଶଣ୍ଢ ପାଇଲା ଦଣ୍ଡ', 'ଚିଇ ବେଙ୍ଗ ମୂଷା', 'ବାଘ ଭଣଜାର ବିଲେଇ ମାଇଁ', 'ଶିଆଳ ଝିଅର ବାହାଘର', 'ଅଦ୍ଭୁତ ମେଣ୍ଢା'** ଏବଂ **'ଠେକୁଆ ଓ କାଠୁରିଆ ପିଲା'** ଆଦି ଗଳ୍ପ ଗୁଡିକ ଶିକ୍ଷଣୀୟ ହେବା ସହିତ ଶିଶୁ ପରିବେଶ ଆଧାରିତ । ତାଙ୍କ ଶିଶୁ କବିତାରେ ମଧ୍ୟ ଶିଶୁ ପରିବେଶ ମଧ୍ୟରେ ମସବାସ କରୁଥିବା ଅନେକ ଜୀବଜନ୍ତୁ ଓ ସେମାନଙ୍କ ବୋବାଇବାର ଶବ୍ଦ ପ୍ରକାଶ ପାଇଛି, ଯାହାକି ଶିଶୁ ମନରେ ନିର୍ମଳ ହାସ୍ୟରସ ସୃଷ୍ଟି କରିବାରେ ସହାୟକ ହୋଇଥାଏ ।

"ବିଲେଇ କହେ ମିଆଉଁ ମିଆଉଁ<br>
କୁକୁର କହେ ଭୋ<br>
ବାଛୁରି ଡାକେ ହମ୍ବା ହମ୍ବା<br>
ବିଲୁଆ ହୁକେ ହୋ ।।"

## ପରିଚୟବୋଧ :

ପୂର୍ବରୁ ଜାଣିବା କଥା ଓ ଘଟଣାକୁ ଶିଶୁ-ସାହିତ୍ୟ ମାଧ୍ୟମରେ ପୁନର୍ବାର ଜାଣିବା ପ୍ରକ୍ରିୟାକୁ ଶିଶୁମନୋବିଜ୍ଞାନରେ ପରିଚୟବୋଧ କୁହାଯାଏ । ଶିଶୁ ସମାଜର ବିଭିନ୍ନ ନୀତିନିୟମ, ପ୍ରଥା ଓ ଚାଲିଚଳନ ଦ୍ୱାରା ପରିଚାଳିତ ହୁଏ । ଏସବୁ ଦେଖି କଣ କାହିଁକି ଓ କିପରି ଇତ୍ୟାଦି ବିଭିନ୍ନ ପ୍ରଶ୍ନ ତା ମନ ଭିତରେ ସୃଷ୍ଟି ହୁଏ । ତାର ଏହି ଆଗ୍ରହ ଓ ଜିଜ୍ଞାସାକୁ କେବଳ ଶିଶୁ-ସାହିତ୍ୟ ହିଁ ପୂରଣ କରେ । ଶିଶୁର ପରିଚୟବୋଧ ବଢାଇବା ପାଇଁ ଗାନ୍ଧିକ ବିଭିନ୍ନ ବିଷୟରେ ଲେଖନୀ ଚାଳନା କରିଥିବା ଦେଖାଯାଏ । ତାଙ୍କର 'ନାରଦ ବୁଦ୍ଧି ଶିଖିଲେ', 'ସେ ସୁନା କଂକଣ ଫୋପାଡି ଦେଲେ', 'ଜୟମତୀ', 'ମାକ୍ସମୁଲର', 'ଫିରୋଜସାହା', ଏବଂ 'କେରାଏ ରକ୍ତ କେଶ' ଆଦି ଗଳ୍ପରୁ ଶିଶୁ ଅନେକ କଥା ଜାଣିପାରେ । ତାଙ୍କର କପଡା କବିତାରେ କପଡାର ସୃଷ୍ଟି ଓ ନାମକରଣ ଆଦି ସଂପର୍କରେ ଶିଶୁର ପରିଚୟବୋଧ ଜ୍ଞାନ ବୃଦ୍ଧିରେ ସହାୟକ ହୁଏ ।

"କିଏ ମୋତେ କନା କହେ କିଏ କହେ କପଡା
ଥାନ ରୂପେ ଦୋକାନରେ ରହିଥାଏ ସଜଡା
ତୂଳାରୁ ଜନମ କେବେ ଲୋମରୁ ପଶମ
ଗୋଟି ପୋକ ଠାରୁ ମୁଁ ଜାତହୁଏ ରେଶମ
କେତେବେଳେ ଧୋତିହୁଏ କେତେବେଳେ ଚଦର
କେତେବେଳେ ଗାମୁଛା ମୁଁ ଗରିବଙ୍କ ଆଦର
ଶାଢି ସାୟା ରୂପେ ସାଜେ ମହିଳାଙ୍କ ପୋଷାକ
ଜାତି ଜାତି ଫେସନରେ ଯୋଗାଏ ମୁଁ ଖୋରାକ ।।"

## ସର୍ବପ୍ରାଣବାଦ ଓ ବ୍ୟକ୍ତିତ୍ୱ ଆରୋପ :

ଛୋଟ ଶିଶୁ ସଜୀବ ଓ ନିର୍ଜୀବ ମଧ୍ୟରେ ରହିଥିବା ତଫାତ କଣ ଜାଣେ ନାହିଁ ତା ଦୃଷ୍ଟିରେ ସମସ୍ତଙ୍କର ଜୀବନ ଅଛି ଓ ସମସ୍ତେ ଚଳପ୍ରଚଳ ହେବା ସହିତ ମଣିଷ ମାନଙ୍କ ପରି କଥାବାର୍ତ୍ତା ଓ ବ୍ୟବହାର ପ୍ରଦର୍ଶନ କରନ୍ତି । ଏହି ମନସ୍ତତ୍ତ୍ୱକୁ ନେଇ ଗାନ୍ଧିକ ଅନେକ ମନଛୁଆଁ କାହାଣୀ ସୃଷ୍ଟି କରିଛନ୍ତି । ତାଙ୍କର "ଚତୁର ମାଙ୍କଡ" ଗଳ୍ପରେ ଗୋଟିଏ ବୁଢା ମାଙ୍କଡ ବଗିଚା କରିବା ସହିତ ସେଠାରେ କୁକୁଡା ପାଳନ କରି ମନ ଖୁସିରେ ଥାଏ । ହସଖୁସିରେ ମାଙ୍କଡର ସମୟ ଅତିବାହିତ ହେଉଥାଏ । ଏହାଦେଖି ଗୋଟିଏ ବିଲୁଆ କିପରି କୁକୁଡା ମାନଙ୍କୁ ଖାଇବ ସେପାଇଁ ତା ପାଟିରୁ ଲାଳ ବୋହିଲା ।

ନିଜ ଇଚ୍ଛା ପୂରଣ ପାଇଁ ବିଲୁଆ ବିଭିନ୍ନ ପ୍ରକାର ପ୍ରଲୋଭନ ଦେଖାଇ ଅନ୍ୟତ୍ର ଡାକିନେବାକୁ ପ୍ରୟାସ କରି ବିଫଳ ହେଲା । ମାତ୍ର ଚତୁର ମାଙ୍କଡ ବିଲୁଆର କୌଶଳ ବୁଝିପାରି ତାକୁ ଉଚିତ ଶିକ୍ଷା ଦେବାପାଇଁ ଚିନ୍ତା କରିଛି । ଦିନେ ସଂଧ୍ୟାରେ ବିଭିନ୍ନ ପ୍ରକାର ରୋଷେଇ ରେ ମଗ୍ନ ଥିବା ସମୟରେ ବିଲୁଆ କଣ୍ଢାବୁଦା ଆଢୁଆଳରେ ଲୁଚି ରହିଥିବା ମାଙ୍କଡ ଜାଣିପାରିଛି । ଏହା ଦେଖି ମାଙ୍କଡ ବିଲୁଆକୁ ଆଖିବୁଜି ବସିବା ପାଇଁ ସେ ପରାମର୍ଶ ଦେଇଛି । ବିଲୁଆ ମାଙ୍କଡ ର କୌଶଳ ବୁଝିନପାରି ସୁସ୍ୱାଦୁ ଖାଦ୍ୟ ଖାଇବା ଲୋଭରେ ଆଖିବୁଜି ଆଁକରି ବସିରହିଛି । ଏହି ସୁଯୋଗରେ ମାଙ୍କଡ ଚୁଲିରୁ ଜଳନ୍ତା ନିଆଁ ରଡ ଆଣି ବିଲୁଆ ମୁହଁରେ ଗୁଞ୍ଜିଦେଇଛି । ବିଚରା ବିଲୁଆ ପ୍ରାଣ ବିକଳରେ ହୁକେ ହୋ ଡାକି ସେଠାରୁ ଜୀବନ ବିକଳରେ ଧାଇଁ ପଳାଇଛି । ଏହି ଗଳ୍ପରେ ମାଙ୍କଡ, ଚିଳ ଓ ବିଲୁଆ ଆଦି ପଶୁପକ୍ଷୀଙ୍କର କଥୋପକଥନ, ମନୁଷ୍ୟୋଚିତ କାର୍ଯ୍ୟକଳାପ ଓ କଥାବାର୍ତ୍ତା ଶିଶୁମାନଙ୍କୁ ଆନନ୍ଦ ପ୍ରଦାନ କେରେ ।

ତାଙ୍କ କବିତାରେ ମଧ୍ୟ ସେହି ଉପାଦାନର ସୂଚନା ରହିଛି । ଇନ୍ଦ୍ରଧନୁ ନିଜ ସୃଷ୍ଟି ରହସ୍ୟ ସଂପର୍କରେ ଶିଶୁମାନଙ୍କୁ କହିଛି ।

"ଏପାଖରେ ବରଷାକୁ ସେପାଖରେ ସୂରୁଯ
ସେତିକିବେଳେ ମୁଁ ବୁଣେ ଆକାଶରେ ମୁରୁଜ
ବାଇଗଣୀ, ଘନନୀଳ, ନୀଳ ଆଉ ସବୁଜ
ହଳଦିଆ ନାଲି ପୁଣି ନାରଂଗୀକୁ ସରଜ ।।"

<u>କଳ୍ପନା :</u>

ଶିଶୁର ମନ ହେଉଛି କଳ୍ପନାର ଗନ୍ତାଘର । ବାସ୍ତବ ଜଗତରେ ସମସ୍ତ ଅସମ୍ଭବ ଘଟଣା ଶିଶୁ କଳ୍ପନାରେ ସମ୍ଭବ ହୋଇଥାଏ । କାରଣ ଶିଶୁକୁ ବାସ୍ତବ ଜଗତରେ ଅନେକ ପ୍ରତିରୋଧର ସମ୍ମୁଖୀନ ହେବାକୁ ପଡିଥାଏ । ତେଣୁ ତାର ଆଶା ଆକାଂକ୍ଷା, ଇଚ୍ଛା ଓ ଆଗ୍ରହ ଆଦିକୁ ସେ କଳ୍ପନା ମାଧ୍ୟମରେ ସାକାର କରିବାକୁ କ୍ଷମ ହୁଏ । କଳ୍ପନାର ପ୍ରଥମ ସ୍ପର୍ଶ ସେ ଶିଶୁ-ସାହିତ୍ୟରୁ ହିଁ ପାଇଥାଏ । ଶିଶୁ କଳ୍ପନାର ରୂପରେଖ ଗାଳ୍ପିକଙ୍କ 'ସାବାସ ଟୁଟୁ' ଗଳ୍ପରେ ବିଭିନ୍ନ ଭାବରେ ରୂପ ପାଇବା ସହିତ ତାଙ୍କ 'ଟିକି ପିଲାଟିଏ ବଗିଚାରେ' କବିତାଟି ଶିଶୁ ମନର ଅଜସ୍ର କଳ୍ପନା ଓ ପ୍ରଶ୍ନରାଜିକୁ ନେଇ ରଚିତ ।

"ଆତଟା କାହିଁକି ଆକାଶ ଆଡକୁ ନଗଲା ଉଠି
ବୁଲ୍‌ବୁଲ୍ ପକ୍ଷୀ ଯେମିତି ଉଠୁଛି ଡେଣାଟା ପିଟି ।।
ଟେକାଟିଏ ଆମେ ଫିଙ୍ଗିଲେ ଉଡେ ପୁଣି ସେ ଖସେ
ଏକଥା କାହିଁକି କାହିଁକି ଏକଥା ମୁଣ୍ଡେ ନପଶେ ।।"

**ହାସ୍ୟରସ :**

ହସିବାକୁ କିଏବା ଭଲ ନପାଏ । କିନ୍ତୁ ସାହିତ୍ୟରେ ହାସ୍ୟରସ ସୃଷ୍ଟି କରି ନିଜେ ହସିବା ସହିତ ଅନ୍ୟମାନଙ୍କୁ ହସାଇବା ହେଉଛି ଏକ ସାର୍ଥକ କଳା । ଏହା ସବୁ ସାହିତ୍ୟକଙ୍କ ପକ୍ଷରେ ସମ୍ଭବ ନୁହେଁ । ଶିଶୁ ସାହତ୍ୟିକ ସିଂହଙ୍କର କେତେକ ଗଳ୍ପରେ ନିର୍ମଳ ହାସ୍ୟରସର ଧାରା ପ୍ରବାହିତ ହୋଇଥିବା ଲକ୍ଷ କରାଯାଏ । ତାଙ୍କ 'ଓଲାକୁ ଓଲି' ଗଳ୍ପରେ ଲୋକଟିଏ ତାର ସ୍ତ୍ରୀ ର ଅନୁରୋଧରେ ନିଜ ଘର ପାଇଁ ତିନିଗୋଡିଆ ଟିଏ ଆଣିବା ପାଇଁ ବଜାରକୁ ଯାଇଛି । ବଜାର ସାରା ଖୋଜି ଖୋଜି ଶେଷରେ ବଢେଇ ଦୋକାନରୁ ତିନିଗୋଡିଆ ଟୁଲ୍ ଟିଏ କିଣି ତାକୁ ମୁଣ୍ଡରେ ମୁଣ୍ଡେଇ ଘରକୁ ଫେରିବା ବାଟରେ ସେ ଭାବିଲା ମୋର ଦୁ ଇଟି ଗୋଡ ହୋଇଥିବା ବେଳେ ମୁଁ ଯେତେବେଳେ ଏତେ ବାଟ ଚାଲିପାରୁ ଛି, ଏ ତିନି ଗୋଡିଆ ମୋଠାରୁ ନିଶ୍ଚୟ ଅଧିକ ବାଟ ଶୀଘ୍ର ଚାଲିପାରିବ । ତେବେ ମୁଁ କାହିଁକି ତାକୁ ବେକାରରେ ମୁଣ୍ଡେଇ ନେଉଛି । ଏହା ଭାବି ଓଲା ଲୋକଟି ସେଇଠାରେ ତିନି ଗୋଡିଆଟିକୁ ଥୋଇଦେଇ ଘରକୁ ଆସିଲା । ଆସିଲାବେଳେ ତିନି ଗୋଡିଆକୁ କହିଲା, ତୁ ପଛରେ ଆସୁଥାଆ । ତା ପରର ଘଟଣାକୁ ଗାଳ୍ପିକ ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । -ଓଲା ଘରେ ପହଂଚିବାକ୍ଷଣି ଓଲୀ କହିଲା , ତୁମେତ ଆସିଲ ତିନିଗୋଡିଆ କାହିଁ ? ଓଲା ଏକଥା ଶୁଣି କହିଲା -କଣ ତିନିଗୋଡିଆ ଏଯାଏ ଘରକୁ ଆସିନି ? ମୋର ଦୁଇଟା ଗୋଡରେ ଚାଲି ମୁଁ ଆସି ଘରେ ପହଂଚିଲିଣି ହେଲେ ତାର ତିନିଟା ଗୋଡ ଥାଉ ଥାଉ ସେ ଗଲାକୁ ଆଡେ ? ଏକଥା ଶୁଣି କିଏବା ନହସି ରହିପାରିବ ? ଏହି ଗଳ୍ପ ବ୍ୟତୀତ 'ତାଙ୍କର ତିନି ବାହାପିଆ ହେଲେ ଜବଦ' ଓ 'ହୁଣ୍ଡା ମାଧିଆ' ଗଳ୍ପ ଦୁଇଟି ମଧ ହାସ୍ୟରସାତ୍ମକ । ସେହିପର ଭାଲୁର ରୂପ ଓ ନାଚକୁ ଲକ୍ଷ୍ୟ କରି କବି ଯେଉଁ ବର୍ଣ୍ଣନା କରିଛନ୍ତି ତାହା ମଧ ନିର୍ମଳ ହାସ୍ୟରସ ସୃଷ୍ଟି କରିଥାଏ ।

"ଦାଲୁ ଦାଲୁ ନାଚେ କାଳିଆ ଭାଲୁ
ଦିହ ସାରା, ଲୁମ ସାଲୁରୁ ବାଲୁ
ବେକତଳେ ତୋର ରୂପାର ହାର
ଦିଶୁଥାଏ ଆହା କେତେ ବାଗର
ଦି'ପହର ଜ୍ୱର ଆସିଗଲେ
ଶୋଇ ହେଉଥାଉ ଘୁଡୁରୁ ଘୁଡୁ ।
କାଳିଆ ଭାଲୁରେ କାଳିଆ ଭାଲୁ ।"

ଐନ୍ଦ୍ରଜାଲିକ ବସ୍ତୁ :

ଯେଉଁଠି କାହାଣୀ ର କଥାବସ୍ତୁ ଆଉ ଆଗକୁ ଯାଇପାରେ ନାହିଁ-ସେଠାରେ ଗାନ୍ଧିକ କେତେ କାଳ୍ପନିକ ଐନ୍ଦ୍ରଜାଲିକ ବସ୍ତୁର ପରିବେଷଣ କରି ଗଳ୍ପର କଥାବସ୍ତୁକୁ ଆଗେଇ ନେବା ସହିତ ଶିଶୁମାନଙ୍କ ମନରେ ବିସ୍ମୟ ସୃଷ୍ଟି କରିଥାନ୍ତି । ଏହି ସବୁ ବସ୍ତୁ ଓ ତାର କାର୍ଯ୍ୟକଳାପ ପ୍ରତି ଶିଶୁ ଅଧିକ ଆକର୍ଷିତ ହୋଇଥାଏ । ଶିଶୁର ଏହି ମନସ୍ତତ୍ତ୍ୱକୁ ଆଖି ଆଗରେ ରଖି ଗାନ୍ଧିକ କେତେକ ଗଳ୍ପ ସୃଷ୍ଟି କରିଥିବା ଜଣାଯାଏ । ତାଙ୍କର 'ଫେରାଇ ଦେଉ ମୋ ମେଜ ଓ ଗଧ' ଗଳ୍ପରେ ଏପରି ଏକ ମେଜର ଅବତାରଣା କରାଯାଇଛି । ଉକ୍ତ ମେଜ ଉପରେ ଗାମିଛା ଟିଏ ଘୋଡାଇ ଦେଇ ତାକୁ ଯାହା ଖାଇବାକୁ ମାଗିଲେ ସେ ତାହା ପହଂଚାଇଦିଏ । ତା ସହିତ ଏପରି ଏକ ଗଧର ବର୍ଣ୍ଣନା କରାଯାଇଛି ଯେ ଯେଉଁ ଗଧର କାନମୋଡି ଦେଲେ ତା ପାଟିରୁ ସୁନାରୂପା ଆଦି ଅଳଂକାର ବାହାରେ । ଏଇ ଦୁଇଟି ଐନ୍ଦ୍ରଜାଲିକ ବସ୍ତୁ ପିଲାଟିଏ ନିଜର ସାଧୁତା, କର୍ମକୁଶଳତା ଏବଂ ପରୋପକାର ଗୁଣ ଯୋଗୁ ବଢେଇ ଓ ଘୋଡାବାଲା ଠାରୁ ପାଇଥିଲା । ମାତ୍ର ସେ ଘରକୁ ଫେରିବା ବାଟରେ ଗୋଟିଏ ଚଟିଘରର ମାଲିକ ଚତୁରତାର ସହିତ ପିଲାଟି ଠାରୁ ଦୁଇଟିଯାକ ଐନ୍ଦ୍ରଜାଲିକ ବସ୍ତୁକୁ ଠକି ନେଇ ଗଲା । ପିଲାଟି ନିଜର ଭାଗ୍ୟକୁ ଆଦରି ଗୋଟିଏ କାଠୁରିଆ ନିକଟରେ କାମ କରିଛି ଓ କାଠୁରିଆ ପିଲାଟିର କାମରେ ଖୁସି ହୋଇ ତାକୁ ଗୋଟିଏ କୁହୁକ ବାଡି ପ୍ରଦାନ କରିଛି । ବାଡିକୁ ଯେତେବେଳେ ଯାହା କରିବାକୁ କହିବ ସେତେବେଳେ ସେ ତାହା କରିବ । ପିଲାଟି ଖୁସି ହୋଇ ପୁଣି ଆସି ସେଇ ଚଟିଘରେ ଆଶ୍ରୟ ନେଲା । ଚଟିଘରର ମାଲିକ ପୁନର୍ବାର ଲୋଭାଶକ୍ତ ହୋଇ ପିଲାଟି ଶୋଇଥିବା ଭାବି ବାଡିଟିକୁ ନେବା ପାଇଁ ଆସିଲା । ପିଲାଟି ସଂଗେ ସଂଗେ ଉଠିପଡି କହିଲା -

"ରେ ବାଡି ମୋ କୁହୁକ ବାଡି
ପିଟି ପିଟି ଦେ ସାବାଡ କରି ।"

ଟାହୁଁ ଟାହୁଁ ବାଡି ଲୋକଟା ଉପରେ ଖାଲି ଦୁଲଦାଲ୍ ପାହାର ବସାଇବାରେ ଲାଗିଲା । ଲୋକଟି ଆକୁଳ ହୋଇ କହିଲା, "ଆଉ ମାରନା, ଆଉ ମାରନା- ମରିଯିବି ମରିଯିବ । " ମୁଁ ତୁମର କାଠ ମେଜ ଓ ଗଧ ସବୁ ଫେରାଇ ଦେଉଛି । ଏକଥା ଶୁଣିବା ପରେ ପିଲାଟି କହିଲା-

"ରେ ବାଡି ହୋଇ ଯା ଶାନ୍ତ
ଫେରାଇ ଦେଉ ମୋ ମେଜ ଓ ଗଧ
ନଦେଲେ ପିଟି ଭାଙ୍ଗିବା ଦାନ୍ତ । "

ଏହି ଐନ୍ଦ୍ରଜାଲିକ ବାଡିର କରାମତି ନିଶ୍ଚିତ ଭାବରେ ପିଲାମାନଙ୍କୁ ଆନନ୍ଦ ପ୍ରଦାନ କରିଥାଏ । ଏହା ଦ୍ୱାରା ଶିଶୁର କଳ୍ପନା ଶକ୍ତିର ମଧ୍ୟ ବିସ୍ତାର ଘଟେ । ଲେଖକଙ୍କର ଏହି ଶୈଳୀ ଶିଶୁକୁ ଶିଶୁ-ସାହିତ୍ୟ ପ୍ରତି ଅଧିକ ଆକୃଷ୍ଟ କରିଥାଏ ।

ଚରିତ୍ର :

ଗଳ୍ପର ଚରିତ୍ର ଗୁଡିକ ଶିଶୁମାନଙ୍କ ମନରେ ଗଭୀର ରେଖାପାତ କରିଥାଏ । ଗାଳ୍ପିକଙ୍କ ଗଳ୍ପର ଚରିତ୍ର ଗୁଡିକ ମୁଖ୍ୟତଃ ଦୁଇଟି ଗୁଣରାଜିକୁ ନେଇ ଚିତ୍ରିତ ହୋଇଛି । ସତ୍‌ଚରିତ୍ର ଗୁଡିକ ନିଜର କାର୍ଯ୍ୟକଳାପ ପାଇଁ ପ୍ରଶଂସା ପାଇବା ସହିତ ସୁଖ ଶାନ୍ତିରେ ଜୀବନ ଯାପନ କରିଛନ୍ତି । କିନ୍ତୁ ଅସତ୍‌ଚରିତ୍ର ଗୁଡିକ ସବୁଠାରେ ହତାଦର ପାଇବା ସହିତ ଅଶାନ୍ତି, ଦୁଃଖ ଓ ଯନ୍ତ୍ରଣା ମଧ୍ୟରେ ଜୀବନ ଯାପନ କରିଛନ୍ତି । ହାସ୍ୟରସପୂର୍ଣ୍ଣ ଗଳ୍ପ ଗୁଡିକରେ ଚିତ୍ରିତ ଚରିତ୍ରମାନେ ଗଳ୍ପର କଥାବସ୍ତୁ ଅନୁଯାୟୀ ନିଜର ଆଚରଣ ପ୍ରଦର୍ଶନ କରିଛନ୍ତି । ମୋଟାମୋଟି ଭାବେ ଗାଳ୍ପିକ ତାଙ୍କ ଗଳ୍ପ ଗୁଡିକର ଚରିତ୍ର ମାନଙ୍କ ମାଧ୍ୟମ ଦେଇ ଶିଶୁମାନଙ୍କ ମନରେ ଏକ ସ୍ଥାୟୀ ପ୍ରଭାବ ପକାଇବାକୁ ପ୍ରୟାସ କରିଛନ୍ତି ।

ସମାଜ ଚିତ୍ର :

ସାହିତ୍ୟ ହେଉଛି ସମାଜର ପ୍ରତିବିମ୍ବ । ଶିଶୁ-ସାହିତ୍ୟ ସାହିତ୍ୟର ଅଂଶବିଶେଷ ହୋଇଥିବାରୁ ସମାଜର ଚିତ୍ର ମଧ୍ୟ ସେଥିରେ ପ୍ରତିଫଳିତ ହୁଏ । ଶିଶୁ ସମାଜରେ ଜୀବନ ଧାରଣ କରି ବଡ ହୁଏ । ତେଣୁ ସମାଜର ରୀତିନୀତି, ଆଚାର ବ୍ୟବହାର ସହିତ ପରିଚିତ ହୋଇଥାଏ । ତା ସହିତ ଶିଶୁ-ସାହିତ୍ୟ ମଧ୍ୟରେ ସେସବୁ ପଢି ଶିଶୁ ନିଜକୁ ସାମାଜିକ ରୀତିନୀତି ସହିତ ଚଳେଇ ନେବାକୁ ମାନସିକ ସ୍ତରରେ ପ୍ରସ୍ତୁତ ହୁଏ । ନନ୍ଦକିଶୋରଙ୍କ ଅଧିକାଂଶ ସୃଷ୍ଟିରେ ସମାଜର ଚିତ୍ର ପ୍ରକାଶ ପାଇଛି । ଆଜିକାଲି ଶିକ୍ଷିତ ଯୁବକ ମାନେ ଚାକିରୀ ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟକରିବା ପାଇଁ ପ୍ରସ୍ତୁତ ନୁହନ୍ତି । ଏପରିକି ନିଜ ପରିବାରର କାର୍ଯ୍ୟ ବା କୌଳିକ ବୃତିରେ ନିୟୋଜିତ ହେବା ପାଇଁ ମଧ୍ୟ କୁଣ୍ଠିତ । କାମ କରିବା ଅସମ୍ମାନ ଜନକ ତଥା ନିଜ ମାନ ସମ୍ମାନରେ ଆଞ୍ଚ ଆସିବ ଭାବି ବାପା ମୋ ମାନଙ୍କ ଉପରେ ସେମାନେ ବୋଝ ହୋଇ ରହୁଛନ୍ତି । ତାହା ଛଡା ଆଜିର ପିଲାମାନେ ଦୟା, ସାହାଯ୍ୟ ପରୋପକାର ଆଦି ଦେବସୁଲଭ ଗୁଣଠାରୁ ଦୂରେଇ ଯାଉଥିବା ଲକ୍ଷ୍ୟ କରାଯାଉଛି । ସେମାନଙ୍କର ଏହି ଗୁଣ ଓ ମନୋବୃତ୍ତିର ପରିବର୍ତ୍ତନ ପାଇଁ ନନ୍ଦକିଶୋର ତାଙ୍କ 'ମନ କର ନରମ' କବିତାରେ ପ୍ରୟାସ କରିଛନ୍ତି-

"ପରର ସେବା କରିବା ଅଟେ ବଡ ଧରମ
ସେବା ପାଇଁ ଲୋଡା ସଦା ମନଟିଏ ନରମ ।

ପେଟ ପୋଷିବାର ପାଇଁ ଛାଡିଦିଅ ସରମ
ଅନ୍ଧ କଣା ଛୋଟା ପାଶେ ମନ କର ନରମ । ''

ସେହିପରି ଆଜିର ମଣିଷ ନିଜର ଆତ୍ମବଡିମା, ଜିଦ୍‌ଖୋର ମନୋବୃତି ତଥା ଅସୂୟା ଭାବ ପାଇଁ ସର୍ବଦା କଳିଝଗଡା, ହଣାକଟା ଆଦି ନାନା ଅସାମାଜିକ କାର୍ଯ୍ୟ ରେ ଲିପ୍ତ ରହି ଅଯଥା ସମାଜରେ ଅଶାନ୍ତି ସୃଷ୍ଟି କରୁଛି । -ଏହାକୁ ଲକ୍ଷ୍ୟ ରଖି 'ଲଢେଇ' କବିତାରେ କବି ଲେଖିଛନ୍ତି-

''ମଣିଷ ମଣିଷ ମଧ୍ୟେ ଆଜି ଯେଉଁ ଲଢେଇ
ସେ ଲଢେଇ ଦିଏ ଖାଲି ବିପଦକୁ ବଢେଇ ।।
ଆପଣା ବଡେଇ ପାଇଁ ଲାଗୁଛି ଏ ଲଢେଇ
ସୁଖ ଶାନ୍ତି ଘଡିକରେ ଦିଏ ସବୁ ଗଡେଇ ।। ''

ଭାଷା :

ଭାଷା ହେଉଛି ଶିଶୁ-ସାହିତ୍ୟର ପ୍ରାଣ ସ୍ପନ୍ଦନ । ସରଳ, ସହଜ ଓ ଶବ୍ଦ ଚୟନ ସହିତ କ୍ଷୁଦ୍ର କ୍ଷୁଦ୍ର ବାକ୍ୟ ବ୍ୟବହାର ଏବଂ ତା ସହିତ ଭାଷାର କାବ୍ୟିକତା ହିଁ ଗାଳ୍ପିକ ସିଂହଙ୍କ ଗଳ୍ପର ମୁଖ୍ୟ ଆଭିମୁଖ୍ୟ । ତାଙ୍କର 'ତିନି ବାହାପିଆ ହେଲେ ଜବଦ' ଗଳ୍ପଟିକୁ ଉଦାହରଣ ରୂପେ ଗ୍ରହଣ କରାଯାଇପାରେ -''ଗାଆଁଟିଏ । ନାଁ ତାର ସୁଜନପୁର । ସେଇ ସୁଜନପୁରରେ ତିନୋଟି ଦୁର୍ଜନ ଟୋକା । ପୁଡି ମାରିବାରେ, ବାହାପିଆ ପଣରେ ବଡ ପାରିଲା । ଲୋକେ ସେ ତିନିଜଣଙ୍କୁ ଖଚୁଆ, ମିଛୁଆ ଓ ବାହାପିଆ ବୋଲି ସବୁବେଳେ କହନ୍ତି ।''

ଗଳ୍ପର ନାମକରଣରେ ମଧ୍ୟ ତାଙ୍କର ଏକ ବିଶେଷତ୍ୱ ରହିଛି । ସେଗୁଡିକର କାବ୍ୟଧର୍ମିତା ହେତୁ ସେଗୁଡିକ ଅଧିକ ଶ୍ରୁତିମଧୁର । ଗାଳ୍ପିକଙ୍କର 'ନଣ୍ଡା ମଉସାଙ୍କ ପଣ୍ଡା', 'କାଳିଆ ଷଣ୍ଢ ପାଇଲା ଦଣ୍ଡ' 'ଲଟକଣ ଖାଇଲା ଚଟକଣା' ଏବଂ 'ଟୋକା ବୁଦ୍ଧି ଟୋକେଇରେ' ଆଦି ଗଳ୍ପର ନାମକରଣରୁ ଏକଥାର ସତ୍ୟତା ଉପଲବ୍ଧି କରରିହୁଏ । ଶିଶୁ ଏହି ସବୁ ଗଳ୍ପର ଶୀର୍ଷକ ପଢି ପ୍ରଥମରୁ ହିଁ ସେସବୁ ପ୍ରତି ଆକୃଷ୍ଟ ହୋଇପଡି ସଂପୂର୍ଣ୍ଣ ଗଳ୍ପଟିକୁ ପଢିବା ପାଇଁ ଆଗ୍ରହ ପ୍ରକାଶ କରେ । ଗଳ୍ପ ମଧ୍ୟରେ ଗୀତର ପ୍ରୟୋଗ ହୋଇଥିଲେ ଶିଶୁ ସେଥିପ୍ରତି ଅଧିକ ଆଗ୍ରହ ପ୍ରକାଶ କରିଥାଏ । ଗାଳ୍ପିକ ସିଂହ ତାଙ୍କର କେତେକ ଗଳ୍ପରେ ଏହି ଶୈଳୀକୁ ଗ୍ରହଣ କରିଥିବାର ଦେଖାଯାଏ । ତାଙ୍କର 'ମୂଷା ଭାଇର ପାରିଧି' ଗଳ୍ପରେ ପିଲାମାନେ ମୂଷାକୁ ଗୀତ ଗାଇ ବିଭିନ୍ନ କଥା ପଚାରିବା ସହିତ ମୂଷା ମଧ୍ୟ ନିଜର ମନୋଭାବକୁ ଗୀତ ଗାଇ ଉତ୍ତର ପ୍ରଦାନ କରିଛି -

"ମୂଷା ଭାଇରେ ମୂଷା ଭାଇ
ଆମ ରାଇଜକୁ ଆ ତୁ ଧାଇଁ ॥"

ମୂଷା ପିଲାଙ୍କ କଥା ଶୁଣି କହିଲା-

"କାହିଁକି ଡାକୁଛ ଏତେ
ପାରିଧିକୁ ପରା ବାହାରିଛି ମୁହିଁ
ବେଳ ଛମା ନାହିଁ ମୋତେ । "

ଗଳ୍ପରେ ବର୍ଣ୍ଣନାଧର୍ମି ଅପେକ୍ଷା କଥନ ଧର୍ମି ପ୍ରତି ଶିଶୁ ଅଧିକ ଆକୃଷ୍ଟ ହୋଇଥାଏ । ନନ୍ଦକିଶୋର ସିଂହଙ୍କ ଅଧିକାଂଶ ଗଳ୍ପର ଚରିତ୍ର ମାନେ ପରସ୍ପର ମଧ୍ୟରେ କଥାବାର୍ତ୍ତା ହୋଇ ଗଳ୍ପର ବିଷୟ ବସ୍ତୁକୁ ଆଗେଇ ନେଇଥିବା ଦେଖାଯାଏ । ଘଟଣା ଏବଂ ଚରିତ୍ର ମାନଙ୍କର ବିଶେଷତ୍ୱ ପ୍ରତିପାଦନ କରିବା ପାଇଁ ଗାଳ୍ପିକ ତାଙ୍କର କେତେକ ଗଳ୍ପରେ ଲୋକୋକ୍ତି ଓ ଭଗବତ୍ ବାଣୀର ପ୍ରୟୋଗ କରିଥିବା ଜଣାଯାଏ । ଯଥା-

୧ ॥ ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ ।(ଟୋକେଇରେ ଟିକିପିଲା)

୨ ॥ ବୁଦ୍ଧି ବିଚାରି କାମ କଲେ , ପ୍ରମାଦ ନ ପଡ଼ଇ ଭଲେ । (ଚତୁର ମାଙ୍କଡ)

୩ ॥ ଯାହାକୁ ଯାହା କରିଛି ଦଇବ, ସେ କି କେଉଁରୁ ଅନ୍ୟଥା ହୋଇବ ।

(ଟୋକା ବୁଦ୍ଧି ଟୋକେଇରେ)

୪॥ ସୂତା ମାଜିଲେ ସରୁ , କଥା ମାଜିଲେ ମୋଟା ।(ମାମଲା ତୁଟିଲା)

ଏହା ବ୍ୟତୀତ ଗାଳ୍ପିକଙ୍କର ଅଧିକାଂଶ ଗଳ୍ପରେ ନୀତିଶିକ୍ଷା ପ୍ରଦାନ କରାଯାଇଥିବା ଦେଖାଯାଏ । ଯାହାଦ୍ୱାରା ଶିଶୁ ନିଜର ଚରିତ୍ର ଗଠନ କରିବା ପାଇଁ ଉପଯୁକ୍ତ ପ୍ରେରଣା ପାଇବାରେ ।

୧) ଉପକାରୀ ଜୀବକୁ ବୁଢ଼ା ହେଲେବି ଅନାଦର କରିବା ଠିକ୍ ନୁହେଁ

(ନଣ୍ଡା ମାଉସିଙ୍କ ପଣ୍ଡା)

୨) ଭଲ ମଣିଷଙ୍କ ସଂପର୍କରେ ଆସିଲେ ମନ୍ଦ ପ୍ରକୃତିର ଲୋକବି ଭଲ ହୋଇଥାଏ ।

(ବାବା ଶୀତଳ ଦାସ)

୩) ଯେ କୌଣସି କାମ କରିବା ପୂର୍ବରୁ ଭଲ ଠିକ୍ ବରାବର ଭାବିଚିନ୍ତି କର ।

(ଚିଲ, ବେଙ୍ଗ ମୂଷା)

ଗାଳ୍ପିକଙ୍କର କେତେକ ଗଳ୍ପରେ ମୌଖିକ ଶିଶୁ ଗଳ୍ପର ପ୍ରଭାବ ପଡିଥିବା ମଧ୍ୟ ଦେଖାଯାଏ । ଉଦାହରଣ ଭାବେ "ସିଙ୍ଗି ମାଛ ହେଲା ପୁରୁଷ ସିଂହ "ଗଳ୍ପରୁ ଗ୍ରହଣ କରାଯାଇପାରେ - ଉକ୍ତ ଗଳ୍ପର ବିଷୟ ବସ୍ତୁ ଭାଷା ଓ ଭାବ ଆଦି ମୌଖିକ ଗଳ୍ପ

ପରି ପ୍ରତୀୟମାନ ହୁଏ । ଉଦାହରଣ ଭାବେ ଗଳ୍ପର କେତେକ ଅଂଶକୁ ଗ୍ରହଣ କରାଯାଇପାରେ-" ଦିନେ କଣ ହୋଇଛି ନା ସିଙ୍ଗି ନିଜ ଖୋଳପାକୁ ତୁଠରେ ରଖି ନଈକୁ ଗାଧୋଇ ଯାଇଛି । କେଡେ ସୁନ୍ଦର ଯୁବକ ଟିଏ । ଦେଖିଲେ ଆଖି ଝଲସି ଯିବ । କେଉଟ ଝିଅ ତ ଛପି ରହିଥିଲା, ସେ ଖୋଳପାଟିକୁ ନେଇ ନିଆଁରେ ପକାଇଦେଲା । ଏଥର ସିଙ୍ଗି ଆଉ ଯାଏ କୁଆଡେ ? ସୁସ୍ଥ, ସବଳ ଓ ସୁନ୍ଦର ଯୁବକଟିଏ ହୋଇ ମହା ଆନନ୍ଦରେ ନିଜ ଘରଣୀ ସହ କାଳ କାଟିଲା । ମୁଁ ଗଲି ଯେ, ମୋତେ ପାନ ଖଣ୍ଡ ବି ଦେଲେ ନାହିଁ । " ତାଙ୍କ କବିତାର ଭାଷା ମଧ୍ୟ ଆହୁରି ମନଛୁଆଁ-ପାହାଡି ଝରଣା ପରି ଛଳଛଳ ଓ ଚଳଚଂଚଳ । କୌଣସି ଠାରେ କର୍କଶତା କି ଚିନ୍ତାର କ୍ଲିଷ୍ଟତା ଥିବାର ଦେଖାଯାଏ ନାହିଁ । ଯଥା -

"ରାଗିଯାଇ ମିଛେ ଯଦି ମୁଣ୍ଡ ହୁଏ ଗରମ
ମିଠା ମିଠା କଥା କହି ମନ କର ନରମ
ଜଣା ଅଜଣାରେ ଯଦି ହୋଇଯାଏ ଭରମ
ସୁଧାରି ନିଅ ସହଜେ ମନ କରି ନରମ ।।"

ଶିଶୁର ଧ୍ୱନ୍ୟାତ୍ମକ ଶବ୍ଦ ପ୍ରତି ମଧ୍ୟ ଅଧିକ ଦୁର୍ବଳତା ଥାଏ । କବିଙ୍କର ଅଧିକାଂଶ କବିତାରେ ଧ୍ୱନ୍ୟାତ୍ମକ ଶବ୍ଦର ବହୁଳ ବ୍ୟବହାର ପରିଲକ୍ଷିତ ହୁଏ ।

"କୁଡୁମୁଡୁ ଖାଅ ଚିନାବାଦାମ ଖସ ଖସ ଖାଅ ମୁଢି
ରସମସ ଖାଅ କଷି କାକୁଡି ଝୁରି ଭଜା ଝୁରି ଝୁରି ।।"

ଏହା ବ୍ୟତୀତ ନନ୍ଦକିଶୋର ସିଂହଙ୍କ ଟାଟାଟା କବିତା ପୁସ୍ତକଟି ଆନନ୍ଦ ଦାୟକ ହେବା ସହିତ ହୃଦ୍ୟ, ସାବଲୀଳ ଓ ଶିଶୁ ମନଛୁଆଁ । କବିତା ଗୁଡିକର ଶୀର୍ଷକରେ ଯାଦୁକରି ଶବ୍ଦ ସଂଯୋଜନା ଶିଶୁ ମନରେ ସମ୍ମୋହନ ଭାବ ସୃଷ୍ଟିକରେ । ଯଥା- ଛିକାଛିକି , ଟଣାଟଣି, ଦେଖାଦେଖି, ଶିଖାଶିଖି, ମିଶାମିଶି, ହସାହସି, ପାଲିସି,ମାଲିସି । ଉକ୍ତ କବିତା ଗୁଡିକରେ ହସ ଓ ନୀତି କଥା ଭରପୂର ହୋଇ ରହିବା ସହିତ ମୋଟାମୋଟି ଭାବରେ ତାଙ୍କ ଶିଶୁ କବିତା ଗୁଡିକରେ ମୁଖ୍ୟତଃ ଶିଶୁ ମାନଙ୍କ ପାଇଁ ଭରପୂର ମନୋରଂଜନର ଖୋରାକ ରହିବା ସହିତ ବୈଜ୍ଞାନିକ ତଥ୍ୟ ତଥା ବିଭିନ୍ନ ବିଷୟରେ ଧାରଣା ଦେବା ପାଇଁ ଉଦ୍ୟମ କରାଯାଇଛି । ଗଳ୍ପ ଓ କବିତା ପୁସ୍ତକ ବ୍ୟତୀତ ଶ୍ରୀଯୁକ୍ତ ସିଂହ ପିଲାଙ୍କ ପାଇଁ "ସବୁ ମଣିଷ ସମାନ" ଓ "ଗୁରୁ ଦକ୍ଷିଣା" ନାମରେ ଦୁଇଟି ନାଟକ ରଚନା କରି ଶିଶୁ ମନରେ ଗଭୀର ପ୍ରଭାବ ପକାଇଛନ୍ତି । ପ୍ରଥମ ନାଟକରେ ମଣିଷ ସମାଜରେ ରହିଥିବା ଭେଦଭାବ ଦୂର କରିବା ପାଇଁ ଯତ୍ନ କରାଯାଇଥିବା

ବେଳେ ଗୁରୁ ଦକ୍ଷିଣାରେ ଶିଷ୍ୟର ଗୁରୁ ପ୍ରତି କର୍ତ୍ତବ୍ୟ ସଂପର୍କରେ ଆଲୋକପାତ କରାଯାଇଛି । ଏତଦ୍ ଭିନ୍ନ ଶ୍ରୀଯୁକ୍ତ ସିଂହ ୧୯୬୨ ମସିହାରୁ ଆକାଶବାଣୀ ସହିତ ସଂପୃକ୍ତ ଅଛନ୍ତି । ଆକାଶବାଣୀ କଟକର ପ୍ରାଥମିକ ବିଦ୍ୟାଳୟ କାର୍ଯ୍ୟକ୍ରମରେ ତାଙ୍କର ଶତାଧିକ ନାଟିକା ରୂପକ, ଗଳ୍ପ ଓ କବିତା ପ୍ରଚାରିତ ହୋଇ ଶିଶୁମାନଙ୍କ ଦ୍ୱାରା ଆଦୃତ ହୋଇଛି । ତାଙ୍କ ନାଟିକା ମାନଙ୍କ ମଧ୍ୟରେ ଟିପୁ ସୁଲତାନ, ଛଅ ବୋକା, ମୋଗଲାଇ ପରଟା ଓ ପ୍ରକୃତ ବଂଧୁ, ବିଚାର ବିଗିଡିଗଲା, ଅଖିଳ ଭାରତୀୟ ରୋଗ ସମ୍ମିଳନୀ, ଶୀତ ମାଉସୀ ଓ ବାରମାସଙ୍କ ଝଗଡା ଆଦି ଖୁବ୍ ଶିଶୁପ୍ରିୟ ହୋଇପାରିଛି । ଉପରୋକ୍ତ ନାଟକ ଓ ରୂପକ ମାଧ୍ୟମରେ ଶିଶୁମାନଙ୍କ ମନରେ ବିଜ୍ଞାନ ତଥ୍ୟ ଭିତ୍ତିକ କୌତୂହଳ ବୃଦ୍ଧି ସହିତ ଶିଶୁର ମନୋରଂଜନ କରିବା ପାଇଁ ପ୍ରୟାସ କରାଯାଇଛି ।

**ଶେଷ କଥା :**

ଉପଯୁକ୍ତ ଆଲୋଚନାରୁ ଜଣାଯାଏ ଯେ ନନ୍ଦକିଶୋରଙ୍କର ପ୍ରତ୍ୟେକ ରଚନା ଶିଶୁମନସ୍ତତ୍ତ୍ୱ ଉପରେ ପର୍ଯ୍ୟବେସିତ । ତାଙ୍କର ପ୍ରତ୍ୟେକଟି ରଚନା ପୂର୍ବ ରଚନା ଠାରୁ ସ୍ୱାତନ୍ତ୍ର୍ୟ ଓ ପ୍ରଭାବଶାଳୀ । ଶିଶୁର ସଦା ପରିବର୍ତ୍ତନଶୀଳ ମନକୁ ସ୍ଥିର କରିବା, ପାଇଁ ଗଳ୍ପର କଥନଧର୍ମିତା ଓ ଗୀତର ଗାନ ଧର୍ମିତା ଅନେକ ସାହାଯ୍ୟ କରିଥାଏ । ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଥିଲେହେଁ ଶିଶୁ ଗଳ୍ପ ଓ ଶିଶୁ କବିତା କ୍ଷେତ୍ରରେ ସେ ଅଧିକ ସଫଳତା ଲାଭ କରିଛନ୍ତି । ମୌଖିକ ଗଳ୍ପ ପରଂପରାର କଥକ ବା କଥା ସାଗର ପରି ଗାଳ୍ପିକଙ୍କର ଗଳ୍ପ ଗୁଡିକର କଥନ ଧର୍ମିତା ଶିଶୁ ମାନଙ୍କୁ ତାଙ୍କ ଗଳ୍ପ ପାଠ ପାଇଁ ଆକର୍ଷିତ କରିଥାଏ । ତାଙ୍କ ପ୍ରକାଶିତ ପୁସ୍ତକ ଗୁଡିକର ନାମକରଣରେ କାବ୍ୟ କବିତା, ବିଷୟ ବସ୍ତୁରେ ନୂତନତା ସହିତ ଅଙ୍ଗ ସଜ୍ଜାରେ ଶିଶୁ ଚିତ୍ତ ଆକର୍ଷଣ କାରୀ ଚିତ୍ର ପ୍ରଦାନ ହେତୁ ସେଗୁଡିକ ଶିଶୁ ମାନଙ୍କର ଅତି ପ୍ରିୟ । ଏହି ଧାରା ପାଇଁ ସେ ନିଶ୍ଚୟ ଶିଶୁ ମାନଙ୍କର ଜଣେ ପ୍ରିୟ ଲେଖକ ଭାବରେ ପରିଚିତ ହୋଇ ଅଗଣିତ ଶିଶୁ ହୃଦୟରେ ସ୍ଥାନ ପାଇପାରିଛନ୍ତି । ଶିଶୁ ମନୋବିଜ୍ଞାନ ସମର୍ଥିତ ଉପାଦାନକୁ ନେଇ ତାଙ୍କର ଗଳ୍ପ ଗୁଡିକ ରଚିତ ହୋଇଥିବାରୁ, ଶିଶୁର ଭବିଷ୍ୟତ ଗଠନ ପାଇଁ ସେଥିରୁ ଅନେକ ପ୍ରେରଣା ମିଳିଥାଏ ।

ପ୍ରସ୍ତୁତି- ସହକାର ଏପ୍ରିଲ୍ -୨୦୦୫



# ବସନ୍ତ ଲେଖୁଛି ଚିଠି ଗୋଲାପୀ ଗୋଲାପୀ

ଯୌବନର ଦ୍ୱିତୀୟ ପାହାଚରେ ଦିନେ କବି ଶ୍ରୀଯୁକ୍ତ ନନ୍ଦକିଶୋର ସିଂହ ପ୍ରୀତି ରଙ୍ଗ ବସନ୍ତର ଗୋଲାପୀ ଭାଷାଟିଏ ପାଇ ଅପୂର୍ବ ପୁଲକରେ ନିଜେ ବିସ୍ମୟ ଚକିତ ହେବା ସଂଗେ ସଂଗେ ମଳୟର ସୁନେଲି ଡେଣାନେ ସେ ବାର୍ତ୍ତାକୁ ଖଞ୍ଜିଦେଇ ରାଜ୍ୟର ପ୍ରତ୍ୟେକଟି ପ୍ରଣୟୀ ହୃଦୟରେ ବାସନ୍ତୀ ମୂର୍ଚ୍ଛନା ସୃଷ୍ଟି କରିବାରେ ସକ୍ଷମ ହୋଇଥିଲେ । ସେଦିନ ମନ୍ତ୍ରମୁଗ୍ଧ ହୋଇଥିଲା ଅଗଣିତ ଉରସ ମାନସଭୂମି । ସତେ ଯେମିତି ମନର ବାତାୟତନରେ ଉଙ୍କି ମାରୁଥିଲା ଆନମନା ଦ୍ୱିତୀୟା ଜହ୍ନ । ଅକଳନ ଭାବ ସମୁଦ୍ରର ନୀଳ ଜଳ ବେଣୀରେ ଦିଗ୍‌ବଳୟ ଆଡୁ ଢଳି ଢଳି ଆସୁଥିଲା ଶବ୍ଦର କୁନି ବୋଇତଟିଏ ଅନନ୍ୟ କବିତ୍ୱର ଦଣ୍ଡାବିଇ୍ ଧରି । ଜୀବନର ଅପରାହ୍ଣରେ କବିଙ୍କ ବୟସ ଭାଣ୍ଡାରୁ ହଜିଯାଇଛି ବସନ୍ତ । ନୀରବେଗ ଯାଇଛି ମଧୁହିଲ୍ଲୋଳ । ମାତ୍ର ଅସୁମାରୀ ଭାବତରଙ୍ଗ ଚିରଦିନ କବିଙ୍କ ହୃଦୟ ବେଳାରେ ମଥାପିଟି ଜୀବନ ଭିକ୍ଷା କରିଛି । ରାତିଦିନ କବିଙ୍କ ଲେଖନୀକୁ ବ୍ୟସ୍ତ ବିବ୍ରତ କରିଛି କି ବେଦନା ବିଧୂର ଆଶୀର୍ବାଦ ସେ, ଯାହା ତାଙ୍କୁ ସାହିତ୍ୟ ଦରବାରରେ ଜଣେ ଏକାଙ୍ଗ ସମ୍ରାଟ ଭାବରେ ପରିଚିତ କରାଇଦେଇଛି ।

ପଙ୍କଜିନୀର ଜନ୍ମ ରହସ୍ୟ ପରି ଏହି ବାଣୀବର ପୁତ୍ର ନନ୍ଦକିଶୋର ୧୯୪୨ ମସିହା ମଇ ମାସ ୧୫ତାରିଖରେ ପିତା ରାଜକିଶୋର ସିଂହଙ୍କ ଔରସରୁ ଓ ମାଆ ରୂପାଙ୍କ ଗର୍ଭରୁ ଯାଜପୁର ଜିଲ୍ଲା ଅନ୍ତର୍ଗତ ଅଖ୍ୟାତ ଅଶ୍ରୁତ କୋରାଇ ଗ୍ରାମରେ ଜନ୍ମଗ୍ରହଣ କରି ନିଜର ପ୍ରତିଭା ଓ ବ୍ୟକ୍ତିତ୍ୱର ବିକାଶରେ ଏ ମାଟିକୁ ଧନ୍ୟ କରିଛନ୍ତି । ମାନବିକତାର ଦେଦୀପ୍ୟ ରୁଦ୍ରାକ୍ଷ ଧାରଣ କରି ବ୍ୟକ୍ତିଗତ ଜୀବନଠାରୁ ସାରସ୍ୱତ ଜୀବନ ପର୍ଯ୍ୟନ୍ତ ନିଜକୁ ସତ୍ୟ ନ୍ୟାୟ, ସ୍ନେହ ଓ ପ୍ରେମର ପିଚ୍ଛିଳ ପାହାଚରେ ଅବସ୍ଥାପିତ କରାଇ ପାରିଛନ୍ତି । ରାଜ୍ୟ ସରକାରଙ୍କର ଶିକ୍ଷା ସେବା (ଓ.ଇ.ଏସ୍-୨)ରୁ ଅବସର ଗ୍ରହଣ କଲାପରେ ଏବେ ସଂପୂର୍ଣ୍ଣ ଭାବରେ ସେ ନିଜକୁ ସାରସ୍ୱତ ସାଧନାରେ ବ୍ରତୀ କରାଇଅଛନ୍ତି । ତାଙ୍କର ବହୁମୁଖୀ ପ୍ରତିଭାର ସ୍ୱରୂପ ନିର୍ଦ୍ଧାରଣ କରିବା ପ୍ରାବନ୍ଧିକ ପାଇଁ ଏକ ଦୁରୂହ ବ୍ୟାପାର ନିଶ୍ଚୟ । ସାହିତ୍ୟର ଯେକୌଣସି ଶାଖା ପ୍ରଶାଖାକୁ ନିରୀକ୍ଷଣ କଲେ ସର୍ବତ୍ର ଶ୍ରୀଯୁକ୍ତ ସିଂହଙ୍କର ସବୁଜ ସ୍ୱାକ୍ଷର ବାରି ହୋଇଯାଏ । କଥାରେ ଅଛି ସାଧନା, ପ୍ରତିଭା ଓ ବିଦ୍‌ବତ୍ତା ବଳରେ ଯୋଗୀ ବ୍ରହ୍ମର୍ଷିରେ ପରିଣତ ହୋଇଯାଏ । ସେହିପରି କବିଙ୍କର ପ୍ରତିଭା ଅଧ୍ୟୟନ ଓ ଏକାଗ୍ରତା ତାଙ୍କୁ ସାହିତ୍ୟର ପ୍ରତ୍ୟେକଟି ବିଭାଗରେ ସଫଳତା ଆଣିଦେଇଛି । ତେଣୁ ତାଙ୍କ ବହୁବିଧ ସାରସ୍ୱତ ସାଧନାକୁ ଆଲୋଚନାର ପ୍ରାଞ୍ଜଳତା ଦୃଷ୍ଟିରୁ ନିମ୍ନମତେ ବିଚାର କରାଯାଇପାରେ ।

ଗୀତିକାର ନନ୍ଦକିଶୋର ସିଂହ :-

ଗୀତି କବିତା ହିଁ ଶ୍ରୀଯୁକ୍ତ ସିଂହଙ୍କର ସର୍ବଶ୍ରେଷ୍ଠ ସାରସ୍ୱତ କୃତିତ୍ୱ । ଓଡିଶାର ଜନପଦ ଠାରୁ ସହର ପର୍ଯ୍ୟନ୍ତ ତାଙ୍କର ଗୀତିଝଙ୍କାର ଶ୍ରୋତା ହୃଦୟରେ ଗଭୀର ରେଖାପାତ କରିଥାଏ । ବେତାର, ଦୂରଦର୍ଶନ, ମଞ୍ଚ ଓ ଚଳଚିତ୍ର ମାନଙ୍କରେ ତାଙ୍କ ରଚିତ ସଂଗୀତ ଗୁଡିକ ଯେ ଅତ୍ୟନ୍ତ ଭାବ ଗର୍ଭକ ଓ ହୃଦୟସ୍ପର୍ଷୀ, ଏଥିରେ ଦ୍ୱିମତ ହେବାର ନାହିଁ । ସଂପ୍ରତି ଉତ୍କଳରେ ପ୍ରଥମ ପିଢୀ ବା ଆଗ ଧାଡିରେ ଥିବା ଗୀତି କବିଙ୍କ ମଧ୍ୟରୁ ସେ ଜଣେ । ସେଥିପାଇଁ ସେ ବହୁବାର ରାଜ୍ୟ ସ୍ତରରେ ପୁରସ୍କୃତ ଓ ସମ୍ମାନୀତ ହୋଇଛନ୍ତି । ତଥାପି ତାଙ୍କର ଅସଂଖ୍ୟଭକ୍ତି ସଂଗୀତ ମାନଙ୍କରେ ସର୍ବମୟ କର୍ତ୍ତାଙ୍କ ନିକଟରେ ଅନ୍ତରର ଭକ୍ତି ନୈବେଦ୍ୟ ଅର୍ପଣ ପୂର୍ବକ ଅନ୍ତରର ବେଦନାବୋଧକୁ ଉପସ୍ଥାପିତ କରିଛନ୍ତି-

"ତୁମେ ସରଜିଛ ଆକାଶ ନୀଳିମା
ଘନ ବନାନୀର ଚିର ସବୁଜିମା
ତୁମେ ଯେବେ ହେଲ ନବୀନ ବରଣ
ମୋତେ କିଆଁ କଲ ତୁମରି ସୃଷ୍ଟିରେ
ମରୁ ହାହାକାର ସମ
ହେ ନବୀନ ନୀରଦ ଶ୍ୟାମ"-

(ନ.କି.ଗୀ.ବି)

ଧୂଳି ଧୂଷରିତ ପଲ୍ଲୀ ଭୂଇଁର ରୂପମାୟା ମଧ୍ୟରେ କବିଙ୍କର ବାଲ୍ୟ, କୈଶୋର ଓ ଯୌବନ ଅତିକ୍ରାନ୍ତ । ଗାଁ ମାଟିର ସଂଜ ସକାଳ, ପ୍ରୀତି ପାର୍ବଣ ସବୁ ଅନେକ ସମୟରେ କବିଙ୍କର ଭାବ ସମୁଦ୍ରରେ ସ୍ମୃତିର ଉର୍ମି ହୋଇ ନାଚି ନାଚି ଯାଇଛି । ଅହେତୁକ ଆକୁଳତା ନେଇ ସେହି ସ୍ମୃତି ବିଧୂର ଅନୁଭବ ମାନଙ୍କୁ ମୋତି ମାଳା ପରି ସଜେଇ ଦେଇଛନ୍ତି ତାଙ୍କର ଗୀତିକବିତା ମାନଙ୍କରେ । ତନ୍ମଧ୍ୟରୁ ଗୋଟିଏ ବହୁ ଚର୍ଚ୍ଚିତ ପଲ୍ଲୀ ଗୀତିକାକୁ ଉପସ୍ଥାପନ କରାଯାଇପାରେ -

"ମହୁଆ ଭାବି ମୋତେ ମହୁଲୋଭ ଦେଖାଉ ଲୋ
ମୁଁ ତ କଣ୍ଟାରେ ରହିବା ବାଲା ।
ଶୋଷିଲା ଭାବି ମୋତେ ପାଣିଲୋଭ ଦେଖାଉଲୋ
ମୁଁତ ଧୂଳିରେ ରହିବା ବାଲା
-ମହୁଆ ଭାବି ମୋତେ"

(ନ.କି.ଗୀ.ବି)

କଥପୋକଥନ ଢଙ୍ଗରେ ଭାବ ଲାଳିତ୍ୟକୁ ଗାଁ ଭୁଆଷୁଣୀ ମୁଖର ଶବ୍ଦରେ ସଜେଇ ଦେଇଛନ୍ତି କବି । ପ୍ରତ୍ୟେକଟି ପଲ୍ଲୀ ଗୀତିକାରେ ଯେମିତି ତାଙ୍କର କବିମନ ଦୋଳି ଖେଳିଛି ଗାଁ ମୁଣ୍ଡ ବର ଓହଳରେ, ପୁଣି କେତେବେଳେ କବିଙ୍କ ଆଖରେ ନାଚି ଯାଇଛି ଦିଅର -ଭାଉଜ ମଧ୍ୟରେ ଚାହିଁଚାପରା, ଯାହା ନିହାତି ଆପଣାର ପରି ମନେହୁଏ । ଏଗୁଡିକୁ ଶୁଣିବା ମାତ୍ରେ ମନ ଧାଇଁଯାଏ ସୁଦୂର ଗାଁର ଭିଟାମାଟିକୁ । ଯେଉଁ ମାଟିରେ କେବଳ ଐକାନ୍ତିକ ଭଲପାଇବା ହିଁ ସମସ୍ତଙ୍କୁ ଗୋଟିଏ ସୂତ୍ରରେ ଛନ୍ଦି ଦେଇଥାଏ । ଜନ୍ମରୁ ମରଣ ଯାଏ । ଚଢ ଚଂଚଳ ନୂଆ ବୋହୂଟିଏ ତାର କଅଁଳ ହାତରେ ଗୁଆ କାଟୁ କାଟୁ ହାତ କାଟି ବସିଛି । ତେଣୁ ଛନଛନିଆ ମନରେ କୁନି ଦିଅର ପ୍ରତି ରୋଷ ପରିବର୍ତ୍ତେ ଗେହ୍ଲେଇ କହୁଛି-

"ପାନ ଭାଙ୍ଗିବାକୁ ଗୁଆ କାଟୁ କାଟୁ ହାତ ମୁଁ ବସିଲି କାଟି
ଆଉ ପାଙ୍କି ହାତୁ କଷି ଦିଅର ମୋ ଆଣିଥିଲେ ପରା
ଶାଣ ଦେଇ ଖ୍ଲିକାତି ।"

-ପାନ ଭାଙ୍ଗିବାକୁ ଗୁଆ-

ବେଳେ ବେଳେ କବିଙ୍କର ଚିନ୍ତା ଚେତନା ସୀମିତ ଅନୁଭବ ମଧ୍ୟରେ ସନ୍ତୁଷ୍ଟ ନହୋଇ ଏକାକାର ହୋଇଯାଉଛି ଜାତୀୟ ଜୀବନ ସ୍ରୋତରେ । ସାଂପ୍ରଦାୟୀକ ଅସୂୟାଭାବ ପାଇଁ ତାଙ୍କ ମନରେ ଗଭୀର ଆଲୋଡନ । ତେଣୁ ସବୁ ଧର୍ମର ସମାନତା ଓ ମହନୀୟତାକୁ ପ୍ରକାଶ କରି ସମସ୍ତଙ୍କୁ ଭ୍ରାତୃତ୍ବର ବନ୍ଧନରେ ବାନ୍ଧି ରଖିବାର ପ୍ରଯତ୍ନକରି ଗାଇ ଉଠିଛନ୍ତି -

"ପ୍ରତି ପ୍ରଭାତରେ ମନ୍ଦିରେ ଯେବେ
ବାଜିଉଠେ ଶଂଖଧ୍ଵନି
ମସଜିଦ୍ ଚୂଳେ ମଲ୍ଲାର ଡାକ
ଦିଏ ତାର ପ୍ରତିଧ୍ଵନି
ରାମ୍-ରହିମ, ଈଶ୍ବର ଆଲ୍ଲା
ଯୀଶୁନାମେ ଶୁଭେ ଗୀତ
ସାଗର ବେଳାରେ ଖୋଜିମୁଁ ପାଇଛି
ଯେତୋଟି ପାଦର ଚିହ୍ନ
ପ୍ରତି ପଦଚିହ୍ନ କହିଯାଏ ମୋତେ
ଏଦେଶ ଯେ ମହୀୟାନ ।।"

-ସାଗର ବେଳାରେ

ଇନ୍ଦ୍ରଧନୁର ରଙ୍ଗ ବିଭାପରି କବିଙ୍କ ଗୀତିକବିତା ସଂସାର ବିଚିତ୍ର ବର୍ଣ୍ଣା । କବିଙ୍କ ଚିନ୍ତାରେ ବେଳେ ବେଳେ ଲହରେଇଯାଇଛି ଫଗୁଣର ଗୀତିମୂର୍ଚ୍ଛନା କି ମୁଗ୍ଧ ଅନୁଭବ ସେ !

ପ୍ରେମର ଅମୀୟ ବିଭୂତି ହୃଦୟରେ ଧାରଣ କରି ପ୍ରଣୟୀ ପ୍ରଣୟିନୀ ଧୂଳିମଳି ସଂସାରକୁ ସ୍ୱର୍ଗରେ ପରିଣତ କରିପାରନ୍ତି । ସେହି ସ୍ୱର୍ଗୀୟ ମାଧୁରିମାକୁ ସେ "ବସନ୍ତ ଲେଖିଛି ଚିଠି " ରେ ଅତି ନିଖୁଣ ଭାବରେ ଆଙ୍କି ପାରିଛନ୍ତି । ଚିଠିଟିଏ ପାଇବାରେ କି ଅହେତୁକ ଆକୁଳତା ଥାଏ । ତାକୁ ଅନୁଭବି ହିଁ କେବଳ ଅନୁଭବ କରିପାରେ । ଚିଠିତ 'ଜୀବନ' ପ୍ରେମିକ -ପ୍ରେମିକାଙ୍କ ପାଇଁ ପୃଥିବୀର ସବୁଠାରୁ ଦୁର୍ମୂଲ୍ୟ । ସତେ ଯେମିତି ହୃଦୟଟିଏ ଧାଇଁ ଯାଉଥାଏ ଆଉ ଗୋଟିଏ ହୃଦୟରେ ଏକାକାର ହୋଇଯିବାକୁ । ସେହି ଅନୁଭବକୁ କବି ଅତି ନିଖୁଣ ଭାବରେ ଅନୁଭବ କରିଛନ୍ତି -

" ଚିଠିର ପହିଲି ଧାଡି ପ୍ରିୟତମା ମୋର
ଚିଠି ନୁହଁ ତୁମ ପାଇଁ ପ୍ରୀତି ଉପହାର
ଅସରନ୍ତି କଥା ଏଣୁ ଲେଖୁନି ମୁଁ ଇତି
ଲେଖଉନି ମୁଁ ଇତି ।
ବସନ୍ତ ଲେଖିଛି ଚିଠି ଗୋଲାପୀ ଗୋଲାପୀ"

-ବସନ୍ତ ଲେଖିଛି ଚିଠି-

ଏହି କ୍ରମରେ କବିଙ୍କର ଏମିତି କବିତା ଗୁଡିକୁ ଆଲୋଚନା କରାଯାଇପାରେ । ଶହ ଶହ ସଂଖ୍ୟାରେ ଗୀତିକବିତା ରଚନା କରି କବି ନିଜକୁ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା ଭାବରେ ପ୍ରତିଷ୍ଠିତ କରାଇବା ସଂଗେ ସଂଗେ ଓଡିଶାର କୋଣେ ଅନୁକୋଣେ ପରିଚିତ କରାଇପାରିଛନ୍ତି । ବହୁବାର ବେତାର ଚଳଚ୍ଚିତ୍ର ମଞ୍ଚ ଓ ଦୂରଦର୍ଶନ ପାଇଁ ଗୀତିକବିତା ରଚନା କରି ଜଣେ ସ୍ୱୟଂ ସିଦ୍ଧସ୍ରଷ୍ଟା ପୁରୁଷ ଭାବରେ ଏ ମାଟିକୁ ତଥା ବିଶେଷ କରି ଏ ଅଞ୍ଚଳକୁ ଧନ୍ୟ କରିଛନ୍ତି । ପୁରସ୍କାର ବିମୁଖ ଏହି ନିର୍ଲିପ୍ତ ବ୍ୟକ୍ତିତ୍ୱଙ୍କ ପଦଦେଶରେ ଛାଏଁ ଛାଏଁ ବହୁ ରାଜ୍ୟସ୍ତରୀୟ ପୁରସ୍କାର ସ୍ଥାନ ଖୋଜିଛି । କବିଙ୍କର "ଗୀତିଗୁଚ୍ଛ", "ଗୀତି ଓ ଗଜଲ୍ ", "ଇବ୍ରାବତୀ ନଦୀ", "ନନ୍ଦକିଶୋର ଗୀତିବିଚିତ୍ରା" ପ୍ରଭୃତି ଗୀତିକବିତା ଓ "ପ୍ରୀତି-ପ୍ରିୟା-ପୃଥିବୀ", "ଆବୃତ ଅନାବୃତ" ଆଦି କବିତା ସଂକଳନ ସବୁ ଅଧ୍ୟୟନ କଲେ ତାଙ୍କର ସୃଷ୍ଟି ବୈଚିତ୍ର୍ୟ ସଂପର୍କରେ ଅବଗତ ହେବାର ସମ୍ଭାବନା ଥାଏ ।

### ନାଟ୍ୟକାର ନନ୍ଦକିଶୋର ସିଂହ:-

ନନ୍ଦକିଶୋରଙ୍କର ନାଟ୍ୟ ସଂସାର ମଧ୍ୟ ଅନୁରୂପ ଭାବରେ ପରିବ୍ୟାପ୍ତ । କଥାରେ ଅଛି "A Jack of all trades, master of none" ମାତ୍ର ସ୍ରଷ୍ଟା ନନ୍ଦକିଶୋରଙ୍କ ସାରସ୍ୱତ ସୃଷ୍ଟିସମ୍ଭାରକୁ ଅନୁଧ୍ୟାନ କଲେ, ଏହି ପ୍ରବାଦ ସଂପୂର୍ଣ୍ଣ ଭ୍ରମାତ୍ମକ ବୋଲି ଉପଲବ୍ଧି କରିହୁଏ । ଗ୍ରୀକ୍ କାହାଣୀ " Midas Touch" ରେ ଯେପରି Midas

ଯାହାକୁ ଛୁଇଁଦେଉଥିଲା ତାହା ସୁବର୍ଣ୍ଣ ପାଲଟିଯାଉଥିଲା । ଠିକ୍ ସେହିପରି ନନ୍ଦକିଶୋରଙ୍କ ଲେଖନୀ ସାହିତ୍ୟର ଯେଉଁ ବିଭାଗକୁ ସ୍ପର୍ଶ କରଛି, ତାହା ଅପୂର୍ବ ସଫଳତା ଲାଭ କରିଛି । ସବୁ ଯାକ ସୃଷ୍ଟି ଯେପରି ତାଙ୍କ ପ୍ରତିଭାର ମାୟା କୁହୁଡିରେ ଅନନ୍ୟ ହୋଇ ଉଠିଛି । ସେହି ନ୍ୟାୟରେ ବିଚାରକଲେ ଜଣାଯାଏ ଯେ ଶ୍ରୀଯୁକ୍ତ ସିଂହ ଜଣେ ସଫଳ ନାଟ୍ୟକାର । ପ୍ରାୟ ୩୦ରୁ ଉର୍ଦ୍ଧ୍ୱ ବେତାର ନାଟକ ପ୍ରଚାରିତ ହୋଇ ବେତାର ନାଟ୍ୟ ଜଗତରେ ତାଙ୍କୁ ଅନନ୍ୟ ସ୍ରଷ୍ଟାର ଆସନରେ ବିଭୂଷିତ କରିଛି । ଏତଦ୍‌ଭିନ୍ନ ଦୂରଦର୍ଶନରେ "ବେଙ୍ଗ କହେ ବେଙ୍ଗୁଲିଲୋ" ପରି ତାଙ୍କର ଧାରାବାହିକ ପ୍ରଚାରିତ ହୋଇ ତାଙ୍କୁ ଜନଦରବାରରେ ବହୁ ଭାବରେ ପରିଚିତ କରାଇଛି । ପ୍ରକାଶିତ ନାଟକ ମାନଙ୍କ ମଧ୍ୟରୁ ସାମାଜିକ ନାଟକ 'ଲହୁ-ଲୁହ', ବିଜ୍ଞାନ ଭିତ୍ତିକ ନାଟକ 'ମାନସୀ ଗବେଷଣାଗାର', ଐତିହାସିକ ନାଟକ 'ଚାଣକ୍ୟ', ପୌରାଣିକ ନାଟକ 'ଗୁରୁ ଦକ୍ଷିଣା', 'ତିନୋଟି ଗୀତିନାଟ୍ୟ', କାଳ୍ପନିକ ନାଟକ 'ଆହତ ପୌରୁଷ', 'ଅଜାଙ୍କ ବୈଠକ ଖାନା', ରାଜନୈତିକ ବ୍ୟଙ୍ଗ ଭିତ୍ତିକ ନାଟକ 'ପ୍ରିୟବାବୁ', 'ଷଢ଼ବିକାଳ' ପ୍ରଭୃତି ନାଟକ ମାନ ତାଙ୍କୁ ଓଡିଆ ନାଟ୍ୟ ଜଗତରେ ମଧ୍ୟ ଜଣେ ଏକକ ନାଟ୍ୟକାର ଭାବରେ ସ୍ୱତନ୍ତ୍ର ପ୍ରତିଷ୍ଠା ଆଣିଦେଇଛି ।

**ଶିଶୁ ସାହିତ୍ୟିକ ନନ୍ଦକିଶୋର :-**

ଶ୍ରୀଯୁକ୍ତ ନନ୍ଦକିଶୋର ସିଂହଙ୍କର ବହୁମୁଖୀ ପ୍ରତିଭାର ଅନ୍ୟତମ ବଳିଷ୍ଠ ଦିଗ ହେଉଛି 'ଶିଶୁ ସାହିତ୍ୟ' । ଓଡିଆ ଶିଶୁ ସାହିତ୍ୟକୁ ତାଙ୍କର ଅବଦାନ ଉଭୟ ପରିମାଣ ଓ ଗୁଣାତ୍ମକ ଦୃଷ୍ଟିରୁ ଢେର ବେଶୀ । ସାହିତ୍ୟ ରସିକ ମାନେ ଶିଶୁ ସାହିତ୍ୟରୁ ଏକ ବିମୁଖ ଭାବ ନେଇ ମୁହଁ ଫେରାଇନେଉଥିବା ବେଳେ, ସେ ନିଜକୁ ସେହି ସ୍ରୋତରେ ହଜେଇ ଦେବାରେ ଆନନ୍ଦ ପାଇଛନ୍ତି । କୁନି କୁନି ଆଖିର ନିଷ୍ପାପ ଚାହାଣୀ, ଲାଲ୍ ଟୁକୁ ଟୁକୁ ଓଠର ଅସ୍ପଷ୍ଟ ଭାଷାହିଁ ତାଙ୍କୁ ପୁନେଇ ଜହ୍ନ ଓ ପରୀ ରାଇଜର ସ୍ୱପ୍ନରେ ବିଭୋର କରିଛି । କ୍ଷୀର ପିଠାଖିଆ ମନ ମାନେ ତାଙ୍କୁ ଚାରିପଟେ ବେଢି ଯାଇଛନ୍ତି ଗପ, ରଜଦୋଳି ଗୀତ ଶୁଣିବାକୁ । ଚିର ସ୍ନେହରଙ୍କ ଏଇ ସ୍ରଷ୍ଟା ମନ ବାନ୍ଧି ହୋଇଯାଇଛି ନିଷ୍କପଟ ଶିଶୁ ମନ ପାଖରେ ଏବଂ ଅବିଶ୍ରାନ୍ତ ଭାବରେ ଆଙ୍କି ଚାଲିଛନ୍ତି ପରୀ ରାଇଜର ମାନପତ୍ର । 'ରଙ୍ଗ ବେରଙ୍ଗ', 'ସାବାସ୍ ଟୁଟୁ', ମଜା କାହାଣୀ , 'ଟୁଟୁର ରାଇଜ ଫେରି', 'ଶିଆଳ ଝିଅର ବାହାଘର ', 'ପିଲାଙ୍କ କଥା ସରିତ ସାଗର', 'ଆମ ଗାଁ ହାଟ', 'ଶ୍ରବଣ କୁମାର' 'ମକରା ଖାଇଲା କାକରା', 'କଥାଟିଏ କହୁଁ(ପରୀ କଥା)', 'କଥାଟିଏ କହୁଁ(ପୁରାଣ କଥା', 'ଫେରିବାଲା', 'ରାମକୃଷ୍ଣ ଉପଦେଶାବଳୀ', 'କହଲୋ ମୋତେ ବୋଉ', 'ଏକ ଦୁଇ ତିନ୍ ' ପ୍ରଭୃତି ଶିଶୁ ହୃଦୟ ବ୍ୟଞ୍ଜକ ଗ୍ରନ୍ଥମାନ ରଚନା କରି ଓଡିଆ ଶିଶୁ ସାହିତ୍ୟ ଜଗତର ଜଣେ ଅମଳୀନ ପ୍ରତିଭା ଭାବରେ ନିଜର

ସ୍ଥିତି ବଜାଇ ରଖିପାରିଛନ୍ତି । ନବସାକ୍ଷରମାନଙ୍କ ପାଇଁ "ମୋ ମାଆ ମୋ ଗାଆଁ ", "ସକଳ ଘଟେ ନାରାୟଣ", "ଯେତେ ଦିଅଁ ସେତେ ପୂଜା", "ଜଗ ଜମାଳିରେ ଚାଷବାସ କଥା" ପ୍ରଭୃତି ତାଙ୍କ ସୃଷ୍ଟିର ଅନ୍ୟତମ ସ୍ୱାକ୍ଷର ବହନ କରନ୍ତି ।

ଅନୁବାଦକ ନନ୍ଦକିଶୋର :-

ନନ୍ଦକିଶୋରଙ୍କର ଅନୁବାଦ ସାହିତ୍ୟ ମଧ୍ୟ ପରିବ୍ୟାପ୍ତ । ବିଭିନ୍ନ ଭାଷାର ସାହିତ୍ୟ ଅଧ୍ୟୟନ କରି ତାକୁ ସହଜ ସରଳ ଭାବରେ ଓଡ଼ିଆ ଭାଷାରେ ଅନୁବାଦ କରିବା ତାଙ୍କର ଏକ ନିଶା । ସବୁ ଦୃଷ୍ଟିରୁ ସ୍ୱୟଂ ସିଦ୍ଧ ଯୋଗୀଟିଏ ପରି ସାହିତ୍ୟର କୌଣସିଦିଗକୁ ଛାଡିପାରି ନାହାନ୍ତି । "ସୁଇସ୍ ରବିନ୍‌ସନ୍ ", "ଅରଣ୍ୟର ଆହ୍ୱାନ", "ଘର ଛଡାଉ କାହାଣୀ", "ଉଇଲର କାହାଣୀ" "ମୃଣାଳିନୀ", "ଇନ୍ଦିରା ଓ ଯୁଗଳ ଅଙ୍ଗୁରୀୟ", "କୃଷ୍ଣକାନ୍ତଙ୍କ ଉଇଲ" ପ୍ରଭୃତି ଅନୁବାଦ ସାହିତ୍ୟ ତାଙ୍କର ଅଧ୍ୟୟନ, ବିଦ୍‌ବତ୍ତା ଓ ସ୍ୱାତନ୍ତ୍ର୍ୟତାର ପରିଚୟ ଦେଇଥାନ୍ତି ।

ତାଙ୍କର ସରଳ, ଅମାୟିକ ଓ ସ୍ନେହରଙ୍ଗ ବ୍ୟବହାରରେ ସେ ସମସ୍ତଙ୍କୁ ଛନ୍ଦି ଦିଅନ୍ତି । ଦରଦୀ ମଣିଷ ସେ । ବ୍ୟକ୍ତିଗତ ଜୀବନର ସମସ୍ତ ଦୁଃଖ ଓ ଅବକ୍ଷୟକୁ ଅନ୍ତର ମଧ୍ୟରେ ଚାପିରଖି ମଧୁବର୍ଷୀ ଆଳାପ ଓ ସୌହାର୍ଦ୍ଦ୍ୟରେ ସବୁରି ହୃଦୟକୁ ଜୟକରିପାରନ୍ତି । ସରକାରୀ ଚାକିରୀ କ୍ଷେତ୍ରରେ ଜଣେ ପ୍ରଶାସକ ଭାବରେ କାର୍ଯ୍ୟକରି କେବଳ ଦୁଃଖି ମଣିଷଙ୍କର ପେଟ ଚିହ୍ନିବା ସଂଗେ ସଂଗେ ଅନ୍ୟାୟ ଓ ଅନୀତିକୁ କେବେ ବି ପ୍ରଶୟ ଦେଇନାହାନ୍ତି । ନୀତି ଓ ଆଦର୍ଶରେ ସଦା ବ୍ରତୀ । ଏହି ସ୍ରଷ୍ଟା ମନ ଅବିଚଳିତ ଭାବରେ ପଛକୁ ଫେରି ଚାହିଁ ନାହାନ୍ତି କେବେ । ପ୍ରାଚୁର୍ଯ୍ୟର ପାଚେରୀ ଭିତରେ ରହି ମଧ୍ୟ ସର୍ବଦା ଆଡମ୍ବର ଶୂନ୍ୟ ସରଳ ସନ୍ୟାସୀର ଜୀବନ ଯାପନ କରନ୍ତି । ବହୁ ସମ୍ମାନ ଓ ପୁରସ୍କାର ପ୍ରାପ୍ତ ହୋଇ ମଧ୍ୟ ସେ ଚିର ସ୍ଥିତ ପ୍ରଜ୍ଞ । ପ୍ରଜ୍ଞରେ ସେ ଗଭୀର, ମାତ୍ର ମଣିଷକୁ ଆପଣେଇ ନେବାରେ ନିହାତି ସରଳ ଓ ନମନୀୟ । ସଂପ୍ରତି ସରକାରୀ ଚାକିରୀରୁ ଅବସର ଗ୍ରହଣ କରି ବହୁ ରାଜ୍ୟ ସ୍ତରୀୟ ସାହିତ୍ୟ ଅନୁଷ୍ଠାନ ସହ ଜଡିତ ଅଛନ୍ତି । ସାହିତ୍ୟକୁ ବର୍ତ୍ତମାନର କର୍ମ ଓ ଧର୍ମ ଭାବରେ ଗ୍ରହଣ କରି ସେହି ସେବାରେ ନିଜକୁ ଉତ୍ସର୍ଗ କରିଦେଇଛନ୍ତି । ସାହିତ୍ୟ ହିଁ ତାଙ୍କର ଜୀବନ ଏବଂ ସାହିତ୍ୟ ରସିକଟିଏ ହିଁ ତାର ପରମ ସଖା । ଏହି ସର୍ବ ଗୁଣ ସଂପନ୍ନ ତଥା ସର୍ବଜନ ପ୍ରିୟ ସ୍ରଷ୍ଟା ପୁରୁଷ ନନ୍ଦକିଶୋର ସିଂହ ସଂପ୍ରତି "କୋରାଇ ମଣ୍ଡଳ ସାହିତ୍ୟ ସଂସଦ" ର ସଭାପତି ଭାବରେ କାର୍ଯ୍ୟ କରିବା ସେଂଗେ ସଂଗେ ଏ ଅଞ୍ଚଳରେ ସାହିତ୍ୟର ଅଭିବୃଦ୍ଧି ନିମନ୍ତେ ବୋଲେ ହୁଁଟି ପତ୍ରିକା ସଂପାଦନାରେ ପ୍ରଯତ୍ନ କରିଆସିଛନ୍ତି । ଏହି ଅବସରରେ ଅନୁଷ୍ଠାନ ତରଫରୁ ଏ ଅଞ୍ଚଳର ଗର୍ବ ଓ ଗୌରବ ଶ୍ରୀଯୁକ୍ତ ନନ୍ଦକିଶୋର ସିଂହଙ୍କର ସୁସ୍ଥ ନିରାମୟ ଜୀବନ କାମନା କରୁଅଛୁ ।

'କୋରାଇ ମଣ୍ଡଳ ସାହିତ୍ୟ ସଂସଦ ଦ୍ୱାରା ପ୍ରସ୍ତୁତ '

## କୋରାଇ ମଣ୍ଡଳ ସାହିତ୍ୟ ସଂସଦ
## ମୁଖପତ୍ର କସ୍ତୁରୀ ଯାହା କହନ୍ତି

### ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ.............

ଫୁଲର ସୌଦାଗର ସାଜି ସ୍ୱପ୍ନର ବେଳାଭୂମିରେ ଜୀବନ ଜଂଜାଳର ବିଷକୁ ଆକଣ୍ଠ ପାନ କରି ନୀଳକଣ୍ଠ ସାଜିଥିବା ପ୍ରଥିତଯଶା ଗୀତି କବି ନନ୍ଦକିଶୋର ସେଦିନ ଯାଜପୁର ଜିଲ୍ଲାର ଅଜ୍ଞାତ ଅଶ୍ରୁତ କୋରାଇ ମାଟିରେ ଜନ୍ମ ଗ୍ରହଣ କରି ସମଗ୍ର ଓଡିଶାକୁ କୋରେଇ ଫୁଲର ରଂଗ ମହକରେ ଆମୋଦିତ କରିବା ସଙ୍ଗେ ସଙ୍ଗେ ମଧୁମୟ ବସନ୍ତର ଗୋଲାପୀ ଚିଠିଟି ପଢି ଅଗଣିତ ଶ୍ରୋତା ମାନସରେ ଯେଉଁ ଅମୀୟ ପୁଲକ ଭରିଦେଇଛନ୍ତି ବାସ୍ତବିକ ତାହା ଅନନ୍ୟ । ଗୀତିକବିତା ତାଙ୍କରି ପ୍ରାଣ । ଆକାଶୀ ଇଚ୍ଛା ମାନଙ୍କୁ ହାତ ବଢେଇ ନିଜେ ଆକାଶ ପାଲଟି ଯାଇଥିବା ଗୀତିକବି ଶ୍ରୀଯୁକ୍ତ ସିଂହଙ୍କର ଚିନ୍ତା ଚେତନାର ବ୍ୟାପକ ସରହଦକୁ ଆଲୋଚନା ର ମାପକାଠିରେ ମାପିବା କେବଳ ଅପଚେଷ୍ଟା ମାତ୍ର । ତାଙ୍କର ଭାବପ୍ରବଣତା ଆକାଶ ପରି ପ୍ରଶସ୍ତ । ଆବେଗ ସମୁଦ୍ର ପରି ଉତ୍ତାଳ ଓ ଗଭୀର । ପୁଣି ତାଙ୍କର ଗୀତିକବିତା ମାନ ପଥର ଛାତିରେ ଯେପରି ବୁହାଇ ଦେଇଛି ପ୍ରୀତିର ସ୍ରୋତସ୍ୱିନୀ । ସେ କେବଳ ନିଜେ ମଗ୍ନପ୍ରଜାପତି ପରି ତଲ୍ଲୀନ ସଂସାର ପରିଧି ଭିତରେ ନିଜକୁ ସୀମିତ କରିପାରି ନାହାନ୍ତି । ବରଂ ତାଙ୍କର ଗୀତିକବିତାର କାଉଁରୀ ସ୍ପର୍ଶ ଅଗଣିତ ଗୀତି ପ୍ରଗଳ୍ଭ ମଣିଷ ସୃଷ୍ଟି କରିବାରେ ସକ୍ଷମ ହୋଇପାରିଛି ଏବଂ ସାହିତ୍ୟ ଦରବାରରୁ ଚିର ଉପେକ୍ଷିତ ଗୀତିକବିତାକୁ ତାର ନ୍ୟାର୍ଯ୍ୟ ମର୍ଯ୍ୟାଦା ପ୍ରଦାନ କରିବାକୁ ସେ ଏକ ସାରସ୍ୱତ ବିପ୍ଳବର ସେନାପତି ସାଜି ହୋଇଯାଇଛନ୍ତି ଓଡିଆ ଗୀତିକବିତା ରାଜ୍ୟର ମୁକୁଟ ମଣ୍ଡିତ ସମ୍ରାଟ । ଜାଗତିକ ଜୀବନର ଅବସାଦ ତାଙ୍କ ପଥରୋଧ କରିପାରିନି । କଣ୍ଟକିତ ଜୀବନ ପଥକୁ ପ୍ରଜ୍ଞା ଓ ସଂକଳ୍ପର ପରିଭାଷାରେ ବରଂ ପ୍ରକାଶ କରରିଛନ୍ତି --

"କଣ୍ଟକିତ ପଥେ ଚାଲି ମୁଁ ସଦା
ଆଘାତ ପାଉ ମୋ ପାଦ
ଜୋଛନା ପୁଲକ ନପାଏ ଜୀବନେ
ନାହିଁ ତିଳେ ଅବସାଦ । "

-ନନ୍ଦକିଶୋର ଗୀତି ବିଚିତ୍ରା-

ବଡ ବିଚିତ୍ର କବିଙ୍କର ଅନୁଭବ । କବି Eliot ଯେପରି ତାଙ୍କ " East Coker" ରେ ଜୀବନର ସବୁ ଜଂଜାଳ ରୂପକ ଅନ୍ଧକାର ମଧ୍ୟରେ ଈଶ୍ୱରଙ୍କୁ ଉପଲବ୍‌ଧି କରିପାରିଛନ୍ତି, ଏକ ରାତ୍ରିର ଅଭିସାର ମଧ୍ୟରେ ଜଙ୍ଗଲ କୃଷ୍ଣଙ୍କୁ ଖୋଜିଛନ୍ତି-" I said to my souls to be still and let the dark come upon you/which shall be the darkness of God" ସେହିପରି କବି ନନ୍ଦକିଶୋର ଜୀବନର ମରୁଯାତ୍ରାରେ ମହାକାଳ ପଦଚିହ୍ନ ଖୋଜି ସମ୍ଭାବନାର ହେମ ପୁଷ୍ପ ଫୁଟାଇବାର ଆସ୍ପୃହା ପ୍ରତିପୋଷଣ କରିଛନ୍ତି ।

"ଚଲାପଥ ଯାଉପଛେ ମରୁବୁକେ ହଜି
ତା'ଭିତରେ ପଦଚିହ୍ନ ତୁମ ଯିବି ଖୋଜି
କଣ୍ଟାରେ ଫୁଟାଇ ଯିବି କୋଟି ଆଶା ଫୁଲ
ଆହେ ମହାକାଳ"

-ନ.ଗୀ.ବି-

ସାଧନା ପଥରେ ଦୁଃଖ ଓ ଅନୁଶୋଚନା କ୍ଷଣସ୍ଥାୟୀ । କେହିନା କେହି ପଛରେ ଥାଇ ଶୋକ ସନ୍ତପ୍ତ ମନକୁ ବୁଝେଇ ନିଏ । ମନ ଗହନର ଧୂଳି ଝାଡିଦେଇ ସଜବାଜ କରାଏ ଗନ୍ତବ୍ୟ ପଥରେ । ମାନବବାଦକୁ ଶବ୍ଦଚିତ୍ରରେ ପରିପ୍ରକାଶ କରୁଥିବା କବି ମନ ନିତ୍ୟ ସନ୍ଧାନର ଜୟ ଜୟକାର କରି କହେ -" To whom the miseries of the world/Are misery and will not let them rest" ପ୍ରତିଟି ଲୁହ ବିନ୍ଦୁ ପ୍ରେରଣାର ଉତ୍ସ ପାଲଟିଯାଏ । ବିଗତ ଫଗୁଣର ପ୍ରତିଟି ସନ୍ତକ ନୂଆ ନୂଆ ସତ୍ୟର ସନ୍ଧାନ ଦିଏ । କଣ୍ଟକିତ ପଥ ପୁଷ୍ପମୟ ହୋଇଯାଏ -

"କେତେ ବଇଶାଖ ତାତିଲା ନିଆଁରେ
ପ୍ରଜାପତି ଡେଣା ଜଳେ
ତଥାପି ଚାଲିଛି ଆଗକୁ
କଣ୍ଟା ଓ କୁସୁମ ପରେ ।"

-ନ.ଗୀ.ବି-

ଯନ୍ତ୍ରଣାତ ଜୀବନ ଯାତ୍ରାର ପାଥେୟ । ସେ ଯନ୍ତ୍ରଣା ପୁଣି ଚିର ଅନିନ୍ଦ୍ୟ ଓ ଲୋଭନୀୟ । ପ୍ରେମ ବୈତରଣୀର ତ ସେ ସବୁ ଗୋଟିଏ ଗୋଟିଏ ମହାବାରେଣୀ । ତାକୁ କଣ କେବେ ଉପେକ୍ଷା କରିହୁଏ ? ନା- ଭୁଲିହୁଏ ସେହି ଚିର ଅପୂର୍ବାଙ୍କୁ । ସେତ ଛାତି

ତଳର କଳକଳ ଫଲ୍‌ଗୁଟିଏ । ପୁରୁଷ ପାଇଁ ପୂର୍ଣ୍ଣତାର ବିଗ୍ରହଟିଏ । ପ୍ରେମାସିକ୍ତ ସ୍ପର୍ଶ ମାତ୍ରେ ନୀରବେଇ ଯାଏ ମହାକାଳ । ନଇଁଆସେ ମେଘ ମେଦୁର ରାତି, ଉଦାର ଓ ମଧୁର ମୁହୂର୍ତ୍ତ । ପୃଥିବୀର ସବୁ ଅପୂର୍ଣ୍ଣତାକୁ ଏକ ପରିପୂର୍ଣ୍ଣ ଉପଲବ୍ଧିରେ ପହଂଚେ - "Earth's insufficiency here finds perfection"(Goethe) ଦିଟୋପା ଲୁହ ତ ଜୀବନର ସର୍ବଶ୍ରେଷ୍ଠ ଗଚ୍ଛିଧନ ହୋଇ ରହିଯାଏ । ଅତୀତର ପିରାମିଡ ଦେହରେ ବେଦନାର ଫୁଲ ସଂଜକୁ ଲୁହର କାଳିରେ ନିଖୁଣ ଭାବରେ ଲେଖିଦେଇହୁଏ ।-

"ସେ କେଉଁ ରୂପସୀ ଲହୁ-ଲୁହ ଧୁଆ ଭଙ୍ଗା ପିଆଲାକୁ ଧରି
ପୋଡିଯାଇଥିବା ଅଙ୍ଗୁର ବଣ ପାଉଁଶକୁ ଦିଏ ଠେଲି
ସେ ଅଙ୍ଗାର ନେଇ ପିରାମିଡ ଦେହେ ବେଦନା ଲିପି ମୋ ଲେଖେ "

-ନ.ଗୀ.ବି-

ମାତ୍ର ପ୍ରେମ ଓ ସମୟ ଚିର ସାମ୍ନା ସାମ୍ନି ହୁଅନ୍ତି । ଶେଷ ପର୍ଯ୍ୟନ୍ତ ସମୟ ଛାଡେନି । ନିର୍ଜନ ମାୟା କୁହୁକ ମଧ୍ୟକୁ ଠେଲିଦିଏ । ବେଳ ଅବେଳରେ ଆଖିଦୁଇଟି ସମୁଦ୍ର ପାଖରେ ବନ୍ଧାପଡିଯାଏ ସବୁଦିନ । ତଥାପି ତାହା ଭାସ୍ୱର ହୋଇଉଠେ ମୃତ୍ୟୁ ପର୍ଯ୍ୟନ୍ତ । କିଏବା ତାକୁ ଅତିକ୍ରମ କରିପାରିବ ? ତଥାପି ସେହିମଗ୍ନ ନିର୍ଜନତା ହିଁ ଜୀବନ । କେବେ ଦିନେ ପ୍ରିୟତମା ଉର୍ବଶୀ ସାଜି ଖଇଫୁଟା ଫୁଲ ସଂଜଟିଏ ଉପହାର ଦେଇଥିଲା । ସେ ରୂପ କଣ କେବେ ଭୁଲିହୁଏ ? ମାତ୍ର Earnest Dowson ତାହା ଅସ୍ୱୀକାର କରିଛନ୍ତି । ବୟସର ଫାଟକ ଡେଇଁଗଲାପରେ ସେ ମୂଲ୍ୟହୀନ ବୋଲି ବିଚାର କରନ୍ତି - " Love and desire and hate/ I think they have no portion in us after/ We pass the gate" -ଏହି ପାଶ୍ଚାତ୍ୟ ଚିନ୍ତନ ହୋଇପାରେ । ସେଠି ଏ ଐକାନ୍ତିକ ଭଲପାଇବାକାହିଁ ? କାହିଁ ବା ସେ ତ୍ୟାଗ ? ଜଣକ ପାଇଁ ଆଉ ଜଣେ ମୃତ୍ୟୁର ପାହାଚ ପର୍ଯ୍ୟନ୍ତ ଅପେକ୍ଷା କରିପାରେ । ପ୍ରେମ ଗୋଟିଏ ଜନ୍ମରେ ସୀମିତ ହୋଇପାରେନା । କଳଙ୍କିତ ପ୍ରେମକୁ ବହୁଗୁଣିତ କରେ । ପ୍ରେମର ଜୈତ୍ର ଧ୍ୱଜା ଉଡାଇପାରେ । ତେଣୁ ରମାକାନ୍ତ ରଥ ଶ୍ରୀରାଧାଙ୍କ ମୁହଁରେ କୁହନ୍ତି -

" ଯେ ଦିନରୁ ମତେ କହିଲେ ମୁଁ କୂଳ କଳଙ୍କିନି ଦୋଚାରୁଣୀ
ସେଦିନରୁ ହେଲି ରାଧିକା ରସିକା ମାନଙ୍କରେ ଶିରୋମଣି "

ଅବଶ୍ୟ ଅନ୍ୟ ପାଶ୍ଚାତ୍ୟ କବିମାନେ ଆମ ସହ ଏକମତ ହୁଅନ୍ତି ପ୍ରେମ ଏକ ଅମୀୟ ସୋପାନରେ ଉପନୀତ କରାଏ । ନୀଳକଣ୍ଠ ପରି ନିନ୍ଦା ଓ ଦହନରବିଷକୁ

ଆକଣ୍ଠ ପିଇ ବଂଚି ହୁଏ । ତେଣୁ କବିଙ୍କର ଗୀତିକବିତା ଗୁଡ଼ିକରେ ସେ ସତ୍ୟ ସଜଳ । କୈଶୋରର ମଧୁଲଗ୍ନ ସବୁ ପରିଣତ ବୟସର ସମ୍ବଳ ହୋଇ କବିଙ୍କୁ ଯଶସ୍ୱୀ କରିଛନ୍ତି । ପ୍ରତିଟି ସ୍ମୃତି ଛଳ ଛଳ ହୋଇ ଅପୂର୍ବ ଗୀତି କଲ୍ଲୋଳ ସୃଷ୍ଟି କରିଛି । ଅଗଣିତ ତୃଷିତ ଶ୍ରୋତାଙ୍କୁ ସିଡି ଚହଲେଇ ଦେଇଛି ଘଡ଼ିଏ-

"ତୁମ କଳଙ୍କର ବିଷ ପିଇ ପିଇ
ସାଜିଛି ମୁଁ ନୀଳକଣ୍ଠ
ତୁମ ଲାଞ୍ଛନା ଗଉରବ ମଣେ
ହେଲେବି ମୁଁ ଉପେକ୍ଷିତ "

-ନ.ଗୀ.ବି-

କବିଙ୍କ ଆଖିରେ ସର୍ବଦା ଏ ପୃଥିବୀ ସ୍ମୃତିମୟ । ସେ ସ୍ମୃତି କଣ କେବେ ପାଶୋରିହୁଏ ନା ତାଙ୍କୁ ମନର ସିନ୍ଦୁକରେ ଫିଙ୍ଗିଦେଇ ହୁଏ । ସେତ ଚିର ନୂତନ ଓ ନିତ୍ୟ ସୁନ୍ଦର । ସେଥିପାଇଁତ କବିବର କହନ୍ତି-

"ସ୍ମୃତି ତ ନୁହଁଇ କେବେ ଫିଙ୍ଗିବାର
ଫିଙ୍ଗିପାରିଲେ ମୁଁ ଲଭନ୍ତି ନିସ୍ତାର"

ତାଠାରୁ ମୁକ୍ତି ନାହିଁ । ମଣିଷର ମୃତ୍ୟୁରେ ହିଁ ତାଠାରୁ ମୁକ୍ତି ମିଳେ । ପ୍ରେମର ପୃଥିବୀ ତେଣୁ ସର୍ବଦା ଆଭାମୟ । ଠିକ୍ ବାଳସୂର୍ଯ୍ୟଙ୍କର କଅଁଳ ଛୁଆଁପରି । ନତୁବା ଜହ୍ନର ଶୀତଳ ଜ୍ୟୋତ୍ସ୍ନାପରି । ତେଣୁ କବି ପ୍ରେୟସୀ ସର୍ବଦା ସୂର୍ଯ୍ୟସ୍ନାତା । ପ୍ରଥମ ସୂର୍ଯ୍ୟୋଦୟହିଁ ଦେଖିବ ପ୍ରେମିକାର ଗାଆଁ । ପ୍ରଥମ କିରଣରେ ଝଲସିଉଠେ ପ୍ରିୟାର ଗବାକ୍ଷ । ସତେ ଯେପରି ଝରକା ପାଙ୍କରେ ଚାହିଁରହିଥିବା ବରହିଣୀ ପ୍ରିୟାକୁ ପ୍ରଥମ ପ୍ରେମ ସମ୍ଭାଷଣ ଦିଅନ୍ତି ନିଜେ ସୂର୍ଯ୍ୟଦେବ । ପୁଣି ସବୁ ପୁନେଇ ଜହ୍ନ ଏକାକାର ହେଇ ଭେଟନ୍ତି ପ୍ରିୟାକୁ ତାର ଗାଁରେ । କି ଅପୂର୍ବ ପ୍ରେମର ପୃଥିବୀ । ଯେଉଁଠି ସୂର୍ଯ୍ୟଚନ୍ଦ୍ର ସମସ୍ତେ ଧାଇଁଯାଆନ୍ତି ସେଠିକୁ ପ୍ରେମାଭିଷେକ ରଚନା କରିବାକୁ । କିଶୋରୀ ପ୍ରିୟା ପ୍ରଣୟୋଚ୍ଛଳ ମନକୁ ସାନ୍ତ୍ୱନା ଦେବାକୁ -

"ସୂର୍ଯ୍ୟ ଉଇଁଲେ ପ୍ରଥମେ ଚାହିଁବ
ମୋ ପ୍ରିୟାର ଝରକାରେ
ଚନ୍ଦ୍ର ଉଇଁଲେ ପ୍ରଥମେ ଚାହିଁବ
ମୋ ପ୍ରିୟାର ଗାଆଁଆଡେ "

କଳଙ୍କର ଚେତନା ମାଟିରୁ ଆକାଶଯାଏ ପ୍ରଲମ୍ବିତ । ଗୀତି ଗୁଚ୍ଛର ପ୍ରତିଟି ସ୍ତବକରେ ସଂଚରିଯାଇଛି ଛଳ ଛଳ ହୃଦୟଟିଏ । କି ଅପୂର୍ବ ସଂଯୋଗ ସତରେ । ସବୁଠାରେ ସମର୍ପତାର ଭାବ । ଜୀବନ ବୈରାଗର ନୁହେଁ । ସଂଭାବନାର, ତ୍ୟାଗର ଭଲପାଇବାର । କେବେ କେବେ ପୁଣି ତାହା ପାର୍ଥିବ ଜଗତ ଛାଡ଼ି ଅମର୍ତ୍ତ୍ୟର କଳ କଳ ଧାରା ପାଲଟିଯାଇଛି-

" ଚିର ଛଳ ଛଳ ସରିତର ଧାର
ମରୁବୁକେ ଯାଏ ବୁଡ଼ି
ଜୀବନ ସଳିତା ଆଲୋକ ଦେବାର
ଆଗରୁ ଯାଇଛି ଲିଭି ।"

ଅକଳନ ସ୍ରଷ୍ଟାଙ୍କର ସୃଷ୍ଟି ସାମ୍ରାଜ୍ୟ । ତାହା ପୁଣି ବହୁରଂଗୀ । ଅସୁମାରୀର ଗୀତିକବିତା, ଭଜନ,ଜଣାଣ,ଓଡ଼ିଶୀ, ଛାନ୍ଦ, ପଲ୍ଲୀଗୀତ, ବ୍ୟଙ୍ଗ ଆଦି ରତ୍ନ ଭଣ୍ଡାରରେ କବିଙ୍କର ସୃଷ୍ଟି ରତ୍ନଗର୍ଭା । ତାଙ୍କର ପ୍ରତ୍ୟେକଟି ଭାବ ସ୍ପନ୍ଦନ ପୃଥକ ପୃଥକ ଆଲୋଚନାର ବିଷୟଭୁକ୍ତ । ଓଡ଼ିଆ ଗୀତିକବିତାରାଜ୍ୟର ଏହି ଚଳନ୍ତା କିମ୍ବଦନ୍ତୀ ପୁରୁଷ ଚିର ଯଶସ୍ୱୀ । ସେ ଯେଉଁ ଅଭେଦ୍ୟ ଦୁର୍ଗ ରଚନା କରିଛନ୍ତି ତାକୁ କାଳ ଭେଦ କରିପାରିବନି । ତାହା ଗତକାଲି ଓ ଆସନ୍ତାକାଲିକୁ ଭୁଲି ଆଜିରେ ବଂଚି ରହିବାକୁ ଚାହୁଁଥିବା ଗୀତିପ୍ରାଣ ଓଡ଼ିଆ ଜନଜୀବନକୁ ସଦାସର୍ବଦା ଆତ୍ମହରା କରୁଥିବ । ଏହା ସର୍ବ ସ୍ୱୀକାର୍ଯ୍ୟ । ବିଶ୍ୱ ଦରବାରରେ ଗୀତି ପ୍ରବଣତାର ମୃତ୍ୟୁ ନାହିଁ । ତାହା ମୃତ୍ୟୁଞ୍ଜୟୀ । ପକ୍ଷୀର କାକଳି ଠାରୁ ଆରମ୍ଭ କରି ନିରବ ଓଠର ନିସ୍ପନ୍ଦ ଭାବାବେଗ ତ ଅପୂର୍ବ ସଂଗୀତ ମୟ ପରିବେଶ ସୃଷ୍ଟିକରିଥାଏ । ଗୀତିକବିତାକୁ ଛାଡ଼ି ସୃଷ୍ଟି ତିଷ୍ଠି ରହିପାରିବ ନାହିଁ । ପ୍ରକାଶ୍ୟରେ ନହେଲେ ଅନ୍ତଃ ସଲିଳା ଫଲ୍‌ଗୁ ପରି ଗୀତିଧାରା ପ୍ରତିଟି ମଣିଷର ପ୍ରାଣ ପ୍ରବାହରେ ପ୍ରବାହିତ ହୁଏ ବୋଲି " Oxford companion to Music" ଗ୍ରନ୍ଥରେ କୁହଯାଇଛି " No songless people has ever been discovered" ସେହି ନ୍ୟାୟରେ କୁହାଯାଇପାରେ ଶ୍ରୀଯୁକ୍ତ ସିଂହଙ୍କର ମର୍ମସ୍ପର୍ଶୀ ଗୀତି କଲ୍ଲୋଳ ଚିର ଭାସ୍କର ଓ ଅକ୍ଷୟ ।

ପ୍ରସ୍ତୁତ
ଅଧ୍ୟାପକ ଅକ୍ଷୟ କୁମାର ମହାନ୍ତି
ମୁଖ୍ୟ ସଂପାଦକ, କସ୍ତୁରୀ

## ସମୀକ୍ଷାୟନ ଓ କୃତଜ୍ଞା ଜ୍ଞାପନ

# ଚାରିଦଶନ୍ଧିର ଗୀତି : ଚତୁର୍ଥ ଗୀତି ଗ୍ରନ୍ଥ

ମୁଖ୍ୟତଃ ଗୀତିକାର ଓ ସଂଗୀତ ନିର୍ଦ୍ଦେଶକ ଅକ୍ଷୟ ମହାନ୍ତିଙ୍କ ଗୀତି ପରି ବିରଳ କେତୋଟି ଗୀତି ଗ୍ରନ୍ଥକୁ ବାଦ୍ ଦେଲେ ଏଇ ଅଳ୍ପ କିଛି ବର୍ଷ ତଳ ପର୍ଯ୍ୟନ୍ତ ଓଡିଆ ସାହିତ୍ୟରେ ଗୀତି ସଂକଳନର ସଂଖ୍ୟା କମ୍ ଥିଲା । ସୁଖର କଥା ଗୀତି କବି ମାନେ ଏବେ କେବଳ ଶ୍ରାବ୍ୟ ମାଧମ ଭିତରେ ସୀମିତ ନରହି ମୁଦ୍ରଣ ମାଧମକୁ ମଧ ଆପଣେଇବା ଆରମ୍ଭ କଲେଣି । ଏହି କ୍ରମରେ ଗୀତିଗୁଚ୍ଛ, ଗୀତି ଓ ଗଜଲ୍ ଏବଂ ଇଚ୍ଛାବତୀ ନଦୀ ପରେ ପ୍ରକାଶ ପାଇଛି ନନ୍ଦକିଶୋର ସିଂହଙ୍କ ଚତୁର୍ଥ ଗୀତି ସଂକଳନ ନନ୍ଦକିଶୋର ଗୀତି ବିଚିତ୍ରା ।

ଗୀତିକବି ଙ୍କ ନିଜସ୍ୱ ସୂଚନାର ସମର୍ଥନରେ କହିଲେ ପୁସ୍ତକଟିର ସ୍ୱାତନ୍ତ୍ର୍ୟ ହେଉଛି ଏଥିରେ ଗୀତି କବିତାର ପ୍ରତ୍ୟେକଟି ବିଭାଗ ଯଥା ଆଧୁନିକ, ପଲ୍ଲୀ, ଭଜନ, ଦେଶ ବନ୍ଦନା, ଓଡିଶୀ, ଶିଶୁ ଗୀତି ବ୍ୟଙ୍ଗ ବା ରମ୍ୟ ଗୀତି ଓ ଗଜଲ ସ୍ଥାନିତ ହୋଇଛି । ପୁସ୍ତକଟିରେ ସ୍ଥାନ ପାଇଥିବା ଶ୍ରୀ ସିଂହଙ୍କର ଗୋଟିଏ ଗୀତି ଅନୁସାରେ ଗରମ ମୁଢି ସହିତ କଂଚା ପିଆଜ, ପୋଡ ପିଠା ସାଂଗକୁ ଗୁଡ ନଡିଆ, ଥଣ୍ଡା ସରବତରେ ସପୁରୀ ରସ ଓ ଖରାଦିନରେ ବର ଗଛର ଛାଇ ପରି ସୁଆଦ ଭରି ରହିଛି ।

ପୁସ୍ତକ ସୂଚନା : ନନ୍ଦକିଶୋର ଗୀତି ବିଚିତ୍ରା
ଲେଖକ-ନନ୍ଦ କିଶୋର ସିଂହ
ପ୍ରକାଶକ : ଅକ୍ଷର, କଲ୍ୟାଣୀ ନଗର, କଟକ
ମୂଲ୍ୟ : ଟ ୭୦/-

ପ୍ରସ୍ତୁତି ଗ୍ରନ୍ଥ ମନ୍ଥନ ବିଭାଗ - ଶତାବ୍ଦୀ ୧୫ ଫେବୃୟାରୀ ୨୦୦୦

## ନନ୍ଦକିଶୋର ଗୀତିବିଚିତ୍ରା

ଆକର୍ଷଣୀୟ ପ୍ରଚ୍ଛଦ, ଚିତ୍ତାକର୍ଷୀ ଅଙ୍ଗସଜ୍ଜାକୁ ନେଇ ପ୍ରକାଶ ପାଇଛି ନନ୍ଦକିଶୋର ସିଂହଙ୍କର ଗୀତିକବିତାର ସୁସଂକଳନ 'ନନ୍ଦକିଶୋର ଗୀତିବିଚିତ୍ରା' । ଭଜନ, ଆଧୁନିକ, ପଲ୍ଲୀ, ଦେଶ ବନ୍ଦନା,ଓଡ଼ିଶୀ, ଶିଶୁ ଗୀତି ଗଜଲ ଓ ବ୍ୟଙ୍ଗ ଗୀତିକୁ ନେଇ ଉଭୟ ଆଙ୍ଗିକ ଓ ଆତ୍ମିକ ବୈଚିତ୍ର୍ୟରେ ସମୃଦ୍ଧ ହୋଇଛି 'ଗୀତି ବିଚିତ୍ରା'

ମରୁ ଡହକର ଶୋଷ ପିଇ ପିଇ ଘୁମାଇ ପଡ଼ିଛି ଟିକେ/ଧୂସର ସପନ ମାୟା ମରିଚିକା ମୋ 'ଆଖି ଆଗରେ ନାଚେ'(ମରୁ ଡହକର ଶୋଷ ପିଇ ପିଇ-ପୃ-୨୫) । କେଉଁଠି ଧୂସର ସପନ ତ କେଉଁଠି ଫଗୁଣ ହାଟ ଜୀବନର ନାମ ଅନୁଭୂତିକୁ ଟାଣି ଆଣିଛନ୍ତିସୃଷ୍ଟି ମଧ୍ୟକୁ । ଭଜନ ରେ ମାନବୀୟ ଦୃଷ୍ଟିକୋଣକୁ ଆପଣେଇ ନେଇଛନ୍ତି ଗୀତିକବି ନନ୍ଦକିଶୋର ସିଂହ । ମାଟି ମାଟିର ଗନ୍ଧ ଛଡ଼ି ଯାଇଥିବା ଦେହାତୀ ସଂବେଦନଶୀଳ ହୃଦୟ ଛୁଆଁ ପଲ୍ଲୀଗୀତି ପାଠକର ଦୃଷ୍ଟି ଆକର୍ଷଣ କରେ । ଠିକ୍ ସେହିପରି ଓଡ଼ିଶୀ ଓ ଗଜଲ୍ ଗୁଡ଼ିକ ମନଛୁଆଁ । ଭିନ୍ନ ଭିନ୍ନ ସ୍ୱାଦକୁ ଆପଣାର ଉପାଦେୟତାକୁ ନେଇ ଗୀତିକବିତାଗୁଡ଼ିକ ପାଠକ ମନକୁ ଛୁଇଁବ ବୋଲି ଆଶା କରାଯାଏ । ଚମତ୍କାର ପ୍ରଚ୍ଛଦ, ଅଙ୍ଗ ସଜ୍ଜା ପୁସ୍ତକର ଅନ୍ୟତମ ବିଶେଷତ୍ୱ ।

## ପୁସ୍ତକ ସମୀକ୍ଷା

ଗୀତିକାର ନନ୍ଦକିଶୋର ସିଂହ ଉଭର ଷାଠିଏର ଗୀତିକବିତା ଜଗତର ଜଣେ ସଫଳ ଓ ଯଶସ୍ୱୀ ସ୍ରଷ୍ଟା ତାଙ୍କର ଗୀତିକବିତା ମାନବ ଜୀବନର ବହୁ ନିଃସର୍ତ୍ତ ପ୍ରତିଶ୍ରୁତି ନେଇ ଓଡ଼ିଶାର ଜନପଦଠାରୁ ସହର ପର୍ଯ୍ୟନ୍ତ ପରିବ୍ୟାପ୍ତ ନିଜସ୍ୱ ପ୍ରତିଭା ଓ ଏକାଗ୍ରତା ବଳରେ ସେ ସଂଗୀତ ଦରବାରରେ ନିଜକୁ ପ୍ରତିଷ୍ଠିତ କରାଇ ପାରିଛନ୍ତି । ତାଙ୍କୁ ବାଦ୍ ଦେଇ ଓଡ଼ିଆ ଗୀତିକବିତାର ବିଚାର ବିମର୍ଷ ଏକାବେଳେ ଅସମ୍ଭବ ଓ ଅର୍ଥହୀନ ମନେହୁଏ । ଦୀର୍ଘ ତିନି ଦଶନ୍ଧିରୁ ଉର୍ଦ୍ଧ୍ୱ କାଳ କବି ନିଜର ପ୍ରତିଭାକୁ ଆକାଶବାଣୀ, ଦୂରଦର୍ଶନ, ମଞ୍ଚ ଓ ଚଳଚ୍ଚିତ୍ର ତଥା ଓଡ଼ିଶାରେ ସମସ୍ତ ଉଲ୍ଲେଖନୀୟ, ପତ୍ରପତ୍ରିକା ମାଧ୍ୟମରେ ସାବ୍ୟସ୍ତ କରିଆସିଛନ୍ତି । ଏତଦ୍ ଭିନ୍ନ ଏହିବାଣୀ ବରପୁତ୍ରଙ୍କର ସାଧନା ଓ ସିଦ୍ଧିର ଅନ୍ୟ ବିଶିଷ୍ଟ ଦିଗ ଗୁଡ଼ିକ ହେଉଛି ତାଙ୍କର ନାଟକ ଓ ଶିଶୁ ସାହିତ୍ୟ ଜଣେ କୃତ ବିଦ୍ୟ ନାଟ୍ୟକାର, କବି ଓ ଶିଶୁ ସାହିତ୍ୟିକ ଭାବରେ ସେ କମ୍ ସମ୍ମାନର ଅଧିକାରୀ ନୁହଁନ୍ତି । ଓଡ଼ିଆ ସାହିତ୍ୟର ପ୍ରମୁଖ୍ୟ ବିଭାଗ ମାନଙ୍କରେ ନିଜର ସ୍ୱତନ୍ତ୍ର ସ୍ଥିତିରେ ପ୍ରତିଷ୍ଠା

ଅର୍ଜନ କରିଥିବା ଏହି ଧୂରୀଣ ସ୍ରଷ୍ଟା ମାନସର ଚତୁର୍ଥ ଗୀତିକବିତା ସଂକଳନ ହେଉଛି "ନନ୍ଦକିଶୋର ଗୀତିଚିତ୍ର"। ଏହା ପୂର୍ବରୁ "ଗୀତିଗୁଚ୍ଛ" "ଗୀତିଚିତ୍ର" ଏବଂ "ଇଚ୍ଛାବତୀ ନଦୀ" ପ୍ରଭୃତି ପ୍ରକାଶିତ।

ଆଲୋଚ୍ୟ ସଂକଳନଟି ଓଡ଼ିଆ ଗୀତିକବିତା ଭଣ୍ଡାରକୁ ଏକ ଅନନ୍ୟ ଅବଦାନ କହିଲେ ସତ୍ୟର ଅପଳାପ ହେବନାହିଁ। ମାର୍ଜିତ ରୁଚିସଂପନ୍ନ ପ୍ରଚ୍ଛଦ ସହ ମନଲୋଭା ଆଭ୍ୟନ୍ତରୀଣ ଆନ୍ତରିକତା ପୁସ୍ତକଟିକୁ ହୃଦୟ ଗ୍ରାହୀ କରିପାରିଛି। ପୁନଶ୍ଚ ଏହାର ଅନ୍ୟତମ ବିଶେଷତ୍ୱ ହେଉଛି ଗୀତଗୁଡ଼ିକୁ ସର୍ବମୋଟ ଆଠଗୋଟି ସୋପାନ ଯଥା ଭଜନ, ଆଧୁନିକ, ପଲ୍ଲୀ, ଦେଶବନ୍ଦନା, ଓଡ଼ିଶୀ, ଶିଶୁ ଗୀତି, ଗଜଲ ଓ ବ୍ୟଙ୍ଗ ଗୀତି କ୍ରମରେ ଖଞ୍ଜିଦିଆଯାଇଛି ଏବଂ ପ୍ରତ୍ୟେକଟି ଗୀତିକବିତା ଏକ ଅପୂର୍ବ କଳକଳ ନିନାଦ କରି ପାଠକ ମନରେ ଧ୍ରୁପଦ ମଲ୍ଲରେ ଏକ ନିର୍ଲିପ୍ତ ମହ୍ଲାର ସୃଷ୍ଟି କରିବାର ସମର୍ଥ ହୋଇପାରିଛନ୍ତି।

ସର୍ବପ୍ରଥମେ କବି ବିଶ୍ୱନିୟନ୍ତା ଅମୃତମୟଙ୍କ ପଦାରବିନ୍ଦରେ ଶ୍ରଦ୍ଧା ନିବେଦନ କରିବା ସଂଗେ ସଂଗେ ଜୀବନ ସଂପର୍କୀତ ସମସ୍ତ ଆକୁଳତାକୁ ତାଙ୍କର ଦରବାରରେ ଉପସ୍ଥାପନ କରିପାରିଛନ୍ତି। ସର୍ବବ୍ୟାପୀ ଯୋଗୀଜନଙ୍କ ହୃଦୟ କନ୍ଦରରେ ଉଙ୍କିମାରୁଥିବା ଅସମାଧିତ ପ୍ରଶ୍ନଟି କବିଙ୍କୁ ଆନମନା କରିଛି

"ହେ ଅମୃତମୟ ଭଗବାନ
ମୋତେ କିଆଁ କଲ ତୁମରି ସୃଷ୍ଟିରେ
ବିଷର ଏକ ସନ୍ତାନ, ହେ ଅମୃତ ମୟ ଭଗବାନ।"

ଏହିପରି ସଂକଳନଟିର ୧୫ଟି ଯାକ ଭଜନ ସୁଶ୍ରାବ୍ୟ ଓ ଭାବଗର୍ଭକ। ଶବ୍ଦ ସଂଯୋଜନା ଏବଂ ଅପୂର୍ବ ଲାଳିତ୍ୟର ସ୍ପର୍ଶରେ କବିଙ୍କ ଭକ୍ତିମତାର ପରିଚୟ ପ୍ରଦାନ ସଂଗେ ସଂଗେ ଶ୍ରୋତାର ହୃଦୟରେ ଗଭୀର ରେଖାପାତ କରିଥାନ୍ତି।

ସଂକଳନର ଦ୍ୱିତୀୟ ସୋପାନ ହେଉଛି "ଆଧୁନିକ" ସମଗ୍ର ଓଡ଼ିଶା ମାଟିରେ ବହୁ ଚର୍ଚ୍ଚିତ ଏବଂ ପରିଚିତ ଅନେକ ଆଧୁନିକ ଗୀତିକବିତା ମଧ୍ୟରୁ "ବସନ୍ତ ଲେଖିଛି ଚିଠି ଗୋଲାପୀ ଗୋଲାପୀ , ଗୋଲାପୀ ଗୋଲାପୀ ଫୁଲ ଲଫାପାରେ ଭରି ପାଖୁଡ଼ା କେତୋଟି" ଅନ୍ୟତମ। ପାଇ ହଜାଇବାର ଦୁଃଖ ଚିରଦିନ ମନୁଷ୍ୟକୁ ଯନ୍ତ୍ରଣାର ଯନ୍ତଘର ମଧ୍ୟରୁ ଠେଲିଦେଇଛି । ସମୟ ସୁଅରେ ଅତୀତ ହାତ ପାହାନ୍ତାରୁ ଖସିଯାଇଥିଲେ ମଧ୍ୟ ସ୍ମୃତିକୁ ସମ୍ୱଳ କରି ମଣିଷ ବଂଚିଛି। ତାଙ୍କର ପ୍ରତ୍ୟେକଟି ଗୀତିକବିତାରେ ସେହି ସ୍ମୃତିର ଆବେଦନ ଅତି ଜୀବନ୍ତ ଓ ମାର୍ମିକ।

କବିଙ୍କ "ପଲ୍ଲୀଗୀତ" ଗୁଡିକ ଏମାଟିର ପ୍ରତ୍ୟେକଟି ସାମାଜିକ ଉପାଦାନ ଓ ଆବେଦନରେ ରସସିକ୍ତ, ସମସ୍ତ ଗୀତ ଗୁଡିକ ଜନମାନସରେ ନିହାତି ଆପଣାର ପଲ୍ଲୀ ଭୂଇଁର ସଂଜ ସକାଳ , ଗାଁ ଭୁଆସୁଣୀ, ଢଗଢମାଳି ସବୁ କବି ଚିନ୍ତାରେ ସଂଗୀତର ବର୍ଣ୍ଣାଳୀ ସୃଷ୍ଟି କରିଛନ୍ତି । " ଆହା ମୋ ଫଟାକଳସୀ/ତନୁ ପାତଳୀ ସେ ରାଧିକା କାଖରୁ ପଡିଗଲା ହାଏ ଖସି" ପରି ଗୀତମାନ କେବଳ ମନ ଓ ହୃଦୟକୁ ପ୍ରଫୁଲ୍ଲିତ କରନ୍ତି ନାହିଁ ବରଂ ସୁନ୍ଦର ଗ୍ରାମ୍ୟ ଜୀବନ୍ତ ଆଲେଖ୍ୟ ଆଙ୍କିବାରେ ସମର୍ଥ ହୋଇଛନ୍ତି ।

ଜାତୀୟ ଜୀବନର ଅବକ୍ଷୟ ଓ ସାମାଜିକ ଦୂର୍ଭାଗ୍ୟ ସମୟରେ କବିର ଲେଖନୀ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ । ସୁପ୍ତ ପ୍ରାଣରେ ଏହା ସଂଜୀବନୀ ପରି କାଳ ସଚେତନ କରାଇଥାଏ । କବିଙ୍କର 'ଦେଶବନ୍ଦନା' ଗୁଡିକ ସେହି ଦୃଷ୍ଟିରୁ ଅତି ଶକ୍ତିଶାଳୀ ମନେହୁଅନ୍ତି । ପ୍ରତ୍ୟେକଟିରେ ଦେଶ ଓ ଜାତିକୁ ଅଭିଶପ୍ତ ସମୟ କୁଣ୍ଡଳୀ ମଧ୍ୟରୁ ମୁକ୍ତ କରି ନେବାର ଅପୂର୍ବ ସନ୍ଦେଶ ଭରିରହିଛି । ଦେଶବନ୍ଦନା ଗୁଡିକରେ ହିମାଳୟ ଠାରୁ କୋଣାର୍କ ପର୍ଯ୍ୟନ୍ତ ସମସ୍ତ ଗୌରବ ଗାଥା ଲିପିବଦ୍ଧ କରିବା ସଂଗେ ସଂଗେ ମହାଭାରତ ,ପଞ୍ଚଜନ୍ୟ, ବୁଦ୍ଧଗାନ୍ଧି ଓ ଅଶୋକଙ୍କ ପରି ଚିରନ୍ତନ ସାମାଜିକ ଉପାଦାନ ଏବଂ ଚିରଂଜୀବୀ ଚରିତ୍ର ମାନଙ୍କୁ ନିପୁଣ ଭାବରେ ଖଞ୍ଜିଦେଇ ଏଦେଶ ମାଟିରେ ମହାନତାର ସାମ୍ୟେ ସଂଗୀତ ଗାନକରିଛନ୍ତି -

"ବୁଦ୍ଧ ଗାନ୍ଧୀ, ଅଶୋକ ଦେଶେ ଶାନ୍ତି କପୋତଉଢେ
ଏଦେଶ ଧୂଳିର ପ୍ରତିଟି କଣାରେ ଅଶେଷ ମମତା ଝରେ । "

ଓଡିଶୀ ନୃତ୍ୟ ଓ ସଂଗୀତ ସମଗ୍ର ବିଶ୍ୱ ଦରବାରରେ ନିଜର ସ୍ୱତନ୍ତ୍ର ପ୍ରତିଷ୍ଠା କରିପାରିଛି କବି ତାଙ୍କର ଓଡିଶୀ ସଂଗୀତ କ୍ରମରେ ଲିପିବଦ୍ଧ କରିଥିବା ପନ୍ଦରଟି [illegible] ଗୀତ ଅପୂର୍ବ କଲ୍ଲୋଳରେ ଛନ୍ଦ ମୁଖର ହୋଇଉଠିଛନ୍ତି । ରସଶେଖର ପ୍ରୀତିମୟୀ ଶ୍ରୀରାଧାଙ୍କର ଲୀଳାକୁ ଆଧାରକରି ଅନେକ ଓଡିଶୀର ପ୍ରାଣ ପ୍ରତିଷ୍ଠା କରଯାଇଛି । ଏତଦ୍ ଭିନ୍ନ ଧରାପୃଷ୍ଠରେ ଋତୁ ଚକ୍ରର ଆବେଦନ ମନ ଉଦ୍ୟାନରେ ସୃଷ୍ଟି ହେଉଥିବା ବିଭିନ୍ନ ଭାବ ତରଙ୍ଗ ମାନ କବି ଅତି ସଚେତନ ଭାବରେ ଗୁନ୍ଥି ଦେଉଛନ୍ତି ।

ସେହିପରି ଛନ୍ଦ ଚପଳ ଶିଶୁମାନସର ଭାବାବେଗକୁ ଲକ୍ଷ୍ୟକରି ଓଡିଆ ଶିଶୁ ସାହିତ୍ୟର ପ୍ରବଣତା ଓ ପ୍ରଖ୍ୟାତ କବି ଶ୍ରୀଯୁକ୍ତ ସିଂହ ତାଙ୍କର ଶିଶୁ ଗୀତିମାନ ରଚନା କରିଛନ୍ତି । ନଡିଆ ବାହୁଙ୍ଗାରେ ଭସା ବାଦଲର ବୋହୁଚୋରୀ ଖେଳ । ଖଣ୍ଡିଆ ଭୂତର ପର୍ବତ ସହ ପ୍ରତିଯୋଗୀ ଅଭିପ୍ସା ସଂଗେ ଆଈମା ଗପ ମୁଣିରୁ ପରୀ ମାନଙ୍କର ଯାତ୍ରା ସଂପର୍କୀୟ ଅଭିଲେଖ ଅତ୍ୟନ୍ତ ପ୍ରାଣବନ୍ତ ।

ସଂକଳନର ଅନ୍ତିମ ପର୍ଯ୍ୟାୟରେ ୧୦ ଗୋଟି ଗଜଲ ଓ ୧୦ ଗୋଟି ବ୍ୟଙ୍ଗଗୀତି ସ୍ଥାନ ଦେଇଛନ୍ତି । ଗଜଲ କ୍ରମରେ କବି ଭାବପ୍ରବଣତାର ଚରମସୀମାରେ ଉପସ୍ଥିତ ହୋଇ ବଂଶୀର ସୁରେ ସୁରେ ସୁଦୂର ପ୍ରେମିକାର ସ୍ମୃତି ରୋମନ୍ଥନ କରିଛନ୍ତି । ଜୀବନର ଅନେକ କଥା ଅଭୁଲା ହୋଇ ରହିଯାଏ ଏବଂ ନିତ୍ୟ ପ୍ରତ୍ୟହ ଅସଂଖ୍ୟ ନିସର୍ଗ ତରଙ୍ଗ ମାନସ ଭୂମିରେ ଅନେକ ଦାଗ ଆଙ୍କିଯାଇଥାଏ । ତାକୁ ମଣିଷ କୌଣସି ଭାବରେ ଲିଭାଇ ପାରେନା । ଲୁହ ସବୁ ସ୍ୱପ୍ନ ହୋଇ ଝରିଯାଏତ ପୁଣି ଫଗୁଣ ଛାତିରେ ନିଆଁର ଝଲ ହୋଇ ଜୀବନ ମୃତ ଅବସ୍ଥା ସୃଷ୍ଟି କରିଥାଏ  କବିଙ୍କର "ବନ୍ଧୁ ହେ ଦେଖ ଫଗୁଣ ଜଳୁଛି" ଆଦି ଗଜଲ ମାନଙ୍କରୁ ହିଁ ସେହି ଅପୂର୍ବ ଆବେଗ ଅନୁମିତ ହୁଏ । ଶେଷ ସ୍ତମ୍ଭ ବ୍ୟଙ୍ଗ ଗୀତ କ୍ରମରେ କବିଙ୍କର ଦୃଷ୍ଟି ସମାଜର ପ୍ରତ୍ୟେକଟି ସ୍ତରକୁ ପ୍ରସରିଯାଇଛି । ଚମତ୍କାର ବ୍ୟଞ୍ଜନା ସହ ମଧୁର ଛନ୍ଦର ମିଶ୍ରଣ ବ୍ୟଙ୍ଗ ଗୀତ ଗୁଡିକୁ ମଧ୍ୟ ଅନନ୍ୟ କଳାକ୍ରମରେ ବିଭୂଷିତ କରିପାରିଛି ।

ଢଗଟିଏ ଅଛି- "A Jack of all trades master of none" ମାତ୍ର ଏହି ଭାଗ୍ୟବାନ ତଥା ବିଭୁ ସ୍ନେହାଶ୍ରୀର୍ବାଦ ପ୍ରାପ୍ତ ସ୍ରଷ୍ଟା ଶ୍ରୀଯୁକ୍ତ ନନ୍ଦକିଶୋର ସିଂହଙ୍କ ପାଇଁ ଏହା ସଂପୂର୍ଣ୍ଣ ଭ୍ରମାତ୍ମକ ମନେହୁଏ । ବରଂ ସେ "master of all" ସାହିତ୍ୟର ପ୍ରତ୍ୟେକଟି ସୋପାନରେ ନିଜର ସାରସ୍ୱତ ପ୍ରତିଭାର ନିଦର୍ଶନ କୁ ଆଙ୍କି ଚାଲିଥିବା ଏହି ସ୍ରଷ୍ଟା ଦୀର୍ଘଜୀବୀ ହୁଅନ୍ତୁ । ଏବଂ ଓଡିଆ ସାହିତ୍ୟର ଅମୀୟ ଭଣ୍ଡାରକୁ ନିଜର କଲମ ପ୍ରଦାନ କରି ଇତିହାସର ପୃଷ୍ଠା ମଣ୍ଡନ କରନ୍ତୁ ଏହାହିଁ କାମ୍ୟ ।

ସମୀକ୍ଷକ : ଅକ୍ଷୟ କୁମାର ମହାନ୍ତି,
ଅଧ୍ୟାପକ, - ଓଡିଆ ଭାଷା ଓ ସାହିତ୍ୟ ବିଭାଗ,
ଏ.ପି.କଲେଜ, ସୁଜନପୁର ଯାଜପୁର
ପ୍ରସ୍ତୁତି-  ସ୍ମୃତିଲିପି, ନବବର୍ଷ ସଂଖ୍ୟା-୨୯୦



# ଇଚ୍ଛାବତୀ ନଦୀ

ନନ୍ଦକିଶୋର ସିଂହ ଗୀତିକବିତା ସଂକଳନ ଇଚ୍ଛାବତୀ ନଦୀରେ ୮୦ଟି ଗୀତିକବିତା ସ୍ଥାନ ପାଇଛି । ବିଶେଷ ଭାବେ ଆଦୃତ ଗୀତିକବିତା ଗୁଡିକ ହିଁ ଏ ପୁସ୍ତକରେ ସନ୍ନିବେଶିତ ବୋଲି ଗୀତିକାର ନନ୍ଦକିଶୋର ସିଂହ ନିଜ କଥାରେ କହିଛନ୍ତି । ଏଥିରେ ଥିବା ଗୀତିକବିତା ମଧ୍ୟରୁ ଅନେକ ବିବିଧ ଭାରତୀ ତଥା ଦୂରଦର୍ଶନର ବିଶେଷ ସଂଗୀତ କାର୍ଯ୍ୟକ୍ରମ ସଜଫୁଲ, ରାଗ ମଂଜରୀ, ନିଃସ୍ୱନ, ସଂଧ୍ୟାରାଗ ରେ ପ୍ରସାରିତ ଓ ପ୍ରଚାରିତ । ନନ୍ଦକିଶୋର ନାମିଦାମୀ ଗୀତିକାର । ତାଙ୍କ ଗୀତିକବିତା ସଂବନ୍ଧେ ସମାଲୋଚନା କରିବାର ଅବକାଶ ଖୁବ କମ୍ । ତେବେ ନନ୍ଦକିଶୋର ସିଂହଙ୍କ ବିଶେଷତ୍ୱ ହେଲା ଅଳ୍ପ କଥାରେ ସେ ଅନେକ କିଛି କହିପାରନ୍ତି ଶବ୍ଦ ସଂଯୋଜନାର ଚମତ୍କାରିକା ହିଁ ତାଙ୍କ ରଚନାର ବିଶେଷତ୍ୱ । ଏହି ସଂକଳନର ୪ ପୃଷ୍ଠାରେ ଥିବା କବିତାର ପ୍ରଥମ ଧାଡି ସବୁ ରାତି ଆସେନା ତ ସପନ ନେଇ । "ସବୁ ସ୍ମୃତି ପାରେନା ତ ମରମ ଛୁଇଁ" ଠାରୁ ଆରମ୍ଭ କରି ୫୯ ପୃଷ୍ଠାର "ପୃଥିବୀ ଖୋଜୁଛି ମୋତେ ମୁଁ ଖୋଜିବି ତାରେ, ମୁଁ ମୋର ରହିଛି ସୁଖେ ମୋ ପ୍ରିୟା ପଣତ ତଳେ" ସବୁଠି ଗୀତିକାରଙ୍କ ପ୍ରକାଶିତ ପ୍ରକାଶର ପୁସ୍ତକର ପରିବେଷଣ ଦାଇତ୍ୱ ନେଇଛନ୍ତି ଗ୍ରନ୍ଥ ମନ୍ଦିର, ବିନୋଦ ବିହାରୀ କଟକ । ବନ୍ଧେଇ ୮୦ ପୃଷ୍ଠାର ଏହି ପୁସ୍ତକର ଦାମ ୫୦ ଟଙ୍କା । ପ୍ରଚ୍ଛଦ ଚରାଚରିତ । ତେବେ ୮୦ ଟି ଗୀତିକବିତା ଥିବା ବହିର ଦାମ ୫୦ ଟଙ୍କା ଟିକେ ବେଶି ହେବା ପରି ମନେହୁଏ ।

ସମୟ - ୨୭.୬.୯୯



# ଅନ୍ତର ତଳର ଭାଷା

ପ୍ରଜାତନ୍ତ୍ର ସାପ୍ତାହିକୀ ୭-୧୩ ଏପ୍ରିଲ ୨୦୦୨ ରେ କବିତା ପୁସ୍ତକ ଆବୃତ: ଅନାବୃତ ସମ୍ବନ୍ଧରେ ସମୀକ୍ଷକ ଡ. ବିଜୟା ନନ୍ଦ ସିଂହ ଯାହା କହନ୍ତି-

ସଂପ୍ରତି ପ୍ରକାଶ ପାଇଛି ଗୀତିକବି ନନ୍ଦକିଶୋର ସିଂହଂଙ୍କ କବିତା ସଂକଳନ ଆବୃତ: ଅନାବୃତ । ଏଥିରେ ବିଭିନ୍ନ ପର୍ଯ୍ୟାୟରେ ଏକ ଶତ କବିତା ସଂଯୋଜିତ ହୋଇଛି । ଭିନ୍ନ ଭିନ୍ନ ରୁଚିର କବିତାକୁ ସ୍ୱତନ୍ତ୍ର ଶ୍ରେଣୀଭୁକ୍ତ କରାଯାଇ ପାଠକୀୟ ଦୃଷ୍ଟି ଆକର୍ଷଣ କରାଯାଇଛି । ପରିବାର, ମନ, ପ୍ରେମ, ତେଲଲୁଣ ରାଜନୀତିଠୁ ଆରମ୍ଭ କରି ଯାବତୀୟ ବିଷୟବସ୍ତୁକୁ ଆଧାର କରି କବି କାବ୍ୟ ପ୍ରସ୍ତୁତ କରିଛନ୍ତି ।

ଆବୃତ : ଅନାବୃତରେ ଥିବା କବିତ୍ୱର ସ୍ୱର ମୁଖ୍ୟତଃ ପ୍ରଣୟରାଣ ଆବେଗର । ଏଥିରେ ଛଳ ଛଳ ଭାବ ଅଛି । ଭଙ୍ଗା ପାଇବା ଗୁଣ ଅଛି । ପ୍ରେମ ପ୍ରତି କବିଙ୍କ ଅନୁଚିନ୍ତା ନିଆରା । ସେ ପ୍ରେମ କହିବାର ରୋମାଣ୍ଟିକ ଭାବାବେଗ ଭିତରେ ସୀମିତ ହୋଇ ରହିଯାଇନାହାନ୍ତି । ଗୋଟିଏ ବୃହତ୍ତର ମାର୍ଗ ଆଡକୁ ଅନୁଧାବିତ ହୋଇଛନ୍ତି । ତେବେ ପାର୍ଥିବ ପ୍ରେମ ପ୍ରତି ସେ ଅନୁରକ୍ତ ଏବଂ କ୍ଷଣଭଂଗୁର ଉପରେ ବିଶ୍ୱାସ ରଖନ୍ତି । ପ୍ରେମ ବୁଦ ବୁଦ ପରି କ୍ଷଣିକ । ଜନ୍ମ ମୃତ୍ୟୁ ନେଇ ମଣିଷର ସ୍ଥିତି। ତେବେ ଜୀବନାନୁଚିନ୍ତା ଏବଂ ପ୍ରେମାନୁଚିନ୍ତା ହିଁ ଆମ ପାଇଁ ସବୁଠାରୁ ବଡ ଉପଲବ୍ଧି ଏବଂ ଚିନ୍ତାର ବିଷୟ । କବି ସିଂହଙ୍କ ଜୀବନନାନୁଚିନ୍ତା ବେଶ ବ୍ୟାପକ ଏବଂ ଗଭୀରତ । ତାଙ୍କ ଭାଷାରେ ଜୀବନ କିଛି ସୁଖର ମିଶାଣ/ଜୀବନ କିଛି ଦୁଃଖର ଫେଡାଣ । ତୁମେ ମୁଁ ରୁ ଆରମ୍ଭ ହୋଇଥିବା ପୁସ୍ତକଟି ଧନ୍ୟବାଦ ଜିନ୍ଦାବାଦ ମୁର୍ଦାବାଦରେ ସମାପ୍ତ ହୋଇଛି । ଜୀବନ ଓ ସମାଜର ଅନେକ ଅନାବୃତ ଦିଗକୁ ଉନ୍ମୋଚିତ କରିବା ଦିଗରେ କବି ପ୍ରୟାସୀ ହୋଇଛନ୍ତି । ସହଜ ସ୍ୱକୀୟ ଶୈଳୀ ଏବଂ ଗୀତି ଧର୍ମିତା କବିତା ପୁସ୍ତକ ଟିକୁ ଗଢିତୋଳିଛି । ଅନ୍ୟପକ୍ଷରେ ଦେଖିବାକୁ ଗଲେ ଭ୍ରଷ୍ଟାଚାର ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ଆହ୍ୱାନ ଦେଇଛନ୍ତି । ଏକ କ୍ରାନ୍ତିକାରୀ ବୈପ୍ଳବିକ ଆନ୍ଦୋଳନରେ ସଂରଚନା କରିଛନ୍ତି ।

## ଆବୃତ : ଅନାବୃତ

### ଆବୃତ:

ଅନାବୃତର କବିତା ଗୁଡିକ ମୁକ୍ତ ଛନ୍ଦରେ ଲିଖିତ । କବିତାରେ ଭାବନାର ମୁକ୍ତ ପ୍ରବାହ ଘଟିଛି । ବଧୂଶଙ୍ଖା ସିନ୍ଦୂର ପରି କେତେ ଗୁଡିଏ କବିତା ଅଛି ଯାହାକି ହାଲକା କାବ୍ୟିକ ଗଭୀରତା ନାହିଁ । ତେଲ ଭଳି କେତେକ କବିତାରେ କବିଙ୍କର ପଲିଟିକାଲ ସାଟାୟର ଅତ୍ୟନ୍ତ ଉପଭୋଗ୍ୟ କବିଙ୍କର ଭାବୁକ ମନ ପୁଣି ଖୋଜେ ସାବୁନଟିଏ ଯାହା ସାହାଯ୍ୟରେ ଜୀବନଟା ଚକ୍ ଚକ୍ ହୋଇଯାଆନ୍ତା । ପୁଣି ପ୍ରଥମ ଦେଖାରେ ପ୍ରଥମ ପ୍ରେମ ବଡ ମଧୁର ବଡ ବିଷମ, ଯେମିତି ଛାତି-ଶତ୍ରୁର ପଥର ମାଡ ସହିପାରେ । ପ୍ରେମିକା ଫୁଲର ମାଡେ ଫାଟିଯାଏ ଛାତି । ଆବୃତ : ଅନାବୃତ କବିତାରେ କବି ପ୍ରକୃତି ଓ ପ୍ରବୃତି ମଧ୍ୟରେ ସତର୍କ ଦୂରତା ଦର୍ଶାଇଛି । ଶ୍ରୀ ସିଂହ ମୁଖ୍ୟତଃ ଜଣେ ଗୀତି କବି । ତେଣୁ ତାଙ୍କର ରଚନାରେ ସେହି ଗୀତିମୟତାର ଝଙ୍କାର ଦେଖିବାକୁ ମିଳେ । କିଶୋରୀ ପ୍ରତି ରଚନାରେ କବି ଲେଖିଛନ୍ତି ।

"ହସଭିଜା କିଶୋରୀ ଅଧର
ହଜାରେ ଫଗୁଣଭରା ଫୁଲର ସହର ।"

ଆଜି କାଲି ରାଜନୀତି ଓ ରାଜନୀତି କରୁଥିବା ବ୍ୟକ୍ତି ମାନଙ୍କ ପାଇଁ କବି ନିତାନ୍ତ ନିଷ୍କରୁଣ ଆକ୍ଷେପ କରିଛନ୍ତି ଯେଉଁଥିପାଇଁ ସେମାନେ ପ୍ରକୃତ ଯୋଗ୍ୟ ଏବଂ ଉପଯୁକ୍ତ ।

କ୍ଷୁଦ୍ରଶିଳ୍ପଟିଏ ପ୍ରତିଷ୍ଠା କରି ସ୍ୱାବଲମ୍ବୀ ହେବା ପାଇଁ
ଚେଷ୍ଟାକରି ବିଫଳ ।
ଶିକ୍ଷମନ୍ତ୍ରୀ ପରିବାର ରାଜ୍ୟର ଉନ୍ନତି ପାଇଁ
ଗଢିଦେବି ଯେଉଁ ଶିଳ୍ପାଞ୍ଚଳ
ତୁମ ପିଲା ହେବେ ତହିଁ କୁଲି ମଜଦୁର ।

ଏହି ଘଟଣାର ଜୀବନ୍ତ ଉଦାହରଣ ଆମ ଦେଶରେ ଆଦୌ ବିରଳ ନୁହେଁ । ବହି କଲମ, ଛତା ଜୋତା, ଶେଯ ଚଟେଇ, ତକିଆ ବିଞ୍ଚଣା ଗାମୁଛା ରୁମାଲ ଆଜି କବିଙ୍କର ନିତିଦିନିଆ ସଂସାରର ବିଷୟ ବସ୍ତୁ ନୁହେଁ ଏସବୁ ତାଙ୍କ କବିତାର ଶୀର୍ଷକ ଯେ କୌଣସି ପାର୍ଥିବ ପଦାର୍ଥକୁ ନେଇ କବିତା ଲେଖିବାର ଅଦ୍‌ଭୁତ କ୍ଷମତା କବିଙ୍କର ବାରିହୋଇପଡେ । ଏପରିକି ଦିଆସିଲି ଓ ଚାମଚଟିଏ ମଧ୍ୟ ତାଙ୍କ କବିତାର ଉପଜୀବ୍ୟ । ସମୁଦାୟ ୧୧୨ଟି କବିତାର ସମାହାର ଆବୃତ : ଅନାବୃତ ପାଠକ ମହଲରେ ଆଦୃତ ହେବାର ଆଶା କରାଯାଏ । ପାଦଟୀକା ପ୍ରକାଶନୀର ଏହି ବହିଟିର ମୂଲ୍ୟ ରହିଛି ୬୦ ଟଙ୍କା । ପ୍ରଚ୍ଛଦ ଓଡିଶାର କଳାକୁଶଳତାର ପ୍ରଜ୍ଞାପକ ହୋଇଛି ।
ଚିରସମର୍ଥା-ପୂଜା ସଂଖ୍ୟା-୨୦୦୫

## ପ୍ରୀତି-ପ୍ରିୟା-ପୃଥିବୀ

ମିନି କବିତା ସଂକଳନ ପ୍ରୀତି-ପ୍ରିୟା-ପୃଥିବୀର ସ୍ରଷ୍ଟା ନନ୍ଦକିଶୋର ସିଂହ । ଏକବିଂଶ ଶତାବ୍‌ଦୀର ମାନବକୁ ସମୟ ମିଳେନା ବଡ ବଡ ଗଳ୍ପ କିମ୍ବା କବିତାକୁ ପଢିବାକୁ । ବ୍ୟସ୍ତ ବହୁଳ ଜୀବନରେ ସଂକୁଚିତ ଲେକାପ୍ରତି ତାର ଆଗ୍ରହ । ଏହାକୁ ପାଥେୟ କରି ଆଜି ମିନି ଗପ କବିତାର ଆମ୍ବ ପ୍ରକାଶ । ଏଥିରେ ସନ୍ନିବେସିତ ଜୀବନ, ମାଆ, ବନ୍ଧନ ଅଭାଗା, ସ୍ଫୁଲିଂଗ, ବିଚାରଧାରାର କବିତା ଗୁଡିକ ଯେପରି ମର୍ମସ୍ପର୍ଶୀ ସେପରି ଭାବ ଗମ୍ଭୀର । ଜୀବନ, ପ୍ରେମ ପ୍ରତାରଣା ସତ୍ୟ ଓ ପ୍ରକୃତିକୁ

ନେଇ କବିଙ୍କ ଅବଧାରଣା ଯେ ସିଦ୍ଧ ତାହା କବିତା ଗୁଡିକରୁ ଜଣାପଡେ ।

ପୁସ୍ତକଟି ପାଠକ ପାଠିକାଙ୍କୁ ଆମୋଦିତ କରିବ ।

କବି: ନନ୍ଦକିଶୋର ସିଂହ

ଯୋଗାଯୋଗ: ସୁରବାଳା ସିଂହ

କୋରାଇ, ଯାଜପୁର

ମୂଲ୍ୟ : ଟ ୪୦/-

ପ୍ରସ୍ତୁତି : ପ୍ରଭାତନ୍ତ ୨୪.୭.୨୦୦୬



## ସଂଗୀତର ବିଶେଷ କାର୍ଯ୍ୟକ୍ରମରେ ନନ୍ଦ କିଶୋର ସିଂହ ଙ୍କ ଗୀତ

### ଆକାଶବାଣୀ

ସଜଫୁଲ ମଇ ୧୯୬୪ - ଶିଳ୍ପୀ- ବାଳକୃଷ୍ଣ ଦାସ ଓ ଶୈଳ ମହାପାତ୍ର

ସଜଫୁଲ ଜୁନ ୧୯୬୯ - ଶିଳ୍ପୀ - ବାଳକୃଷ୍ଣ ଦାସ ଓ କ୍ରିଷ୍ଣା ମେହେଟା

ସଜଫୁଲ ମଇ ୧୯୭୧ - ଶିଳ୍ପୀ - ଚିରରଂଜନ ଜେନା

ସଜଫୁଲ ସେପ୍ଟେମ୍ବର ୧୯୭୩ -ଶିଳ୍ପୀ-ଅତିଶ ମଜୁମଦାର ଓ ଆରତୀ ମିଶ୍ର

ସଜଫୁଲ ମାର୍ଚ୍ଚ୧୯୭୬ - ଶିଳ୍ପୀ- ଅର୍ଜୁନ ସାମଲ ଓ ସଂଗୀତା ମହାପାତ୍ର

ସଜଫୁଲ ମଇ ୧୯୭୮ -ଶିଳ୍ପୀ - ଭିକାରୀ ବଳ ଓ ଅଂଜଳୀ ରାୟ

ସଜଫୁଲ ମାର୍ଚ୍ଚ ୧୯୮୦ - ଶିଳ୍ପୀ - ବାଳକୃଷ୍ଣ ଦାସ

ସଜଫୁଲ ମଇ ୧୯୮୩ - ଶିଳ୍ପୀ - ମିହିର ଦାସ ଓ ଅଂଜଳି ରାୟ

ସଜଫୁଲ ମଇ ୧୯୮୬ - ଶିଳ୍ପୀ - ପ୍ରଣବ ପଟ୍ଟନାୟକ ଓ ଗାୟତ୍ରୀ ଘୋଷ

ସଜଫୁଲ ଜୁନ୍ ୧୯୮୮ - ଶିଳ୍ପୀ - ଅନିମା କର ଓ ମନମୋହନ ପ୍ରଧାନ

ସଜଫୁଲ ମଇ ୧୯୯୩ - ଶିଳ୍ପୀ - ବିଭୁଦେନ୍ଦ୍ର ଦାସ ଓ ସୁଚିତ୍ରା ମହାପାତ୍ର

ସଜଫୁଲ ମଇ ୨୦୦୧ - ଶିଳ୍ପୀ - ବିଭୁଦେନ୍ଦ୍ର ଦାସ ଓ ନନ୍ଦିତା ମହାପାତ୍ର

ସଜଫୁଲ ଫେବୃୟାରୀ ୨୦୦୪-ଶିଳ୍ପୀ - ମମତା ଜବି ଓ ବାଦଲ ଆଚାର୍ଯ୍ୟ

ସଜଫୁଲ ଅକ୍ଟୋବର୨୦୦୫ - ଶିଳ୍ପୀ - ଅରବିନ୍ଦ ଦତ୍ତ ଓ ସେଲୁ ମହାନ୍ତି

ରୂପରାଗ ଅକ୍ଟୋବର ୧୯୬୭ - ଶିଳ୍ପୀ- ଇନ୍ଦିରା ନନ୍ଦ

ରୂପରାଗ ଜୁଲାଇ ୧୯୭୨ - ଶିଳ୍ପୀ- ଭୁବନେଶ୍ୱରୀ ମିଶ୍ର

ରୂପରାଗ ସେପ୍ଟେଂବର ୧୯୮୦ - ଶିଳ୍ପୀ - ବାଳକୃଷ୍ଣ ଦାସ

ରାଗ ମଂଜରୀ ଜାନୁୟାରୀ ୧୯୮୨ - ଶିଳ୍ପୀ -ଦାମୋଦର ହୋତା

ରାଗ ମଂଜରୀ ନଭେମ୍ବର୧୯୮୯ - ଶିଳ୍ପୀ - ଆରତୀ ମିଶ୍ର

ରାଗ ମଂଜରୀ ଫେବୃୟାରୀ ୧୯୯୨ -ଶିଳ୍ପୀ -ଇନ୍ଦ୍ରାଣି ମିଶ୍ର

ରାଗ ମଂଜରୀ ଜୁନ୍ ୧୯୯୩ - ଶିଳ୍ପୀ - ଇଂଦ୍ରାଣି ମିଶ୍ର

ରାଗ ମଂଜରୀ ମଇ ୧୯୯୪ - ଶିଳ୍ପୀ - ଇଂଦ୍ରାଣି ମିଶ୍ର

ରାଗ ମଂଜରୀ ଅଗଷ୍ଟ ୧୯୯୭ - ଶିଳ୍ପୀ - ପ୍ରଣବ ପଟ୍ଟନାୟକ

ରାଗ ମଂଜରୀ ଡିସେମ୍ବର ୧୯୯୪ - ଶିଳ୍ପୀ - ସ୍ନିଗ୍ଧାରାଣୀ କର

ରାଗ ମଂଜରୀ ମଇ ୧୯୯୬ - ଶିଳ୍ପୀ - ରଂଜିତା ସେନାପତି

ରାଗ ମଂଜରୀ ଏପ୍ରିଲ ୨୦୦୫ -ଶିଳ୍ପୀ - ମମତା ପରିଡା
ବୈଜୟନ୍ତୀ ଫେବୃୟାରୀ ୧୯୬୫ -ଶିଳ୍ପୀ - ରାଧାରାଣୀ ମହାପାତ୍ର
ଅଂଜଳି ଜୁଲାଇ ୧୯୮୯ - ଶିଳ୍ପୀ - ଶାନ୍ତିଲତା ଛୋଟରାୟ
ଅଂଜଳି ଫେବୃୟାରୀ ୧୯୯୧ - ଶିଳ୍ପୀ - କନକ ବଳବନ୍ତରାୟ
ଅଂଜଳି ଅକ୍ଟୋବର ୧୯୯୦ - ଶିଳ୍ପୀ - ଗୀତା ମିଶ୍ର
ଅଂଜଳି ସେପ୍ଟେଂବର ୧୯୯୧ - ଶିଳ୍ପୀ - ତାନ୍ ସେନ୍ ସିଂହ
ଅଂଜଳି ଡିସେମ୍ବର ୧୯୯୭ - ଶିଳ୍ପୀ - ବନ ବିହାରି ଜେନା
ଅଂଜଳି ଜୁଲାଇ ୧୯୯୯ - ଶିଳ୍ପୀ- ବନ୍ଦିତା ଦାସ ଓ ଦିପ୍ତିମୟୀ ମହାନ୍ତି
ଅଂଜଳି ଜୁନ୍ ୨୦୦୨ - ଶିଳ୍ପୀ - ଶିବାନୀ ଦାସ
ଅଂଜଳି ଫେବୃୟାରୀ୨୦୦୩ - ଶିଳ୍ପୀ- ବିନୋଦ ବିହାରୀ ପଣ୍ଡା
ଅଂଜଳି ଜୁଲାଇ ୨୦୦୪ - ଶିଳ୍ପୀ- ପ୍ରୀତିନନ୍ଦା ରାଉତରାୟ
ଅଂଜଳି ମଇ ୨୦୦୬ - ଶିଳ୍ପୀ- ଅଂଜଳି ମିଶ୍ର

## ବିବିଧଭାରତୀ କଟକ

ବିଶେଷ ଚଂପକ ମାଳା :ଫେବୃୟାରୀ ୧୯୮୯
ନିସ୍ୱନ :ଅକ୍ଟୋବର ୧୯୮୬,ଶେଖର ଘୋଷ ଓ ସଂଗୀତା ମହାପାତ୍ର
ଗୀତି ଧାରା :ଜୁଲାଇ ୧୯୯୧

## ଦୂରଦର୍ଶନ ଭୁବନେଶ୍ୱର

ଜୁଆର : ସେପ୍ଟେମ୍ବର-୧୯୯୦ ଶିଳ୍ପୀ -ଅକ୍ଷୟ ମହାନ୍ତି ଓ ଗୀତା ପଟ୍ଟନାୟକ
ସଂଧ୍ୟା ରାଗ : ଜୁନ୍ ୧୯୯୩-ଶିଳ୍ପୀ -ଅତୀଶ ମଜୁମଦାର ଓ ଇଂଦ୍ରାଣୀ ମିଶ୍ର
ସମବେତ କଣ୍ଠ ଅକ୍ଟୋବର ୧୯୮୦
ସମବେତ କଣ୍ଠ ଅଗଷ୍ଟ ୧୯୯୧

ଏତଦ୍ ବ୍ୟତିତ ଅନେକ ଗୁଡିଏ ସୁଗମ ସଂଗୀତ ବିଭିନ୍ନ ଶିଳ୍ପୀଙ୍କ କଣ୍ଠରୁ ପ୍ରସାରିତ ।

## ପତ୍ର ପତ୍ରିକା

ଝଂକାର, ଜୀବନ ରଂଗ, ସୌରଭ, କାବ୍ୟାଲୋକ, ବାଣୀଚିତ୍ର, ଚିତ୍ରପୁରୀ ଠାରୁ ଆରମ୍ଭ କରି କାଦମ୍ବିନୀ, ସଚିତ୍ର ବିଜୟା, ମୃଣ୍ମୟୀ, ସମାରୋହ, ସହକାର, ଅମୃତାୟନ, ସଂପୂର୍ଣ୍ଣା ଚିର ସମର୍ଥା, କବି, ଅର୍ପିତା, ବର୍ତ୍ତିକା, ସପ୍ତକ, କସ୍ତୁରୀ, ବୋଲେ ହୁଁ ଟି, ସ୍ମୃତିଲିପି ଆଦି ପ୍ରତ୍ୟେକ ପତ୍ର ପତ୍ରିକାରେ ଗୀତି କବିତା ତଥା ଗୀତି କବିତା ଉପରେ ଅଧାରିତ ପ୍ରବଂଧ ପ୍ରକାଶିତ ।

## ଦୂରଦର୍ଶନ ଓ ଆକାଶ ବାଣୀ ରେ ନାଟକ ଓ ରୂପକ

ପ୍ରଥମ ନାଟକ ଉଲୁପି ୧୭.୬.୧୯୬୨ରୁ ୨୦୦୦ ମସିହାର ଦୁର୍ବାସା ଯାଏ ଆକାଶବାଣୀ କଟକ ଓ ବିବିଧଭାରତୀରେ ୭୫ରୁ ଉର୍ଦ୍ଧ୍ୱ ନାଟକ ଓ ରୂପକ ପ୍ରଚାରିତ । ଦୂରଦର୍ଶନରେ ଧାରାବାହିକ ବେଂଗ କହେ ବେଂଗୁଲିଲୋ ୧୯୮୫ରେ ପ୍ରସାରିତ ।

## ନନ୍ଦକିଶୋର ସିଂହ ଙ୍କ ପ୍ରକାଶିତ ରଚନାବଳୀ

କ୍ର.ସଂ ପୁସ୍ତକର ନାମ ବିଭାଗ ପ୍ରକାଶକ ପ୍ରକାଶ କାଳ

୧. ରଂଗ ବେରଂଗ- ଶିଶୁ-ସାହିତ୍ୟ- ଜେ.ମହାପାତ୍ର ଏଣ୍ଡକୋ, କଟକ- ୧୯୭୧ ଆନୁମାନିକ

୨. ସାବାସ ଟୁଟୁ- ଶିଶୁ ସାହିତ୍ୟ- ଜେ.ମହାପାତ୍ର ଏଣ୍ଡକୋ,କଟକ- ୧୯୭୨

୩. ମଜା କାହାଣୀ- ଶିଶୁ ସାହିତ୍ୟ- ଜେ.ମହାପାତ୍ର ଏଣ୍ଡକୋ,କଟକ- ୧୯୮୦

୪. ଟୁଟୁର ରାଇଜ ଫେରି-ଶିଶୁ ସାହିତ୍ୟ- ଜେ.ମହାପାତ୍ର ଏଣ୍ଡକୋ, କଟକ-୧୯୯୧ଓ ୨୦୦୧

୫. ଶିଆଳ ଝିଅର ବାହାଘର- ଶିଶୁ ସାହିତ୍ୟ-ଜେ.ମହାପାତ୍ର ଏଣ୍ଡକୋ, କଟକ- ୧୯୯୨

୬.ଏକ ଦୁଇ ତିନି- ଶିଶୁ ସାହିତ୍ୟ- ନିଖିଳ ଉତ୍କଳ ଶିଶୁମେଳା ସମିତି, ଚଣ୍ଡିଖୋଲ -୨୦୦୦

୭. ପିଲାଙ୍କ କଥା ସରିତ ସାଗର-ଶିଶୁ ସାହିତ୍ୟ-ଗ୍ରନ୍ଥ ମନ୍ଦିର, କଟକ-୧୯୯୦ ଓ ୨୦୦୦

୮.ଶ୍ରୀରାମକୃଷ୍ଣ ଙ୍କ ଉପଦେଶ ୧ମ ଓ ୨ୟ-ଗ୍ରନ୍ଥ ମନ୍ଦିର,କଟକ-୧୯୮୯

୯. କଥାଟିଏ କହୁଁ(ପରୀକଥା)-ଚିନ୍ତା ଓ ଚେତନା,କଟକ-୯- ୧୯୯୧
୧୦.କଥାଟିଏ କହୁଁ(ପୁରାଣ କଥା)-ସୁଧାଂଶୁ ପ୍ରକାଶନ,କଟକ-୯-୧୯୯୧
୧୧.ଗୁରୁଦକ୍ଷିଣା : ସମାଜ ସୁଧାର କାମ(ଶିଶୁ ନାଟିକା)-ଲୋକ ସାହିତ୍ୟ ପ୍ରତିଷ୍ଠାନ,
କଟକ-୨- ୧୯୮୭
୧୨.ସବୁ ମଣିଷ ସମାନ-(ଶିଶୁ ନାଟିକା)-ଲୋକ ସାହିତ୍ୟ ପ୍ରତିଷ୍ଠାନ,
କଟକ-୨- ୧୯୮୭
୧୩. ଦୁଇଟି ନାଟିକା-(ଶିଶୁନାଟିକା)-ଲୋକ ସାହିତ୍ୟ ପ୍ରତିଷ୍ଠାନ,କଟକ-୨- ୧୯୮୬
୧୪.ଆମ ଗାଆଁ ହାଟ -ଶିଶୁ ସାହିତ୍ୟ-ଏସ.ସି.ଇ.ଆର.ଟି, ଭୁବନେଶ୍ୱର-୧୯୮୩
୧୫. ଫେରିବାଲା ଶିଶୁ ସାହିତ୍ୟ-ଏସ.ସି.ଇ.ଆର୍.ଟି, ଭୁବନେଶ୍ୱର-୧୯୮୭
୧୬.ଶ୍ରବଣ କୁମାର-ଶିଶୁ ସାହିତ୍ୟ-ବିଦ୍ୟାପୁରୀ ,କଟକ-୧୯୯୧ ଓ ୨୦୦୪
୧୭. ପୁରାଣ କଥା -ଶିଶୁ ସାହିତ୍ୟ-ବିଦ୍ୟାଭାରତୀ ,କଟକ-୨୦୦୨
୧୮. ଗୀତିଗୁଚ୍ଛ-ଗୀତି କବିତା-ବୈତରଣୀ ଆର୍ଟପ୍ରେସ-ଚାନ୍ଦବାଲି-୧୯୭୦
୧୯.ଗୀତି ଓ ଗଜଲ୍ -ଗୀତି କବିତା -ଗ୍ରନ୍ଥ ମନ୍ଦିର,କଟକ-୧୯୭୭
୨୦.ଇଚ୍ଛାବତୀ ନଦୀ-ଗୀତି କବିତା -ସୁରବାଳା ସିଂହ,କୋରେଇ-୧୯୯୭
୨୧.ନନ୍ଦକିଶୋର ଗୀତିବିଚିତ୍ରା-ଗୀତି କବିତା -ଅକ୍ଷର, କଲ୍ୟାଣୀ ନଗର ,କଟକ-୧୯୯୯
୨୨.ଆବୃତ ଅନାବୃତ-କବିତା-ପାଦଟୀକା,କଲ୍ୟାଣୀ ନଗର ,କଟକ-୨୦୦୧
୨୩.ମାନସୀ ଗବେଷଣାଗାର-ଏକାଂକୀ ସଂଗ୍ରହ-ଓଡିଶା ବୁକ୍‌ଷ୍ଟୋର,କଟକ-୧୯୮୨
୨୪. ଲହୁଲୁହ-ମଂଚ ନାଟକ-ଗ୍ରନ୍ଥ ମନ୍ଦିର,କଟକ-୧୯୮୮
୨୫.ମୃଣାଳିନୀ-ବଂକିମଚନ୍ଦ୍ର ଙ୍କ ଅନୁଦିତ ଉପନ୍ୟାସ-ଗ୍ରନ୍ଥ ମନ୍ଦିର,
କଟକ-୧୯୮୫,୧୯୯୧
୨୬. ଇନ୍ଦିରା ଓ ଯୁଗଳଅଂଗୁରୀୟ-ବଂକିମଚନ୍ଦ୍ରଙ୍କ ଅନୁଦିତ ଉପନ୍ୟାସ-ଗ୍ରନ୍ଥ
ମନ୍ଦିର,କଟକ-୧୯୮୫
୨୭. କୃଷ୍ଣକାନ୍ତଙ୍କ ଉଇଲ -ବଂକିମଚନ୍ଦ୍ର ଙ୍କ ଅନୁଦିତ ଉପନ୍ୟାସ-ଗ୍ରନ୍ଥ ମନ୍ଦିର,
କଟକ-୧୯୮୬
୨୮.ଘରଛଡାରକାହାଣୀ-ଅନୁଦିତ ଉପନ୍ୟାସ-ଗ୍ରନ୍ଥ ମନ୍ଦିର,କଟକ-୧୯୮୨
୨୯.ଉଇଲର କାହାଣୀ-ଅନୁଦିତ ଉପନ୍ୟାସ-ଗ୍ରନ୍ଥ ମନ୍ଦିର,କଟକ-୧୯୮୨
୩୦. ସୁଇସ ରବିନ୍‌ସନ-ଅନୁଦିତ ଉପନ୍ୟାସ-ଗ୍ରନ୍ଥ ମନ୍ଦିର,କଟକ-୧୯୮୦ ଓ ୧୯୯୩
୩୧. ଅରଣ୍ୟର ଆହ୍ୱାନ-ଅନୁବାଦ-ଗ୍ରନ୍ଥ ମନ୍ଦିର,କଟକ-୧୯୮୧ ଓ ୧୯୯୫

୩୨.ଲର୍ଡଜିମ୍-ଅନୁବାଦ-ଗ୍ରନ୍ଥ ମନ୍ଦିର,କଟକ-୧୯୮୪

୩୩.ଯେତେ ଦିଅଁ ସେତେ ପୂଜା-ନବସାକ୍ଷର ପାଇଁ-ଚିନ୍ତା ଚେତନା-୧୯୮୭

୩୪.ମୋ ଗାଆଁ ମୋ ମାଆ-ନବସାକ୍ଷର ପାଇଁ-ଗୁରୁଜୀ ବୁକ୍‌ଷ୍ଟୋର-୧୯୮୬

୩୫.ଢ଼ଗଢ଼ମାଳୀ ଗଣ୍ଡଗୋଳ କଥା-ନବସାକ୍ଷର ପାଇଁ-ଲୋକ ସାହିତ୍ୟ ପ୍ରତିଷ୍ଠାନ-୧୯୮୬/୯୭

୩୬.ନୂଆ ସକାଳ- ନବସାକ୍ଷର ପାଇଁ-ଲୋକ ସାହିତ୍ୟ ପ୍ରତିଷ୍ଠାନ-୧୯୮୭

୩୭.ସକଳ ଘଟେ ନାରାୟଣ-ନବସାକ୍ଷର ପାଇଁ-ଗୁରୁଜୀ ବୁକ୍‌ଷ୍ଟୋର-୧୯୮୬

୩୮.ସୁଜାତା ସେବା ସମିତି -ନବସାକ୍ଷର ପାଇଁ-ସନକ ପବ୍ଲିସର୍ସ-୨୦୦୦

୩୯.ପ୍ରୀତି-ପ୍ରିୟା-ପୃଥିବୀ -କବିତା-ସୁରବାଳା ସିଂହ-କୋରେଇ-୨୦୦୬

୪୦. [illegible]

<u>ଶିଶୁ ସାହିତ୍ୟିକ ଗୀତିକାର ନାଟ୍ୟଶିଳ୍ପୀ ଓ ନାଟ୍ୟକାର ନନ୍ଦକିଶୋର ସିଂହଙ୍କୁ</u>
<u>ପ୍ରଦତ୍ତ ପୁରସ୍କାର ଓ ସମ୍ମାନ</u>

ବିଷୁବ ମିଳନ ପ୍ରଜାତନ୍ତ୍ର ମୀନାବଜାର ପୁରସ୍କାର-୧୯[illegible]

ଅନ୍ନପୂର୍ଣ୍ଣା ଥିଏଟର ନାଟ୍ୟକାର ଓ ନାଟ୍ୟ ଶିଳ୍ପୀ ସମ୍ମାନ-୧୯୮୩

ମନୋରମା ପାଠାଗାର ସମ୍ମାନ, ଯାଜପୁର ରୋଡ - ୧୯୮୪

ଓଡିଶା ଶିଶୁ ସାହିତ୍ୟ ପରିଷଦ, ସମ୍ବଲପୁର ସମ୍ମାନ-୧୯୮୫

କୋରେଇ ମଂଡଳ ସାହିତ୍ୟ ସଂସଦ ସମ୍ମାନ-୧୯୮୫

ରାଜ୍ୟ ସ୍ତରୀୟ ଶିଶୁ ନାଟକ ଉତ୍ସବର ସୂର୍ଯ୍ୟଶିଖା ସମ୍ମାନ-୧୯୮୬

କୁଆଁତାରାଶିଶୁ ସାହିତ୍ୟ ସମ୍ମାନ-୧୯୮୭

ସଂସାର ପତ୍ରିକା ସମ୍ମାନ-୧୯୮୭

ପଣ୍ଡିତ ଉପେନ୍ଦ୍ର ତ୍ରିପାଠୀ ଶିଶୁ ସାହିତ୍ୟ ପୁରସ୍କାର- ୧୯୯୦

କନକ ଦୁର୍ଗା ମୋତି ମହଲ ଚୁଉକୁମୁଷି ସମ୍ମାନ- ୧୯୯୦

କେନ୍ଦୁଝର ଜିଲ୍ଲା ସ୍ତରୀୟ ଶିଶୁ ସାହିତ୍ୟ ସମ୍ମାନ-୧୯୯୨

୪୪ତମ ବିଷୁବ ମିଳନ ପ୍ରଜାତନ୍ତ୍ର ମୀନାବଜାର ଓ ଗୀତି କବିତା ପୁରସ୍କାର-୧୯୯୩

ବୀରେନ୍ଦ୍ର ଭୂୟାଂ ସ୍ମୃତି ଗୀତି କବିତା ପୁରସ୍କାର-୧୯୯୩

ଯାଜପୁର ରୋଡ ମିନିବସ୍ ଓ ଟ୍ୟାକ୍ସି ଆସୋସିଏସନ ସମ୍ମାନ-୧୯୯୪

ସାଂସ୍କୃତିକୀ ସମ୍ମାନ-ଯାଜପୁରରୋଡ-୧୯୯୪

ଅରୁଣ-ତରୁଣ ଶିଶୁ ଓ କିଶୋର ସାହିତ୍ୟ ସମ୍ମାନ-୧୯୯୬

୪୮ତମ ବିଷୁବ ମନୋଜ ସ୍ମାରକୀ ପୁରସ୍କାର-୧୯୯୭
ବନଜ୍ୟୋସ୍ନା ସାହିତ୍ୟ ସଂସଦ ଗଳ୍ପ ସମ୍ମାନ-୧୯୯୭
ସାରସ୍ୱତ ସାହିତ୍ୟ ଓ ସଂସ୍କୃତି ପରିଷଦ, ଦଶରଥପୁର ବର୍ତ୍ତିକା ସମ୍ମାନ-୧୯୯୭
ଓଡ଼ିଆ ଗୀତିକବି ସମାଜ ସ୍ୱୀକୃତି ପତ୍ର-୧୯୯୭
A.B.I U.S.A ଅବୈତନିକ ସଂପାଦକ ସ୍ୱୀକୃତି-୧୯୯୮
R.I.O.C.L quizz ସମ୍ମାନ-୧୯୯୮
ନିଖିଳ ଉତ୍କଳଶିଳ୍ପୀ ପରିଷଦ ଶ୍ରୀ ଜଗନ୍ନାଥ ସମ୍ମାନ-୧୯୯୯
କୁଶଳେଶ୍ୱର ସାହିତ୍ୟ ସଂସଦ ସମ୍ମାନ-୧୯୯୯
ମାଣିକ୍ୟ ବିଶ୍ୱନାଥ ଟ୍ରଷ୍ଟ ଶିଶୁ ସାହିତ୍ୟ ପୁରସ୍କାର-୨୦୦୧
ଫକୀର ମୋହନ ସାହିତ୍ୟ ପରିଷଦ ପୁରସ୍କାର-୨୦୦୧
ଯାଜପୁର ଟାଇମ୍ସ ସମ୍ମାନ-୨୦୦୧
ଦୈନିକ ଆଜିକାଲି ସମ୍ମାନ-୨୦୦୧
ଶ୍ରୀକ୍ଷେତ୍ର ଶିଶୁ ସାହିତ୍ୟ ସଂସଦ ପୁରସ୍କାର-୨୦୦୧
ଭକ୍ତ ସାଲବେଗ ସାଂସ୍କୃତିକ ପରିଷଦ ସମ୍ମାନ-୨୦୦୨
ଉତ୍କଳ ସାହିତ୍ୟ ସମାଜ ସମ୍ମାନ (ଶତବାର୍ଷିକୀ)- ୨୦୦୨
ବ୍ୟାସନଗର ସାହିତ୍ୟ ସଂସଦ ସମ୍ମାନ-୨୦୦୨
ସ୍ମୃତିଲିପି ଶିଶୁ ସାହିତ୍ୟ ସମ୍ମାନ-୨୦୦୨
ସରାର ସ୍ମୃତି ସଂସଦ ସମ୍ମାନ-୨୦୦୩
ଶିଶୁ ବଜାର ଶିଶୁ ସାହିତ୍ୟ ସମ୍ମାନ-୨୦୦୪
ଯାଜପୁର ଜିଲ୍ଲା ଲେଖକ ପ୍ରତିଭା ସମ୍ମାନ-୨୦୦୪
ବିଶ୍ୱମୈତ୍ରୀ ସଂଗଠନ ପ୍ରତିଭା ସମ୍ମାନ-୨୦୦୪
କାଳାନ୍ତର କାନ୍ତ କବି ଲକ୍ଷ୍ମୀକାନ୍ତ ସମ୍ମାନ-୨୦୦୪
ଓଡ଼ିଶା ସାହିତ୍ୟ ଏକାଡେମୀ ଗୀତି କବିତା ପୁରସ୍କାର-୨୦୦୫(୨୦୦୧ ପାଇଁ)
ବ୍ୟାସନଗର ମହାବିଦ୍ୟାଳୟ ଭାଷା ସାହିତ୍ୟ ବିଭାଗ ସମ୍ମାନ-୨୦୦୫
ସ୍ମୃତିଲିପି ଆଇନଜୀବୀ ପ୍ରଫୁଲ୍ଲ ଧଳ ସ୍ମୃତିସମ୍ମାନ-୨୦୦୫
·ଆକାଶବାଣୀ କଟକ ରିକ୍ରିଏସନ୍ କ୍ଲବର ଶ୍ରେଷ୍ଠ ଗୀତିକାର ସମ୍ମାନ-୨୦୦୫
ଓଡ଼ିଶା [illegible] - ୨୦୦୭

## ନନ୍ଦକିଶୋର ସିଂହଙ୍କ ଆନୁଷ୍ଠାନିକ ସଂପୃକ୍ତି

**ଆଜୀବନ ସଭ୍ୟ :**

- ପ୍ରଜାତନ୍ତ୍ର ପ୍ରଚାର ସମିତି ଆନୁକୂଲ୍ୟରେ ପ୍ରକାଶିତ ମୀନା ବଜାରର ଆଜୀବନ ମାନା
- ଉତ୍କଳ ସାହିତ୍ୟ ସମାଜ, କଟକ
- ଓଡିଆ ଗୀତି କବି ସମାଜ
- ନିଖିଳ ଉତ୍କଳ ଶୀଳ୍ପୀ ପରିଷଦ
- ସର୍ବ ଭାରତୀୟ ଶିଶୁ ସାହିତ୍ୟିକ ସଂସ୍ଥା A.I.J.L.C
- ଓଡିଆ ଶିଶୁ ଲେଖକ ଏକାଡେମୀ ୟୁନିଟ୍ ଭୁବନେଶ୍ୱର
- ଶିଶୁ ସାହିତ୍ୟ ଏକାଡେମୀ, ଭୁବନେଶ୍ୱର
- ଶିଶୁ ସାହିତ୍ୟ ଗବେଷଣା ପରିଷଦ,R.I.O.C.L
- ପ୍ରଚେତା ସାହିତ୍ୟ ସଂସଦ, ପ୍ରୀତିପୁର, ଉତରକୂଳ ହାଟ, ଯାଜପୁର
- ସାରସ୍ୱତ ସାହିତ୍ୟ ଓ ସଂସ୍କୃତି ପରିଷଦ, ଦଶରଥପୁର, ଯାଜପୁର
- ଓଡିଶା ଶିଶୁ ଲେଖକ ପରିଷଦ, କଟକ

**ସଂପାଦନା :**

A.B.I. ସଂସ୍ଥା U.S.A ର ଅବୈତନିକ ସଭ୍ୟ(ସଂପାଦନା ମଣ୍ଡଳୀର)

ପଲ୍ଲୀ ଜୀବନଧର୍ମୀ ତ୍ରୈମାସିକ ପତ୍ରିକା ବୋଲେହୁଁଟି ର ମୁଖ୍ୟ ସଂପାଦକ

**ଉପଦେଷ୍ଟା :**

ବିଶ୍ୱ ମୈତ୍ରୀ ସଂଗଠନ, ଆଲିଆ, ଯାଜପୁର

ସ୍ମୃତିଲିପି ପତ୍ରିକା, ହଳଦି ଗଡିଆ, କୋରେଇ, ଯାଜପୁର

ଫୁଲ ବଉଳ ବେଣୀ କିଶୋର ଓ ଶିଶୁ ସାହିତ୍ୟ ପ୍ରତିଷ୍ଠାନ, ଆଳି

**ସଭାପତି :**

କୋରେଇ ମଣ୍ଡଳ ସାହିତ୍ୟ ସଂସଦ, କୋରେଇ ଯାଜପୁର

**ଉପସଭାପତି :**

ବିବର୍ତ୍ତନ ସାଂସ୍କୃତିକ ମଂଚ, ଯାଜପୁର ରୋଡ

**ପୁରସ୍କାର ସ୍ରଷ୍ଟା**

କୋରେଇ ମଣ୍ଡଳ ସାହତ୍ୟ ସଂସଦ, ତରଫରୁ ପର୍ଯ୍ୟାୟକ୍ରମେ ଗୀତିକବିତା ଓ ଶିଶୁ ସାହିତ୍ୟ ପାଇଁ 'କସ୍ତୁରୀ' ପୁରସ୍କାରର ବ୍ୟବସ୍ଥାପକ ।

ଉତ୍କଳ ସାହିତ୍ୟ ସମାଜ ତରଫରୁ ପିତା ମାତାଙ୍କ ସ୍ମୃତିରେ ନବ-ରୂପା-ରାଜ ଗୀତି କବିତା ପୁରସ୍କାର ପାଇଁ ଆର୍ଥିକ ବ୍ୟବସ୍ଥା ।

# କୃତଜ୍ଞତା ସ୍ୱୀକାର

ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ କୃତକାର୍ଯ୍ୟ ହୋଇଥିବା ଜାଣି ସର୍ବ ପ୍ରଥମେ ଟେଲିଗ୍ରାମ ମାଧ୍ୟମରେ ମୋତେ ଅଭିନନ୍ଦନ ଜଣାଇଥିଲେ ମୋର ଜଣେ ତଳଶ୍ରେଣୀରେ ପଢୁଥିବା ଛାତ୍ର ମହମ୍ମଦ ଜାହିଦ୍ (ମୁକ୍ତି ବଗିଚା)

ଏଇ କୃତକାର୍ଯ୍ୟ ପାଇଁ ସମ୍ବଲପୁରରୁ ଦୁଇଜଣ ପତ୍ର ବାନ୍ଧବୀ ବିରଜା ପ୍ରଧାନ ଏବଂ ପଦ୍ମିନୀ ହୋତା ଅଭିନନ୍ଦନ ଜଣାଇଥିଲେ ।

ପ୍ରଜାତନ୍ତ୍ରରେ ମୀନାବଜାରର ସଂଯୋଜିକା ନୀହାର ଅପା ମଧ୍ୟ ଏଥିପାଇଁ ଅଭିନନ୍ଦନ ଜଣାଇଥିଲେ । ସମସ୍ତଙ୍କୁ ଆନ୍ତରିକତା ସହ ସ୍ମରଣ କରୁଛି ଏବଂ କୃତଜ୍ଞତା ଜ୍ଞାପନ କରୁଛି ।

ଠିକ୍ ସେହିପରି ଘରୋଇ ଭାବେ ବି.ଏ ପାଶ କରିବା ପରେ ମୋତେ ଅଭିବାଦନ ପ୍ରଥମେ ଜଣାଇଥିବା ମୋର ପ୍ରିୟ ବାଲ୍ୟ ବନ୍ଧୁ ହଜାରୀ ଅବଦୁଲ୍ ବାରୀଙ୍କୁ କୃତଜ୍ଞତା ଜଣାଉଛି ।

ବେତାର ନାଟକ ମାନସୀ ଗବେଷଣା ଗାର ଆକାଶବାଣୀ କଟକରୁ ପ୍ରଚାରିତ ହେବା ପରେ O.U.A.T ଭୁବନେଶ୍ୱର, S.C.B. Medical College, Cuttack ର ବନ୍ଧୁ ଛାତ୍ର ଛାତ୍ରୀ ମାନେ ମୋତେ ପତ୍ର ମାଧ୍ୟମରେ ଅଭିବାଦନ ଜଣାଇଥିଲେ । ସେମାନଙ୍କୁ ସ୍ମରଣ କରୁ ଛି ।

ଓଡିଶା ସାହିତ୍ୟ ଏକାଡେମୀ ତରଫରୁ ୨୦୦୧ ପାଇଁ ଗୀତି କବିତା ରେ ପୁରସ୍କୃତ ହୋଇଥିବାରୁ ଯେଉଁମାନେ ମୋତେ ବଧାଇ ଓ ଶୁଭେଚ୍ଛା ଜଣାଇଥିଲେ ସେମାନଙ୍କୁ ସ୍ମରଣ କରୁଛି ଓ କୃତଜ୍ଞତା ଜ୍ଞାପନ କରୁ ଛି । ସେମାନଙ୍କ ମଧ୍ୟ ଏଠାରେ କ୍ରମାନ୍ୱୟରେ ଉଲ୍ଲେଖ କରିବା ଉଚିତ ମନେ କରୁ ଛି ।

ଓଡିଶା ସଂଗୀତ ନାଟକ ଏକାଡେମୀ ୨୦୦୬ ମସିହାରେ ମୋତେ ଗୀତିକବି ପୁରସ୍କାର ପ୍ରଦାନ କରିବାକୁ ଘୋଷଣା କରିଥିବା ଶୁଣି ଯେଉଁ ଉଦାର ବ୍ୟକ୍ତିତ୍ୱ ମୋତେ ଅଭିନନ୍ଦନ ଜଣାଇଛନ୍ତି ସେମାନଙ୍କୁ ମୋର ଗଭୀର କୃତଜ୍ଞତା ଜ୍ଞାପନ କରୁଅଛି ।

# କୃତଜ୍ଞତା ସ୍ୱୀକାର

ରବୀନ୍ଦ୍ର ନାଥ ଦାସ (ଭୁବନେଶ୍ୱର), ଇଂ ପ୍ରଭାକର ସ୍ୱାଇଁ (କଟକ), ସୂର୍ଯ୍ୟମଣି ଖୁଣ୍ଟିଆ (ବେଗନା), ମଂଙ୍କୁ ଦାସ (ନରସିଂହପୁର), ବୀଣାପାଣି ପଣ୍ଡା (ଯାଜପୁର), ସୂର୍ଯ୍ୟମଣି ସାମନ୍ତରାୟ (କଟକ), ଡ. ମଦନ ମୋହନ ମିଶ୍ର (ବାଣପୁର), ଶାନ୍ତନୁ ସାହୁ (କୋରେଇ), କୃଷ୍ଣଚନ୍ଦ୍ର ମହାରଣା (ତାରାକୋଟ), ବଟକୃଷ୍ଣ ସ୍ୱାଇଁ (କଟକ), ରମେଶ ଚନ୍ଦ୍ର ଭଂଜ (ଖୋର୍ଦ୍ଧା), ଓଁ ଈଶ୍ୱରୀ କବିକନ୍ୟା (ତାଳଚେର), କୁଳମଣି ଜେନା (ଭୁବନେଶ୍ୱର), ମନୋଜ ପଟ୍ଟନାୟକ (କଟକ), ପ୍ରିୟଙ୍କରୀ (ଭୁବନେଶ୍ୱର), ଶ୍ୟାମସୁନ୍ଦର ସୁବୁଦ୍ଧି (ଭୁବନେଶ୍ୱର), ହଂସନାଥ ମୁଦୁଲି (ଭୁବନେଶ୍ୱର), ଡ. ବିଜୟାନନ୍ଦ ସିଂହ (କଟକ), ଆଶୁତୋଷ ରାୟ ଓ ଅଂଜଳି ରାୟ (ଭୁବନେଶ୍ୱର), ମହମ୍ମଦ ଆୟୁବ (କଟକ), ଇଂ ନନ୍ଦ ମହାନ୍ତି (ଭଦ୍ରକ), ଭୁବନ ମୋହନ ମହାନ୍ତି (ହଳଦିଗଡିଆ), ଗୌରହରି ଦଳାଇ (କଟକ), ସ୍ନେହଲତା ମହାପାତ୍ର (ବ୍ରହ୍ମେଶ୍ୱର), ଶ୍ରୀଦେବ (ବାଲେଶ୍ୱର), ଆନନ୍ଦ ଚନ୍ଦ୍ର ପହି (ଭୁବନେଶ୍ୱର), ପ୍ରିୟନାଥ ମହାପାତ୍ର (ସିଦ୍ଧିପୁର), ବିନୋଦିନୀ ଦେବୀ (ଭୁବନେଶ୍ୱର), ଗୋପାଳ ଚନ୍ଦ୍ର ମହାରଣା (ଧର୍ମଶାଳା), ରମାକାନ୍ତ ଜେନା (ଜାରକା), ବାଇଧର ମାଝୀ (ପାଟୁଳି), ପୂର୍ଣ୍ଣଚନ୍ଦ୍ର ବଳ (ରାଜକନିକା), ଡ. ମନୀନ୍ଦ୍ର ମହାନ୍ତି (ଭଦ୍ରକ), ଡ. ଚକ୍ରଧର ବିଶ୍ୱାଳ (ଶାଳକଣା), କୁମୁଦୁନୀ ପୃଷ୍ଟି (ସିମୁଳିଆ ବରି), ତ୍ରିଲୋଚନ ପଥାଳ (ରାଉରକେଲା), ଦିପ୍ତୀ ଦାସ (ବାଲେଶ୍ୱର), ରାମଚନ୍ଦ୍ର ଦାସ (ଯାଜପୁର), କାଳୀପ୍ରସନ୍ନ ପରିଜା (ବନ୍ଧମୁଣ୍ଡା), ଡ. ବସନ୍ତ କିଶୋର ସାହୁ (କୋରାପୁଟ), କାର୍ତ୍ତିକ ଚନ୍ଦ୍ର ଦ୍ୱିବେଦୀ (ରଣସରପୁର), ଶଂକର୍ଷଣ ପଣ୍ଡା (ଭୁବନେଶ୍ୱର), ଡ. ଜ୍ୟୋତିର୍ମୟୀ ମହାନ୍ତି (ବାଘସାହି), ଶକ୍ତି ମହାନ୍ତି (ଭୁବନେଶ୍ୱର), ଯୋଗୀନ୍ଦ୍ର ସାହୁ (ମହୁଲପାଳ), ଶିବାଜୀ ଜୀ (ରସାଳପୁର), କାଳିନ୍ଦୀ ଜେନା (ଆଳି), କମଳ କୁମାର ପଟ୍ଟନାୟକ (କଟକ), ଗିରିଧାରୀ ସ୍ୱାଇଁ (ଯାଜପୁର), ଗିରିଜା ପ୍ରସାଦ ବସୁ (ବ୍ୟାସନଗର), ବ୍ରଜକିଶୋର ମହାନ୍ତି (ଯଖପୁରା), ପ୍ରଫେସର ଡ. ଶରତ ଚନ୍ଦ୍ର ରଥ (ବାଣୀବିହାର),

ଚିନ୍ମୟୀ ଷଡଙ୍ଗୀ (ଭୁବନେଶ୍ୱର), ବଂକିମ ମହାରଣା (ବରି ବାଲେଶ୍ୱର), ଗୌତମ ମହାରଣା (ଭଦ୍ରକ), ଜ୍ୟୋତ୍ସ୍ନା ରାଉତରାୟ (ବରଗଡ), ପ୍ରଫେସର ବାବାଜୀ ଚରଣ ପଟ୍ଟନାୟକ ( ପୁରୀ), ଡ. ଲକ୍ଷ୍ମୀକାନ୍ତ ଖୁଣ୍ଟିଆ (ଭୁବନେଶ୍ୱର), ଡ. ରମେଶ ଚନ୍ଦ୍ର ବିଶ୍ୱାଳ (ମଂଗଳପୁର), ବୃନ୍ଦାବନ ଜେନା (ଭୁବନେଶ୍ୱର), ସୁରୁଚିପ୍ରଭା ଦାଶ (ଚାନ୍ଦବାଲି), ଶକୁନ୍ତଳା ଚକ୍ରବର୍ତ୍ତୀ (କେନ୍ଦୁଝର), ବସନ୍ତ ମଲ୍ଲିକ ( କେନ୍ଦୁଝର), ଗୋପୀନାଥ ଦାସ (ବ୍ରାହ୍ମଣ କୁଶ ଡିହ), ଅଧ୍ୟାପକ ଶିବପ୍ରସାଦ ମାଝି (ପାଟୁଲି), ଶିବପ୍ରସାଦ ଜେନା (ରାଜକନିକା), ସୌରିବଂଧୁକର (ଭୁବନେଶ୍ୱର), ବିଦ୍ୟାଧର ସାହୁ (ଧର୍ମଶାଳା), କବିବର ପରିଡା (ରାଉରକେଲା), ଅନ୍ତର୍ଯ୍ୟାମୀ ସାମଲ (ଯାଜପୁର), ଦୀପକ ମଲ୍ଲିକ (ଆଳି), ଡ. ବୀଣାପାଣି ମହାନ୍ତି (କଟକ), ଅରୁଣ ଖିଲାର (ବାରିକପୁର), ଅଭିରାମ ସାହୁ (ବରୀ), ଡ. ଲକ୍ଷ୍ମଣକୁମାର ଜେନା (ଜଳେଶ୍ୱର), ଅଶୋକ ସାହୁ (ତିତିରା), ଜଗନ୍ନାଥ ପଣ୍ଡା (ସରପଦା), ଗୌରାଙ୍ଗ ଚନ୍ଦ୍ର ଦାସ (ରାଉରକେଲା), ପ୍ରମୋଦ ତ୍ରିପାଠୀ (କିଁଗିଦ୍ରୁନ୍ନ), ସୁବାସ ଜେନା (ନିଗୋଧା), ଶୁଚିସ୍ମିତା ମହାନ୍ତି (ପୁରୀ), ରତ୍ନାକର ମିଶ୍ର (ଆଳି) ।

## ସମ୍ବର୍ଦ୍ଧିତ କରିଥିବା ଅନୁଷ୍ଠାନ

ବ୍ୟାସନଗର ମହାବିଦ୍ୟାଳୟ ଭାଷା ସାହିତ୍ୟ ବିଭାଗ (ଯାଜପୁର ରୋଡ), କୋରେଇ ମଣ୍ଡଳ ସାହିତ୍ୟ ସଂସଦ (କୋରେଇ), ଯାଜପୁର ଜିଲ୍ଲା ଲେଖକ ସମ୍ମେଳନ , କୋରେଇ ନାଗରିକ ସମିତି (କୋରେଇ), ସାଦକପୁର ଗ୍ରାମ ପଞ୍ଚାୟତ (କୋରେଇ), ସମସ୍ତ ଅନୁଷ୍ଠାନକୁ ମୋର ଗଭୀର କୃତଜ୍ଞତା । ସେହିପରି ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର ଭୁବନେଶ୍ୱର, ଓଡିଶା ସରକାରଙ୍କ ବିଦ୍ୟାଳୟ ଗଣ ଶିକ୍ଷା ବିଭାଗ, ଓଡିଶା ସାହିତ୍ୟ ଏକାଡେମୀ, ବିଭିନ୍ନ କାର୍ଯ୍ୟାବଳୀ ସଂପର୍କରେ ମୋତେ ସଭ୍ୟ/ପରାମର୍ଶ ଦାତା / ପୁରସ୍କାର ଚୟନକର୍ତ୍ତା ଭାବେ ଗ୍ରହଣ କରିଥିବାରୁ କୃତଜ୍ଞତା ଜ୍ଞାପନ କରୁଛି ।

ଓଡିଶା ସଂଗୀତ ନାଟକ ଏକାଡେମୀ ୨୦୦୬ ମସିହାରେ ମୋତେ ଗୀତିକବି ପୁରସ୍କାର ପ୍ରଦାନ କରିବାକୁ ଘୋଷଣା କରିଥିବା ଶୁଣି ଯେଉଁ ଉଦାର ବ୍ୟକ୍ତିତ୍ୱ ମୋତେ ଅଭିନନ୍ଦନ ଜଣାଇଛନ୍ତି ସେମାନଙ୍କୁ ମୋର ଗଭୀର କୃତଜ୍ଞତା ଜ୍ଞାପନ କରୁଅଛି ।

## ସେମାନେ ~~ରହିଛନ୍ତି~~

ନିତ୍ୟାନନ୍ଦ ପଣ୍ଡା (ଯାଜପୁର), ମନୋଜ ପଟ୍ଟନାୟକ (କଟକ), କ୍ଷୀରୋଦ ଚନ୍ଦ୍ର ପଥାଙ୍କ (ଗୋପପୁର ନିଷ୍ଟିନ୍ତ କୋଇଲି), ମିନାକ୍ଷୀ ଦେବୀ (କଟକ), ହଂସନାଥ ମୁଦୁଲି (ଭୁବନେଶ୍ୱର), କମଳ କୁମାର ପଟ୍ଟନାୟକ (କଟକ), ସୂର୍ଯ୍ୟମଣୀ ଖୁଣ୍ଟିଆ (ବେଗନା), ବିନୋଦିନୀ ଦେବୀ (ଭୁବନେଶ୍ୱର), ସଚ୍ଚି ମହାନ୍ତି (ସୁଜନପୁର), ମଂଜୁ ଦାସ (ଜଗତସିଂହପୁର), କୃଷ୍ଣ ଚନ୍ଦ୍ର ବିଶ୍ୱାଳ (ସଇଦପୁର), ବଟକୃଷ୍ଣ ସ୍ୱାଇଁ (କଟକ), ବୀଣାପାଣି ପଣ୍ଡା (ଯାଜପୁର), ଭୁବନ ମୋହନ ମହାନ୍ତି (ହଳଧରତିଆ), ଗିରିଧାରୀ ସ୍ୱାଇଁ (ଯାଜପୁର), ମଧୁସୂଦନ ମହାପାତ୍ର (ନଗୁଆଁ), ହଜାରି ଅବଦୁଲ ଅଲି (ଭୁବନେଶ୍ୱର), ଡ. ରାଜକିଶୋର ରାଉ (ଧର୍ମଶାଳା), ବାଇଧର ମାଝୀ (ପାଟୁଳି), କାର୍ତ୍ତିକ ଚନ୍ଦ୍ର ଦ୍ୱିବେଦୀ (ରଣସରପୁର), ସୁରେନ୍ଦ୍ର ନାଥ ରାଉତ (ସୁଜନପୁର), ଦୟାନିଧି ନାୟକ (ଡାରାକୋଟ), ଗୋପୀନାଥ ଦାଶ (ବ୍ରାହ୍ମଣକୁଣପରି)

ଏଇ ଅବସରରେ ଓଡିଶା ସରକାରଙ୍କର ସଂସ୍କୃତି ବିଭାଗ ଓଡିଶା ସଂଗୀତ ନାଟକ ଏକାଡେମୀ ଏବଂ ଓଡିଆ ଗୀତି କବି ସମାଜ ତଥା ଅଗଣିତ ଶ୍ରଦ୍ଧାଳୁ ଶ୍ରୋତା ଗାୟକ ଗାୟିକା, ପତ୍ରିକା ସଂପାଦକ ଗଣଙ୍କୁ ମୋର ଗଭୀର କୃତଜ୍ଞତା ଜଣାଉଛି ।

### ଏବଂ ଶେଷରେ ନନ୍ଦ କିଶୋର ସିଂହଙ୍କ
### ପ୍ରଚାରିତ ପ୍ରସାରିତ ମଂଚସ୍ଥ ନାଟକ ସୂଚୀ
### ବେତାର ନାଟକ - ରୂପକ

ଉଲୁପି (ପୌରାଣିକ) ୧୭।୬।୬୨, ଅଷ୍ଟଚକ୍ର (ପୌରାଣିକ) ୨୧।୬।୬୩, ଚଂପାବତୀ (ଲୋକ କଥା) ୧୪।୬।୭୦, ଜେବୁନ୍ନିସା(ସଂଗୀତଭିତ୍ତିକ), ୧୫।୬।୭୨ ସଲିମା (ଐତିହାସିକ) ୨୯।୭।୭୨ ଶୁକ୍ଳବିଳାସ ୨୦।୭।୭୮ ଅମୃତପିପାସା(ପୌରାଣିକ) ୧୪।୭।୭୯ ପାଞ୍ଚାଳି (ସାମାଜିକ) ୨୨।୦୬।୮୦ ମାନସୀ ଗବେଷଣାଗାର (ବିଜ୍ଞାନତଥ୍ୟଭିତ୍ତିକ) ୧୪।୨।୮୬ , ମୀନାର ମମି (ସାମାଜିକ) ୧୮।୫।୮୬, ଅନ୍ତର୍ଦାହ (ସାମାଜିକ) ୩୦।୧।୮୪, ଯେ ଫୁଲ ଝରିଗଲା (ଆଦିବାସୀ ଜୀବନ ଆଧାରିତ) ୧୧।୧।୮୬, ସାଗର ମନ୍ଥନ (ପୌରାଣିକ) ୨୦।୯।୮୯, ନାରଦ ଉବାଚ (ଗୀତିନାଟ୍ୟ) ୧୬।୫।୮୮, ଏକ

